# ନୟାଗଡ଼

# ପ୍ରଜାମଣ୍ଡଳ ଇତିହାସ

ସଂକଳନ ପ୍ରଜାମଣ୍ଡଳ ଇତିହାସ କମିଟି ପକ୍ଷରୁ

ଶ୍ରୀଧର ଦାଶ



# ନୟାଗଡ ପ୍ରଜାମଣ୍ଡଳର ଇତିହାସ

ସଂକଳନ ପ୍ରଜାମଣ୍ଡଳ ଇତିହାସ କମିଟି ପକ୍ଷରୁ

ଶ୍ରୀଧର ଦାଶ

## ଇତିହାସ କମିଟି

* ଶ୍ରୀ ବାଞ୍ଛାନିଧି ସେନାପତି
* ଶ୍ରୀ ଲକ୍ଷ୍ମଣ ମହାରଣା
* ଶ୍ରୀ ଶୃଙ୍କ ବେହେରା
* ଶ୍ରୀ ଉଦୟନାଥ ପୃଷ୍ଟି
* ଶ୍ରୀ କୁବେର ସାହୁ
* ଶ୍ରୀ ଶ୍ରୀଧର ଦାଶ

ପ୍ରକାଶକ
ନୟାଗଡ ପ୍ରଜାମଣ୍ଡଳ ଇତିହାସ କମିଟି



ଉନ୍ମୋଚକ
ନ୍ୟାୟମୂର୍ତ୍ତି ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ର



ପ୍ରକାଶକାଳ
ତା ୯-୯-୧୯୯୨ ରିଖ ବୁଧବାର



ମୁଦ୍ରଣ
ଆର୍.କେ. ପ୍ରିଣ୍ଟର୍ସ, ନୟାଗଡ-୭୫୨୦୬୯



ମୂଲ୍ୟ
ଟ ୧୫-୦୦ (ପନ୍ଦର ଟଙ୍କା ମାତ୍ର)



# ଉତ୍ସର୍ଗ

ଦେଶ ଓ ଦଶପାଇଁ ଲୁହ ଓ ଲହୁ ଢ଼ାଳି

ଧନ ଓ ଜୀବନ ଉତ୍ସର୍ଗ କରିଥିବା

ଅଗଣିତ ସୁହୃଦ ବୃନ୍ଦଙ୍କର

ବିଜଡ଼ିତ ସ୍ମୃତି

ଉଦ୍ଦେଶ୍ୟରେ—

ଶ୍ରୀଧର ଦାଶ

# ❋ ସୂଚୀପତ୍ର ❋

## ଦ୍ୱିତୀୟ ପରିଚ୍ଛେଦ





# ପଦେଅଦ୍ଧେ

୧୮୫୭ ମସିହା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଭୀଷଣତା ଉପଲବ୍ଧି କରି ବିଦେଶୀ ଇଂରେଜ ସରକାର ଆମଦେଶରେ ବିଭେଦ ସୃଷ୍ଟି କରିବାର ନିଷ୍ପତ୍ତି ନେଲେ । ଫଳରେ କେତେକ ଅଞ୍ଚଳକୁ ନିଜ ଶାସନାଧୀନରେ ରଖି ଅନ୍ୟ ଅଞ୍ଚଳରେ କେତେକ ରଜା ମହାରଜା ନବାବମାନଙ୍କୁ ଆୟତ୍ତ କରି ସେମାନଙ୍କୁ ଶାସକ ଭାବେ ସ୍ୱୀକାର କରିଗଲେ । ଏତଦ୍ୱାରା ୬୬୨ଟି ଗଡ଼ଜାତ ଆମଦେଶରେ ସୃଷ୍ଟି ହେଲା । ରଜାମାନେ ବ୍ରିଟିଶ ସରକାରଙ୍କର ବାହୁଚ୍ଛାୟା ତଳେ ନାମକୁ ମାତ୍ର ରଜା ହୋଇ ପ୍ରଜାକୁଳକୁ ଶୋଷଣ କରି ଜୀବନଯାପନ କରୁଥିଲେ । ଏହି ରଜାମାନଙ୍କ ବିରୁଦ୍ଧରେ ପ୍ରଜାକୁଳ ବହୁବାର ବିଦ୍ରୋହ କରିଛନ୍ତି, ମାତ୍ର ଇଂରେଜ ଫୌଜ ନିର୍ମମ ଭାବେ ଏହାକୁ ଦମନ କରିଛନ୍ତି ।

ଦେଶୀୟ ରାଜ୍ୟ (ଗଡ଼ଜାତ ମାନଙ୍କରେ) ସଂଗଠିତ ଭାବେ କୌଣସି ବିପ୍ଳବ ହୋଇନଥିବାରୁ ତାହା ତିଷ୍ଠି ପାରିନଥିଲା । ୧୯୩୮ ମସିହାରେ କଂଗ୍ରେସ ଅଧିବେଶନ ହେଲା । ସେହି ପରିପ୍ରେକ୍ଷୀରେ ଦେଶୀୟ ରାଜ୍ୟ ଲୋକଙ୍କ ପକ୍ଷରୁ ଗଡ଼ଜାତମାନଙ୍କରେ ଆନ୍ଦୋଳନ କରିବାପାଇଁ ଏକ ପ୍ରସ୍ତାବ ଗୃହୀତ ହେଲା ଏବଂ ପଣ୍ଡିତ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ "ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ପରିଷଦ" ଗଠନ କରାଗଲା । ଉକ୍ତ ପରିଷଦର ଆହ୍ୱାନକ୍ରମେ ଦେଶର ଅଧିକାଂଶ ଗଡ଼ଜାତ-ମାନଙ୍କରେ ଜାଗରଣ ସୃଷ୍ଟି ହେଲା । ତା ୯।୯।୩୮ ଦିନ ନୟାଗଡ଼ ଜନସାଧାରଣ ନୟାଗଡ଼ ପ୍ରଜାମଣ୍ଡଳ ଗଠନକରି ରଜାଙ୍କ ଶାସନ ବିରୁଦ୍ଧରେ ଆନ୍ଦୋଳନ କରିବାପାଇଁ ସଂକଳ୍ପ କଲେ । ଅହରହ ଦଶବର୍ଷ ସଂଗ୍ରାମ ପରେ ତା ୧।୧।୪୮ ଦିନ ଆନ୍ଦୋଳନ ସଫଳ ହେଲା ଓ ନୟାଗଡ଼ ଓଡ଼ିଶା ପ୍ରଦେଶ ସହିତ ମିଶିଗଲା ।

ଏହି ଆନ୍ଦୋଳନର ଏକ ଇତିହାସ ପ୍ରକାଶ କରିବାପାଇଁ ପ୍ରଜାମଣ୍ଡଳ ଇତିହାସ କମିଟି ନିଷ୍ପତ୍ତି ଗ୍ରହଣ କରି ସଂକଳନର ଦାୟିତ୍ୱ ମୋ ଉପରେ ନ୍ୟସ୍ତକଲେ । ଦୀର୍ଘଦିନ ପରିଶ୍ରମ କରି ନୟାଗଡ଼ ପ୍ରଜାମଣ୍ଡଳ ଇତିହାସର ଏକ ପାଣ୍ଡୁଲିପି ପ୍ରକାଶ କରି ଇତିହାସ କମିଟିର ସମ୍ମତି ପାଇଲି । ଛାପିବାର ଅଧିକାର ମଧ୍ୟ ପାଇଲି ।

ପ୍ରଜାମଣ୍ଡଳର ଇତିହାସ ଛାପିବାପାଇଁ ଯେତେ ଇଚ୍ଛାହେଲେ ମଧ୍ୟ ସେଥିପାଇଁ ଅର୍ଥର ଯୋଗାଡ଼ ହୋଇପାରୁନଥାଏ । ଜଣେ ବନ୍ଧୁ ଏହି ଦାୟିତ୍ୱ ଗ୍ରହଣକରି ମୋ ଠାରୁ ପାଣ୍ଡୁଲିପିଟି ନେଇଗଲେ । ସେ ମହାଶୟ ମଧ୍ୟ ଛାପିପାରିଲେ ନାହିଁ କିମ୍ବା ପାଣ୍ଡୁଲିପି ଫେରସ୍ତ ଦେଲେନାହିଁ । ବହୁ ସ୍ୱାଧୀନତା ସଂଗ୍ରାମୀ ଏବଂ ସ୍ୱାଧୀନଚେତା ବନ୍ଧୁ ତଥା ପୂର୍ବତନ ବିଧାୟକ ରମାକାନ୍ତ ମିଶ୍ର ଇତିହାସ ଛାପିବାପାଇଁ ମୋ ଉପରେ ପ୍ରବଳ ଚାପ ପକାଇଲେ । ଏନଦ୍ୱାରା ମୁଁ ବାଧ୍ୟହୋଇ ପୂର୍ବ ନକଲ ସବୁ ଦେଖି ଆଉ ଗୋଟିଏ ପାଣ୍ଡୁଲିପି ପ୍ରଣୟନ କଲି ଓ ତାହା ପ୍ରକାଶ କଲି ।
ପ୍ରଜାମଣ୍ଡଳ ଇତିହାସ ଅର୍ଥାଭାବରୁ ଛପା ହୋଇନଥିବା କଥା ଜାଣି କେତେକ ସ୍ୱାଧୀନତା ସଂଗ୍ରାମୀ ବନ୍ଧୁ ରମାକାନ୍ତ ମିଶ୍ର, ପଦ୍ମଚରଣ ପାତ୍ର ଓ ଅଧ୍ୟାପକ ଧନେଶ୍ୱର ସାହୁ ପ୍ରମୁଖ ଛାପିବାର ଦାୟିତ୍ୱ ଗ୍ରହଣ କରିବାରୁ ନୟାଗଡ଼ ପ୍ରଜାମଣ୍ଡଳର ଇତିହାସ ପ୍ରକାଶ ପାଇଲା । ଯେଉଁମାନେ ଏଥିରେ ସହାୟକ ହେଲେ ମୁଁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି ।

ଶ୍ରୀଧର ଦାଶ

## ନୟାଗଡ଼ ପ୍ରଜାମଣ୍ଡଳ ଇତିହାସ କମିଟି

ଶ୍ରୀ ବାଞ୍ଛାନିଧି ସେନାପତି
ଶ୍ରୀ ଲକ୍ଷ୍ମଣ ମହାରଣା
ଶ୍ରୀ କୁବେର ସାହୁ
ଶ୍ରୀ ଶ୍ରୀଧର ଦାଶ (ସଂକଳକ)
ଶ୍ରୀ ଶୁକ୍ର ବେହେରା

# ନୟାଗଡ ରାଜ୍ୟର ସୃଷ୍ଟି ଓ ସ୍ଥିତି

ଅରଣ୍ୟାନୀ ପରିବେଷ୍ଟିତ ଏଇ ନୟାଗଡ ଭୂଇଁ ଗଙ୍ଗବଂଶର ରାଜା ୩ୟ ଭାନୁଗଙ୍ଗଦେବଙ୍କ ରାଜତ୍ୱ ପୂର୍ବରୁ କେବେ କିଭଳି ଭାବରେ ଶାସିତ ହେଉଥିଲା, ତା'ର ସଠିକ ଇତିହାସ ନାହିଁ । ମାତ୍ର ୩ୟ ଭାନୁଗଙ୍ଗଦେବଙ୍କ ରାଜତ୍ୱକାଳ ୧୩୫୨ ଖ୍ରୀଷ୍ଟାବ୍ଦରୁ ୧୩୭୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅନୁମାନିକ ୧୩୭୬ ମସିହାରେ ମଧ୍ୟପ୍ରଦେଶ ଅନ୍ତର୍ଗତ ରେଓ୍ୱା ରାଜ୍ୟର ପରିବ୍ରାଜକ ସୂର୍ଯ୍ୟମଣି ସିଂହ ଜଗନ୍ନାଥ ଦର୍ଶନ ପାଇଁ ପୁରୀ ଆସୁଥିବା ବାଟରେ ଗୁନାମାଟି ଗ୍ରାମରେ ରାତ୍ରି ଯାପନ କରି ସେଠାରେ ଗୋଟିଏ ମଣିଷଖିଆ ବାଘମାରି ଲୋକଙ୍କୁ ବ୍ୟାଘ୍ରୋପଦ୍ରବରୁ ରକ୍ଷା କରିବାରୁ ଲୋକେ ତାଙ୍କୁ ରାଜାବୋଲି ଗ୍ରହଣ କରିନେଲେ । ସୂର୍ଯ୍ୟମଣି ସିଂହ ନିଜେ ହିନ୍ଦୁସ୍ଥାନୀ ହୋଇଥିବାରୁ ତାଙ୍କ ଗାଦିନସୀନ ପରେ ନୂଆକରି ଗଠିତ ଏହି ରାଜ୍ୟର ନାମ 'ନୟାଗଡ' ରଖି ଏହାର ରାଜଧାନୀ ଗୁନାମାଟିଠାରେ ପ୍ରତିଷ୍ଠା କଲେ । କିଛିକାଳ ପରେ ଏହି ବଂଶର କୌଣସି ରାଜା ଗୁନାମାଟିଠାରୁ ରଳବକୁ ରାଜଧାନୀ ଉଠାଇ ଆଣିଥିଲେ । ରାଜ୍ୟ ପ୍ରତିଷ୍ଠିତ ହେବାର ଆହାଜ ୨୫୦ ବର୍ଷପରେ ଏହି ବଂଶର ନବମ ରାଜାବାଘସିଂହ ବର୍ତ୍ତମାନର ନୟାଗଡରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । କିଛିକାଳପରେ ଖଣ୍ଡପଡା ନୟାଗଡରୁ ଅଲଗା ହୋଇ ଅନ୍ୟ ଏକ ରାଜାଙ୍କଦ୍ୱାରା ଶାସିତହେଲା । ନୟାଗଡର ରାଜା ଓଡିଶା ଗଜପତିଙ୍କର ଜଣେ ସାମନ୍ତ ରାଜା ହୋଇ ରହିଲେ । ଓଡିଶା ଯେତେବେଳେ ଯାହାର ରାଜତ୍ୱରେ ରହେ ନୟାଗଡ ରାଜା ତା'ର ଅଧସ୍ତନ ସାମନ୍ତ ରାଜା ହୋଇ ରାଜ୍ୟ ଶାସନ କରନ୍ତି । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀ ଓଡିଶା ଅଧିକାର କଲାପରେ ସେ ନୟାଗଡ ରାଜାଙ୍କୁ ରାଜା ବୋଲି ସ୍ୱୀକାର ନକରି ଜମିଦାର ଭାବେ ସ୍ୱୀକୃତିଦେଲେ ଏବଂ ତାଙ୍କଠାରୁ ଏକ କରାରନାମା ଲେଖାଇ-ନେଲେ । ଉକ୍ତ କରାରନାମାରେ ମୁଖ୍ୟତଃ ୩ଟି ସର୍ତ୍ତଥିଲା । ଯଥା—

୧-ରାଜା ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କର ବଶ୍ୟତା ସ୍ୱୀକାର କରି ତାଙ୍କର ଭକ୍ତ ହୋଇ ରହିବେ । ୨-ବାର୍ଷିକ ମାକିସ୍ତିରେ ୨୬୪୫୦ କାହାଣ କଉଡ଼ି କର ଆକାରରେ ଦେବେ । ୩-ଅନ୍ୟ କୌଣସି ପ୍ରତିବେଶୀ ରାଜ୍ୟ କମ୍ପାନୀଙ୍କ ଅଧିକାରକୁ ଅସ୍ୱୀକାର କଲେ ସେ ତାଙ୍କ ନିଜ ସୈନ୍ୟଙ୍କୁ ବିଦ୍ରୋହୀଙ୍କ ବିରୁଦ୍ଧରେ ଲଗାଇବେ । ୩ୟ ସର୍ତ୍ତର ମୂଲ୍ୟ କିଛି ନଥିଲେ ମଧ୍ୟ ଏହା ଲେଖାଇ ନିଆଯାଇଥିଲା । ଓଡ଼ିଶାର ସବୁ ଜମିଦାରମାନଙ୍କଠାରୁ କରାର-ନାମା ଲେଖାଇ ନେବାର କିଛିକାଳ ପରେ କନିକା, କୁଜଙ୍ଗ, ଆଳି ପ୍ରଭୃତି ସମତଳ ଅଞ୍ଚଳର ଜମିଦାରୀଗୁଡ଼ିକୁ କମ୍ପାନୀ ସର୍କାର ସାଧାରଣ ଶାସନର ଅନ୍ତର୍ଗତ କରି ରଖିଲେ । ମାତ୍ର ନୟାଗଡ଼ ପ୍ରଭୃତି ଅନ୍ୟାନ୍ୟ ଅଞ୍ଚଳ ଅଟବିକ ଅଞ୍ଚଳ ହୋଇଥିବାରୁ ଓ ଉକ୍ତ ଅଞ୍ଚଳରେ ବହୁ ଅନୁନ୍ନତ ଜାତିର ଲୋକ ବାସକରୁଥିବାରୁ ସେ ଅଞ୍ଚଳକୁ କିଛିକାଳ ପାଇଁ ସାଧାରଣ ଶାସନରେ ରଖିଦେଲେ । ଅନ୍ୟଥା ସେମାନଙ୍କର ସମତଳ ଅଞ୍ଚଳ ଜମିଦାରମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ନଥିଲା । ବରଂ ଯଥାଶୀଘ୍ର ସେ ଅଞ୍ଚଳରେ ଇଂରେଜ ଆଇନ୍ ଚଳାଇବାପାଇଁ କୋର୍ଟଅଫ୍ ଡିରେକ୍ଟର୍ସ ବଙ୍ଗ ଡିରେକ୍ଟର୍‌ଙ୍କୁ ଆଦେଶ ଦେଇଥିଲେ । ଏହି ଅନୁନ୍ନତ ଜମିଦାରଙ୍କର ଶାସନ ଦାୟିତ୍ୱ ଓଡ଼ିଶା କଲେକ୍ଟରଙ୍କ ଅଧୀନରେ ରଖାଯାଇଥିଲା । ୧୮୧୪ ଖ୍ରୀଷ୍ଟାବ୍ଦରେ କଲେକ୍ଟରଙ୍କ ସୁପରିଟେଣ୍ଡେଣ୍ଟ ଅଫ୍ ଟ୍ରିବ୍ୟୁଟରୀ ମାହାଲ ନାମକ ଆଉ ଏକ ପଦବୀ ସୃଷ୍ଟି କରାଗଲା । ଏହା ଦ୍ୱାରା ତାଙ୍କର ୨ଟି ସ୍ଥିତି ନିର୍ଦ୍ଧାରିତ ହୋଇଥିଲା । ଅର୍ଥାତ୍ ଯେଉଁ ଅଞ୍ଚଳମାନଙ୍କରେ ସାଧାରଣ ଶାସନ ଚଳୁଥିଲା, ସେ ଅଞ୍ଚଳ ପାଇଁ ସେ ହେଲେ କଲେକ୍ଟର ଓ ଯେଉଁ ଅଞ୍ଚଳରେ ସାଧାରଣ ଶାସନ ଆଇନ୍ ଚଳୁନଥିଲା, ଉକ୍ତ ଅଞ୍ଚଳ ପାଇଁ ସେ ହେଲେ ସୁପରିଟେଣ୍ଡେଣ୍ଟ ଅଫ ଟ୍ରିବ୍ୟୁଟରୀ ମାହାଲ । ୧୮୨୪ ମସିହାରେ କମିଶନରଙ୍କୁ ସୁପରିଟେଣ୍ଡେଣ୍ଟ ଅଫ୍ ଟ୍ରିବ୍ୟୁଟରୀ ମାହାଲ ନିଯୁକ୍ତ କରି ଗଭର୍ଣ୍ଣର ଜେନେରାଲ୍ ଇନ୍ କାଉନ୍‌ସିଲ୍ ଯେଉଁ ଆଦେଶ ଦେଇଥିଲେ ତା'ର ମର୍ମ ଏହି ଯେ ୧୮୦୫ ମସିହା ରେଗୁଲେସନ ୧୩ ଦଫା ଓ ଦ୍ୱାଦଶ ରେଗୁଲେସନ ୩୬ ଓ ୩୭ ଦଫା ଅନୁସାରେ (ଗଡ଼ଜାତମାନଙ୍କୁ ଲକ୍ଷ୍ୟକରି) କଟକ ଜିଲ୍ଲାର କେତେକ ଜମିଦାରୀ ବର୍ତ୍ତମାନ ପ୍ରଚଳିତରେଗୁଲେସନ ବାହାରେ । କିନ୍ତୁ ସେସବୁ ଜମିଦାରୀରୁ ସ୍ଥାୟୀ ଭବରେ ନିର୍ଦ୍ଧାରିତ କର ଅଦାୟ ହେଉଥିବାରୁ ଏଥିରେ ଗଭର୍ଣ୍ଣର

ଜେନେରାଲ ଇନ୍ କାଉନ୍ସିଲ୍ ବୁଝନ୍ତି ନାହିଁ ଯେ ଉକ୍ତ ଜମିଦାରୀରେ ରେଗୁଲେସନ ପ୍ରବର୍ତ୍ତନ ହେବାର କାରଣ ହେଉଛି ସେ ଜମିଦାରମାନଙ୍କର ସ୍ୱାଧୀନ କ୍ଷମତା ଡାକିକରିବାର ଅଧିକାର ଅଛି । ଅପରନ୍ତୁ ଗଭର୍ଣ୍ଣର ଜେନେରାଲ ଇନ୍ କାଉନ୍ସିଲ୍ ବୁଝନ୍ତିଯେସେହି ଜମିଦାରମାନେ ନିଜେ ଅସଭ୍ୟ ଓ ଉକ୍ତ ଜମିଦାରୀମାନଙ୍କରେ ବାସକରୁଥିବା ଲୋକେ ଅସଭ୍ୟ ଥିବାହେତୁ ଏବଂ ସେହି ସବୁ ଜମିଦାରୀ ନିଜସ୍ୱ ପାର୍ବତ୍ୟ ଅଞ୍ଚଳ ହୋଇଥିବାରୁ ଏହି ପ୍ରକାର ବ୍ୟବସ୍ଥା ହୋଇଅଛି । ଆଇନ ଅଦାଲତର ଆଦେଶ ସେସବୁ ଅଞ୍ଚଳରେ ଜାରି କରିବାରେ ବହୁ ଅସୁବିଧା ଥିବା ହେତୁ ସେମାନଙ୍କୁ ରେଗୁଲେସନ ବାହାରେ ରଖାଯାଇଅଛି । ଏଥିରୁ ଜଣାଯାଏ ଯେ ସେସବୁ ଜମିଦାରୀ ପାଇଁ ବର୍ତ୍ତମାନ ଯେଉଁ ବ୍ୟବସ୍ଥା କରାଯାଇଅଛି, ତାହା ସାମୟିକ । କୌଣସି ସମୟରେ ସୁବିଧାଜନକ ମନେକରାଗଲେ ଉକ୍ତ ଇଲାକାମାନଙ୍କୁ ସାଧାରଣ ଶାସନରେ ଅନ୍ତର୍ଭୁକ୍ତ କରିବାରେ କୌଣସି ପ୍ରତିବନ୍ଧକ ରହିବନାହିଁ । ଏହି ଅବସ୍ଥାରେ ତୁମେ ଅନୁସନ୍ଧାନ କରି ଜଣାଅ ଯେ ଉପରୋକ୍ତ ଶ୍ରେଣୀର ଜମିଦାରମାନଙ୍କ ମଧ୍ୟରୁ କାହାକୁ ସାଧାରଣ ଶାସନ ଅନ୍ତର୍ଭୁକ୍ତ ସୁବିଧାଜନକଭାବରେ କରିହେବ । ତଥାକଥିତ ଏହି ଟ୍ରିବ୍ୟୁଟରୀ ମାହାଲମାନ ଓଡ଼ିଶାର ଗଡ଼ଜାତ ହୋଇଛନ୍ତି । ଊନବିଂଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ପ୍ରୋକ୍ତ ଗଡ଼ଜାତ ରାଜା ଓ ସାଧାରଣ ଜମିଦାରଙ୍କ ମଧ୍ୟରେ କିଛି ପ୍ରଭେଦନଥିଲା । ଏକ ସମୟରେ ପେସ୍କିସ୍ ଦେଇ ନ ପାରିବାରୁ ନୟାଗଡ଼ଜମିଦାରୀ ନିଲାମରେ ଉଠିଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀ ନୟାଗଡ଼ ଜମିଦାରୀକୁ ନିଲାମରେ ଧରିଥିବାରୁ ୧୯୧୮ ମସିହାରେ ନୟାଗଡ଼ ଜମିଦାର ପେସ୍କିସ୍ ପରିଶୋଧ କରି ଜମିଦାରୀ ଫେରିପାଇଲେ । ସେହି ସମୟ ମଧ୍ୟରେ ପାଇକ ବିଦ୍ରୋହ ହୋଇନଥିଲେ ନୟାଗଡ଼ ବ୍ରିଟିଶ୍ ଭାରତର ଅନ୍ତର୍ଭୁକ୍ତ ହୋଇଯାଇଥା'ନ୍ତା ।

ଓଡ଼ିଶାରେ ଯେତେବେଳେ ଗୋଟିଏ ଜିଲ୍ଲା ଥିଲା ଓ ଓଡ଼ିଶା ପାଇଁ ଜଣେ କଲେକ୍ଟର ଥିଲେ, ଯେତେବେଳେ କଲେକ୍ଟର, ଜମିଦାର ଓ ପ୍ରଜାଙ୍କୁ ସାମନାସାମନି ରଖି ବିଚାର କରୁଥିଲେ । ପ୍ରଜା ଜମିଦାରଙ୍କ ବିରୁଦ୍ଧରେ କଲେକ୍ଟରଙ୍କ ପାଖରେ ଆପତ୍ତି କରୁଥିଲେ । ଯେତେବେଳେ ଓଡ଼ିଶା ୩ଟି ଜିଲ୍ଲାରେ ବିଭକ୍ତ ହେଲା ଏବଂ ଓଡ଼ିଶା ପାଇଁ ଜଣେ

କମିଶନର ରହିଲେ, ସେ ଗଡଜାତମାନଙ୍କ ପାଇଁ ସେସନ୍ ଜଜ୍ ଭଳି କାମକଲେ । ଜିଲ୍ଲା କଲେକ୍ଟରମାନେ ଗଡଜାତମାନଙ୍କର ମାଲିମକଦମା-ମାନ ବୁଝୁଥିଲେ । ସତୀଦାହ ପ୍ରଥା ବନ୍ଦ କରିବା ପାଇଁ ୧୮୪୨ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ଯେଉଁ ବ୍ୟବସ୍ଥା କଲେ, ତାହା ଫଳରେ ନୟାଗଡ ଜମିଦାରଙ୍କର ଅନ୍ୟାନ୍ୟ ଜମିଦାରଙ୍କଭଳି ସନନ୍ଦ ମଧ୍ୟ ପରିବର୍ତ୍ତନ କରାଯାଇଥିଲା ୧୮୬୨ ମସିହା ମାର୍ଚ୍ଚ ୧୧ତାରିଖରେ ବଡଲାଟ ଲର୍ଡକ୍ୟାନିଂ ପୋଷ୍ୟପୁତ୍ର ଗ୍ରହଣ କରିବାର ଅଧିକାର ଓଡ଼ିଶାର ଯେଉଁ ୧୭ଟି ଗଡଜାତକୁ ଦେଲେ, ନୟାଗଡ ତା'ର ଅନ୍ତର୍ଭୁକ୍ତ । ୧୮୭୪ ମସିହା ମେ ୨୧ ତାରିଖରେ ଲର୍ଡ ନର୍ଥବ୍ରୁକ୍ ଓଡ଼ିଶା ଗଡଜାତ ଜମିଦାରମାନଙ୍କୁ ବଂଶପରମ୍ପରାନୁକ୍ରମେ ରାଜା ଉପାଧି ପ୍ରଦାନ କରିଥିଲେ ମଧ୍ୟ ସେତେବେଳେ ଏମାନଙ୍କ କ୍ଷମତା ସମ୍ବନ୍ଧରେ ଯେଉଁ ଆଦେଶ ଦେଇଥିଲେ ସାଧାରଣ ଧାରଣା ହେବାପାଇଁ ସେଥିମଧ୍ୟରୁ କେତୋଟି ସର୍ତ୍ତ ନିମ୍ନରେ ଦିଆଗଲା । ୧୮୬୦ ମସିହା ଡିସେମ୍ବର ୧୨ ତାରିଖରେ ବଙ୍ଗ ସରକାର ଜିଲ୍ଲା ମାଜିଷ୍ଟ୍ରେଟ୍‌ମାନଙ୍କୁ ଆଦେଶଦେଲେ ଯେ ସେମାନଙ୍କ ଅଧୀନସ୍ଥ କରଦ ରାଜ୍ୟମାନଙ୍କରେ କେହି କିଛି ଅପରାଧ କଲେ ସେମାନେ ତାହା ବିଚାର କରି ଦଣ୍ଡବିଧାନ କରିପାରିବେ । ୧୮୬୨ ଖ୍ରୀଷ୍ଟାବ୍ଦରେ ଭାରତ ସରକାର ସୁପରିଟେଣ୍ଡେଣ୍ଟ ଅଫ୍ ଟ୍ରିବ୍ୟୁଟରୀମାହାଲ ବା କମିଶନରଙ୍କୁ ଉକ୍ତ ରାଜ୍ୟମାନଙ୍କପାଇଁ ସେସନ୍‌ସ ଜଜ୍ କ୍ଷମତା ଦେଲେ । ୧୮୬୩ ମସିହା ଏପ୍ରିଲ ମାସରେ ବଙ୍ଗ ସରକାର ସୁପରିଟେଣ୍ଡେଣ୍ଟ ଅଫ୍ ଟ୍ରିବ୍ୟୁଟରୀ ମାହାଲ ବା କମିଶନରଙ୍କୁ ଜଣାଇ-ଦେଲେ ଯେ ଜିଲ୍ଲାରେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଯେଉଁ କ୍ଷମତା, କରଦ ରାଜ୍ୟମାନଙ୍କ ପକ୍ଷେ ତାଙ୍କର ମଧ୍ୟ ସେହି କ୍ଷମତା । ଜିଲ୍ଲାରେ ୧ମ ଶ୍ରେଣୀ ମାଜିଷ୍ଟ୍ରେଟ୍‌ଙ୍କର ଯେଉଁ କ୍ଷମତା ଅଧୀନସ୍ଥ କରଦ ରାଜ୍ୟମାନଙ୍କ ପକ୍ଷେ ଜିଲ୍ଲା ମାଜିଷ୍ଟ୍ରେଟ୍‌ମାନଙ୍କର ମଧ୍ୟ ସେହି କ୍ଷମତା । ଏଥିରୁ ସ୍ପଷ୍ଟ ଜଣାପଡେ ଯେ ନୟାଗଡ ଜମିଦାରଙ୍କର (ରାଜା) କ୍ଷମତା ଅତି ସୀମିତ ଥିଲା । ସେ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ କଲେକ୍ଟରଙ୍କ ଅଧୀନରେ ସାମାନ୍ୟ କିଛି ଅଧିକାର ପାଇ ସାଧାରଣ ଜମିଦାରଙ୍କ ଭଳି ରହିଥିଲେ ।

ଓଡ଼ିଶା ଗଡଜାତ ରାଜାମାନଙ୍କର ଆଇନତଃ କୌଣସି ରାଜନୈତିକ କ୍ଷମତା ନଥିଲେ ମଧ୍ୟ ଭାରତବର୍ଷରେ ୧୮୪୬ ଇଂରେଜ ବିରୋଧୀ ଜନଜାଗରଣ ଦେଖାଦେବାରୁ ବ୍ରିଟିଶ୍ ମନ୍ତ୍ରୀ ପରିଷଦ ଗଡଜାତଗୁଡ଼ିକୁ

ବ୍ରିଟିଶ୍ ଭାରତର ଅନ୍ତର୍ଭୁକ୍ତ ନୁହନ୍ତି ବୋଲି ଘୋଷଣା କରିବା ପରେ ୧୮୮୮ ମସିହାରେ ନୟାଗଡ ବ୍ରିଟିଶ୍ ଭାରତ ଅନ୍ତର୍ଭୁକ୍ତ ନୁହେଁ ବୋଲି ଜଣାଗଲା । ପୁଣି ୧୮୯୪ରେ ଲର୍ଡ ଏଲିଗିନ୍ ନୟାଗଡ ରାଜାଙ୍କୁ ନୂତନ ସନନ୍ଦ ଦେଇ ତାଙ୍କର ପାହ୍ୟା ବଢାଇ ଦେଇଥିଲେ । ଏତଦ୍ୱାରା ନୟାଗଡ ରାଜାଙ୍କୁ ବାର୍ଷିକ ୫ହଜାର ୫ଶହ ୨୫ଟଙ୍କା ଚାରିଅଣା ଏକ ପାହୁଲା ମାତ୍ର ଇଂରେଜ ସରକାରଙ୍କୁ ପେସ୍‌କିସ୍ ଦେବାର ସ୍ଥିରହେଲା । ଏଥିରୁ ସ୍ପଷ୍ଟ ଜଣାପଡେ ଯେ ଇଂରେଜ ସରକାର ଇଚ୍ଛା କରିଥିଲେ ନୟାଗଡ ରାଜାଙ୍କର ଅର୍ଦ୍ଧ ନିର୍ଦ୍ଧାରିତ ସ୍ଥିତିକୁ ନିର୍ଦ୍ଧାରିତ କରି ସାଧାରଣ ଶାସନ ଅନ୍ତର୍ଭୁକ୍ତ କରିପାରିଥା'ନ୍ତେ । ଏହାଫଳରେ ନୟାଗଡ ରାଜା ଆଳି, କନିକା ପ୍ରଭୃତି ଜମିଦାରଙ୍କ ସଙ୍ଗରେ ସମାନ ହୋଇ ରହିପାରିଥା'ନ୍ତେ । ଇଂରେଜ ସରକାର ନିଜ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ବିଭଜନ କରି ଦେଶ ଶାସନ କରିବା ନୀତି ଅନୁସରଣ କରି ପାର୍ବତ୍ୟ ଅଞ୍ଚଳର ଜମିଦାରମାନଙ୍କ ପାହ୍ୟା ବଢାଇଦେଇ ସେମାନଙ୍କୁ ନିଜ ଅକ୍ତିଆରରେ ରଖିନେଲେ । ଜମିଦାର-ମାନେ ଏତଦ୍ୱାରା କିଛି ଅଧିକ କ୍ଷମତା ପାଇବାପରେ ଇଂରେଜ ସରକାରଙ୍କ ସହାୟତାରେ ଭୋଗବିଳାସରେ ମାତି ପ୍ରଜାଙ୍କ ଦୁଃଖସୁଖ ବୁଝିଲେ ନାହିଁ । ତେଣୁ ରାଜାମାନଙ୍କ ଶାସନ ବିରୁଦ୍ଧରେ ବାରମ୍ବାର ଆନ୍ଦୋଳନ ହେଉଥାଏ । ରାଜା ଇଂରେଜ ଫୌଜ ସହାୟତାରେ ଏଭଳି ଜନଆନ୍ଦୋଳନକୁ ମେଳି ଆଖ୍ୟା ଦେଇ ଦବାଇ ଦେଉଥିଲେ । ରାଜାଙ୍କ ଅତ୍ୟାଚାର ବିରୁଦ୍ଧରେ ନୟାଗଡରେ ଏଭଳି ଆନ୍ଦୋଳନ ବହୁବାର ହୋଇଛି, ତା'ର ନିର୍ଦ୍ଦିଷ୍ଟ କାଳ ଜଣାନାହିଁ । ଉଦ୍ଧବ ସାମନ୍ତରାଏଙ୍କ ନେତୃତ୍ୱରେ ଥରେ ଏକ ଅଭୂତପୂର୍ବ ଆନ୍ଦୋଳନ ହୋଇଥିଲା । ରାଜା ଓ ରାଜକର୍ମଚାରୀମାନଙ୍କ ଦ୍ୱାରା ପ୍ରଜା ପ୍ରପୀଡିତ ହୋଇ ନିଜଘରେ ନିଆଁ ଲଗାଇଦେଇ ରାଜ୍ୟଛାଡ଼ି ଅନ୍ୟତ୍ର ଚାଲିଗଲେ । ଏହା ଇଂରେଜ ସରକାରଙ୍କ ଦୃଷ୍ଟିକୁ ଆସିବାରୁ ସେ ଏହାର ତଦନ୍ତ କରି ପ୍ରଜାମାନଙ୍କର କିଛି ସୁବିଧା କରିଦେଇ ରାଜାଙ୍କୁ କିଛିଦିନ ପାଇଁ ବାହାରେ ରହିବାକୁ ନିର୍ଦ୍ଦେଶ ଦେଲେ । ଏହାପରେ ଆଉ ୨।୩ଥର ଆନ୍ଦୋଳନକୁ ରାଜାମାନେ ପ୍ରଜାଙ୍କ ପାଖକୁ ଯାଇ ଚତୁରତାର ସହିତ ସମାଧାନ କରିଥିଲେ ଓ କେତେକ ଅତ୍ୟାଚାରୀ ରାଜକର୍ମଚାରୀଙ୍କୁ କାର୍ଯ୍ୟରୁ ଅବ୍ୟାହତି ଦେଇଥିଲେ । ପୁଣି ଆଉଥରେ ଭଗବାନ୍ ସାମନ୍ତରାଏଙ୍କ ନେତୃତ୍ୱରେ ଏକ ହିଂସାତ୍ମକ ଆନ୍ଦୋଳନ ହୋଇଥିଲା । ଲୋକେ ପୋଲିସ୍ ସବ୍-ଇନ୍‌ସପେକ୍ଟରଙ୍କୁ ତାଙ୍କ ପ୍ରାଣରେ ମାରି ଦେଇଥିଲେ ।

ଏହାପରେ ଇଂରେଜ ସୈନ୍ୟ ରକ୍ତମୁଖା ହୋଇ ଘରେ ଘରେ ପଶି ଯାବତୀୟ ଅତ୍ୟାଚାର କରି ଆନ୍ଦୋଳନକୁ ଦବତ କରି ନେଇଥିଲେ । ନୟାଗଡ଼ ଲୋକଙ୍କର ଦୁଃଖ ନିବାରଣ ପାଇଁ ହିଂସା ଓ ଅହିଂସା ଉଭୟ ପ୍ରକାରର ଆନ୍ଦୋଳନକୁ ଇଂରେଜ ସରକାର ନିଜ ଦୃଷ୍ଟିରୁ ଦବତ କଲାପରେ ୧୮୯୩ ସାଲ ରେ କ୍ଷେତ୍ରୀବନ୍ଧ ସିଂହଙ୍କ ନେତୃତ୍ୱରେ ପୁଣି ଏକ ଆନ୍ଦୋଳନ ହୋଇଥିଲା । ଇଂରେଜ ସରକାର ଏହାକୁ ମେଳି ଆଖ୍ୟାଦେଇ ନିର୍ମମ ଭାବେ ଦମନ କରିଥିଲେ । ୧୮୯୮ ଖ୍ରୀଷ୍ଟାବ୍ଦରେ ନୟାଗଡ଼ର ତତ୍କାଳୀନ ରାଜା ଅପୁତ୍ରିକଭାବେ ପ୍ରାଣତ୍ୟାଗ କରିବାରୁ ରାଜକର୍ମଚାରୀଗଣ ପରମ୍ପରା ରକ୍ଷାକରି ନାରାୟଣ ସିଂହଙ୍କୁ ନୟାଗଡ଼ ରାଜଗାଦୀରେ ବସାଇଦେଲେ । ଇଂରେଜ ସରକାର ନାରାୟଣ ସିଂହଙ୍କୁ ପ୍ରଥମାବସ୍ଥାରେ ରାଜା ଭାବେ ସ୍ୱୀକାର ନକରି ନୟାଗଡ଼ ରାଜ୍ୟକୁ କୋର୍ଟ ଅଫ ଓ୍ୟାର୍ଡ କରିଦେଲେ । ବହୁକାଳ ବିଂଷର ପରେ ନାରାୟଣ ସିଂହଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବରୁ ତାଙ୍କୁ ରାଜା ଭାବେ ସ୍ୱୀକୃତି ଦେଇଥିଲେ । ୧୯୦୧ ମସିହାରେ ନୟାଗଡ଼ ଶାସନ ବିରୁଦ୍ଧରେ ପୁଣି ଏକ ଆନ୍ଦୋଳନ ହୋଇଥିଲା । ମାତ୍ର ଇଂରେଜ ସରକାରଙ୍କର ଫୌଜି ଶାସନ ଆଗରେ ଏହା ତିଷ୍ଠି ପାରିଲାନାହିଁ । ୧୦ବର୍ଷ ମଧ୍ୟରେ ଦୁଇଥର ବ୍ରିଟିଶ୍ ଫୌଜଙ୍କ ଦ୍ୱାରା ନୟାଗଡ଼ର ରାଜା ଅତ୍ୟାଚାରିତ ହେବା ଫଳରେ ଲୋକଙ୍କର ମନୋବଳ ଭାଙ୍ଗିଗଲା । ଲୋକେ ଭୟଭୀତ ହୋଇ ସରକାରଙ୍କ ସମସ୍ତ ଅତ୍ୟାଚାର ମୁଣ୍ଡପାତି ସହିବାକୁ ବାଧ୍ୟହେଲେ । ବେଳେ ବେଳେ ଅନ୍ୟାନ୍ୟ ଗଡ଼ଜାତମାନଙ୍କରେ ମଧ୍ୟ ରାଜାଙ୍କ ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନ ହେଉଥିଲା । ମାତ୍ର ଇଂରେଜ ସରକାରଙ୍କ ଫୌଜ ସମସ୍ତ ଆନ୍ଦୋଳନକୁ ନିର୍ମମଭାବରେ ଦମନକରି ଦବାଇ ଦେଉଥିଲେ । ଏହା ଫଳରେ ଗଡ଼ଜାତମାନଙ୍କରେ ଲୋକମାନଙ୍କର ନୈତିକବଳ ସମ୍ପୂର୍ଣ୍ଣ ଭାବେ ଲୁପ୍ତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।



# ପ୍ରଜା ପୀଡ଼ନ

ନାରାୟଣସିଂହ ରାଜାହେଲେ ସତ୍ୟ, ମାତ୍ର ରାଜ୍ୟ କୋର୍ଟ ଅଫ୍ ଆଓ୍ୟାର୍ଡସ୍ ହୋଇ ଜଣେ ସୁପରିଟେଣ୍ଡେଣ୍ଟଙ୍କ ତତ୍ତ୍ୱାବଧାନରେ ଶାସିତ ହେଲା । ସୁପରିଟେଣ୍ଡେଣ୍ଟ ଖୋଦ ଇଂରେଜ ସରକାରଙ୍କଦ୍ୱାରା ନିଯୁକ୍ତ ହେଲେ । ଏହି ପଦପାଇଁ ବହୁ ସୁଯୋଗ୍ୟ ବ୍ୟକ୍ତି ନୟାଗଡ ରାଜ୍ୟରେ ଥିଲେ ମଧ୍ୟ ବାହାରୁ ଲୋକଙ୍କୁ ଏହି କାର୍ଯ୍ୟରେ ଇଂରେଜ ସରକାର ନିଯୁକ୍ତ କରୁଥିଲେ । ସୁପରିଟେଣ୍ଡେଣ୍ଟମାନେ ନିଜ ସ୍ୱାର୍ଥ ଦୃଷ୍ଟିରୁ ଅନ୍ୟାନ୍ୟ ଚାକିରୀ ପାଇଁ ତାଙ୍କ ନିଜ ଲୋକଙ୍କୁ ଆଣି ନୟାଗଡରେ ନିଯୁକ୍ତି ଦେଉଥିଲେ । ନୟାଗଡବାସୀଙ୍କ ମଧ୍ୟରୁ କାଁ ଭାଁ କିଏ କେଉଁଠି ଛୋଟ ଛୋଟ ଚାକିରି ପାଉଥିଲେ । ଏଣୁ ନୟାଗଡ ଜନତାଙ୍କର ସ୍ୱାର୍ଥପ୍ରତି କାହାର କିଛି କର୍ତ୍ତବ୍ୟ ବା ଦାୟିତ୍ୱ ଥିଲପରି ମନେ ହେଉନଥିଲା ।

ବେଠି, ବେଗାରି, ମାଗଣ, ରସଦ, ଲାଞ୍ଚ ଓ ଅନ୍ୟାନ୍ୟ ବହୁ ପ୍ରକାର ଚନ୍ଦାଭେଦା ଲୋକଙ୍କଠାରୁ ସରକାର ଜବରଦସ୍ତ ଆଦାୟ କରୁଥିଲେ । ପ୍ରତି ୧୦ବର୍ଷରେ ଥରେ ରାଜସ୍ୱ ବନ୍ଦୋବସ୍ତକରି ଲୋକଙ୍କ ଆର୍ଥିକ ଅବସ୍ଥା-ପ୍ରତି ଦୃଷ୍ଟି ନଦେଇ ଖଜଣା ବୃଦ୍ଧି କରୁଥିଲେ । ଭୀତତ୍ରସ୍ତ ଜନତାଙ୍କୁ ଗ୍ରାମ ଚୌକିଦାର ଠାରୁ ଆରମ୍ଭକରି ସୁପରିଟେଣ୍ଡେଣ୍ଟଙ୍କ ପର୍ଯ୍ୟନ୍ତ ସମସ୍ତ ରାଜକର୍ମଚାରୀ ଅତି ହୀନ ବ୍ୟବହାର କରୁଥିଲେ । ଈଶ୍ୱର ଯେଉଁ ମନୁଷ୍ୟକୁ ସମସ୍ତ ଜ୍ଞାନ ଗରିମାର ଅଧିକାରୀ କରି ସଂସାରକୁ ପଠାଇଛନ୍ତି, ନୟାଗଡ ରାଜ୍ୟର ସେହି ମନୁଷ୍ୟମାନଙ୍କୁ ରାଜକର୍ମଚାରୀବୃନ୍ଦ ପଶୁଠାରୁ ମଧ୍ୟ ହୀନ ମନେକରୁଥିଲେ । ପାଟି ଫିଟାଇ ପଦେ କହିବାର ଅଧିକାର କାହାରି ନଥିଲା । କିଏ ବା କେଉଁଠି ଲୋକଙ୍କ ପାଇଁ ହକ ପଦେ କଥା କହିଲା, ତାଙ୍କୁ ମେଳିଆ ଆଖ୍ୟା ଦେଇ ନାନା ଭାବେ ନିର୍ଯ୍ୟାତିତ କରାଯାଉଥିଲା । ଏଥିପାଇଁ ତତ୍‌କାଳୀନ ସାମାଜିକ ପରିସ୍ଥିତି ବହୁ ପରିମାଣରେ ଯେ ଦାୟୀ, ଏହା ଅସ୍ୱୀକାର କରିହେବ ନାହିଁ । ଯିଏ ଆନ୍ଦୋଳନ କରି ଦଣ୍ଡ ଭୋଗୁଥିଲେ,

ତତ୍କାଳୀନ ପରିସ୍ଥିତିରେ ତାଙ୍କୁ ଅତି କ୍ଷୁଦ୍ର ଦୃଷ୍ଟିରେ ଲୋକେ ଦେଖୁଥିଲେ । ଏହି ସୁଯୋଗ ରାଜକର୍ମଚାରୀମାନଙ୍କର ଅତ୍ୟାଚାର ବଢାଇବାକୁ ଯଥେଷ୍ଟ ସହାୟକ ହେଉଥିଲା ।

୧୯୧୪ ମସିହାରେ ଦଶପଲ୍ଲାର ତତ୍କାଳୀନ ଦେଓ୍ୱାନଙ୍କ ଅତ୍ୟାଚାର ବିରୁଦ୍ଧରେ ଦଶପଲ୍ଲାରେ ଯେଉଁ ଜନ ଜାଗରଣ ଦେଖା ଦେଇଥିଲା, ତାହାକୁ ଯୁଦ୍ଧକାଳୀନ ପରିସ୍ଥିତିର ସୁଯୋଗ ନେଇ ନିର୍ମମ ଭାବରେ ଅତ୍ୟାଚାର କରି ଦବାଇ ଦିଆଗଲା । ପଡୋଶୀ ନୟାଗଡ ରାଜ୍ୟ ଲୋକଙ୍କ ଉପରେ ତାର କମ ପ୍ରଭାବ ପଡନଥିଲା । ଦଶପଲ୍ଲାରେ ଶହଶହ ଲୋକଙ୍କୁ ଇଂରେଜ କର୍ମଚାରୀମାନେ ହତ୍ୟା କଲେ । ନାରୀମାନଙ୍କର ମାନ ସମ୍ମାନ ଉପରେ ମଧ୍ୟ ଆଘାତ କଲେ । ଇଂରେଜ ପୋଲିସ୍ ଶହ ଶହ ଗ୍ରାମ ପୋଡ଼ି ଛାରଖାର କଲେ । ଏହା ଫଳରେ ଦଶପଲ୍ଲାର ଏକ ଚତୁର୍ଥାଂଶ ଲୋକ ଭୀତତ୍ରସ୍ତ ହୋଇ ରାଜ୍ୟଛାଡ ଚାଲି ଯାଇଥିଲେ । ଇଂରେଜ ସରକାର ଆନ୍ଦୋଳନର ମୂଳତଥ୍ୟ ନବୁଝି ସୁପରିଣ୍ଟେଣ୍ଡେଣ୍ଟଙ୍କ ରିପୋର୍ଟ ଉପରେ ବିଶ୍ୱାସ କରି ଯେଉଁ ଅତ୍ୟାଚାରର ତାଣ୍ଡବଲୀଳା ଚଳାଇଥିଲେ, ତାହା ଇତିହାସ ପ୍ରସିଦ୍ଧ ଜାଲିଓ୍ୱାନାବାଗ୍ ହତ୍ୟାକାଣ୍ଡ ଠାରୁ କମ୍ ମର୍ମନ୍ତୁଦ ନୁହେଁ । ଇଂରେଜୀ ପୋଲିସ୍‌ଙ୍କ ଦଶପଲ୍ଲା ଅତ୍ୟାଚାର ଇଂରେଜ ରାଜତ୍ୱର ଗୋଟିଏ ଶ୍ରେଷ୍ଠ କଳଙ୍କମୟ ଅଧ୍ୟାୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଆଜିର ଆନ୍ଦୋଳନକାରୀ ଦେଶର ନମସ୍ୟ ନେତାଭଳି ପୂଜା ପାଉଥିବା ବେଳେ ସେତେବେଳର ଆନ୍ଦୋଳନକାରୀ ସମାଜରେ ଘୃଣ୍ୟବ୍ୟକ୍ତି ରୂପେ ବିବେଚିତ ହେଉଥିଲେ । ବିଶେଷତଃ ବିଗତ ଓ ଚଳିତ ଶତାବ୍ଦୀ ମଧ୍ୟରେ ନୟାଗଡ ଓ ଦଶପଲ୍ଲାର ଜନ ଆନ୍ଦୋଳନକୁ ଇଂରେଜ ସରକାର ଅତ୍ୟାଚାର କରି ଦବାଇ ଦେବା ହେତୁ ନୟାଗଡର ଲୋକଙ୍କର ନୈତିକବଳ ପୂରାପୁରି ଭାଂଗିଯାଇଥିଲା । ଏହି ସୁଯୋଗରେ ରାଜକର୍ମଚାରୀ ମାନଙ୍କୁ ନିଜ ସ୍ୱାର୍ଥ ସାଧନପାଇଁ ମଉକା ମିଳିଲା । ଏଣୁ କାହାରି ଧନ ଓ ଜୀବନ ନିରାପଦ ରହିଲା ନାହିଁ । ଯେଉଁ ରାଜକର୍ମଚାରୀମାନେ ଜନତାର ଧନ, ଜୀବନ ରକ୍ଷାକରିବାର ଦାୟିତ୍ୱ ନେଇଥିଲେ, ସେହିମାନେ ଲୋକଙ୍କର ଧନ ଜୀବନ ଲୁଣ୍ଠନ କଲେ । ରାଜକର୍ମଚାରୀମାନେ ନିଜର ବ୍ୟକ୍ତିଗତ କାର୍ଯ୍ୟ ତୁଲାଇବା ପାଇଁ ନୟାଗଡ ରାଜ୍ୟରେ ବିଟ୍ ପାଳି ନାମରେ ଗୋଟିଏ ବେଠିର ପ୍ରଚଳନ କରାଇଲେ । ଲୋକସଂଖ୍ୟା ଅନୁପାତରେ ଗ୍ରାମମାନଙ୍କରେ

ଏକାଧିକ ଲୋକ ବିଟ୍‌ପାଳି ବେଠି କରୁଥିଲେ ଓ ରାଜକର୍ମଚାରୀ ମାନଙ୍କର ବ୍ୟକ୍ତିଗତ କାର୍ଯ୍ୟ ତୁଲାଉ ଥିଲେ । ପରିସ୍ଥିତି ଏପରି ଥିଲା ଯେ ବିଟ୍ ପାଳି ବେଠିପାଇଁ କେହି କାହାକୁ ଆଦେଶ ଦେଉନଥିଲେ । ଶାସକଙ୍କ ନିର୍ଦ୍ଦେଶ କ୍ରମେ ଗାଁକୁ ରହିଁ ଗାଁ ମାନଙ୍କରେ ଏକାଧିକ ଠେଙ୍ଗାରେ ଦଉଡ଼ ଲଗାଇ ରଖାଯାଇଥାଏ । ନିଜପାଳି କରିସାରିବା ପରେ ଉକ୍ତ ବିଟ୍ ପାଳି ବେଠିଆ ତାଙ୍କ ପଡୋଶୀ ଦୁଆରେ ଉକ୍ତ ଠେଙ୍ଗାଟି ଓହଳାଇ ଦିଅନ୍ତି । ଯାହାଙ୍କ ଦୁଆରେ ଯେଉଁ ଦିନ ଠେଙ୍ଗା ଓହଳା ହୁଏ, ସେ ସେଦିନ ବିଟ୍ ପାଳିକୁ ଯାଆନ୍ତି । ଏଣୁ ଏହ ବେଠିକୁ ଠେଙ୍ଗା ପାଳି ବା ଠେଙ୍ଗା ଶାସନ କୁହାଯାଉଥିଲା । ୧୯୧୯ ମସିହାରେ ନାରାୟଣ ସିଂହଙ୍କର ମୃତ୍ୟୁ ହେବାରୁ ତାଙ୍କ ପୁତ୍ର କୃଷ୍ଣଚନ୍ଦ୍ର ସିଂହ ନାବାଳକ ଥିବାରୁ ପୁଣି ନୟାଗଡ଼ କୋର୍ଟ ଅଫ୍‌ଓ୍ୱାର୍ଡସ ଅଧୀନରେ ରହିଲା । ୧ମ ବିଶ୍ୱଯୁଦ୍ଧ ପରେ ୧୯୨୯ ମସିହାରେ ଓଡ଼ିଶାରେ ଯେଉଁ ଦୁର୍ଭିକ୍ଷ ଦେଖାଦେଲା, ନୟାଗଡ଼ ସେଥିରୁ ବାଦ୍ ପଡ଼ିନଥିଲା । ଦୁଃଖର କଥା ତତ୍‌କାଳୀନ ସୁପରିଣ୍ଟେଣ୍ଡେଣ୍ଟ ଅନିରୁଦ୍ଧ ପଟେଲ ନୟାଗଡ଼ରେ ଦୁର୍ଭିକ୍ଷ ପଡ଼ିଥିବା କଥା ଉଚ୍ଚ କର୍ମକର୍ତ୍ତାଙ୍କୁ ନ ଜଣାଇ ଏହାକୁ ଛପାଇଦେବାର ବ୍ୟବସ୍ଥା କରି ବାହାରୁ କିଛି ଖାଦ୍ୟଶସ୍ୟ ଆଣିବା ବ୍ୟବସ୍ଥା କଲେନାହିଁ । ବରଂ ଲୋକେ ବାହାରୁ ଖାଦ୍ୟଶସ୍ୟ ଆଣିବା ପାଇଁ ଗଲେ ତାଙ୍କୁ ଦଣ୍ଡିତ କରୁଥିଲେ । ଏତଦ୍ୱାରା ହଜାର ହଜାର ଲୋକ ଅନାହାରରେ ପ୍ରାଣ ହରାଇଲେ ଓ ଶହ ଶହ ପରିବାର ପେଟ ଦାଉ ସମ୍ଭାଳି ନପାରି ନିଜର ପୈତୃକ ଭିଟାମାଟି ଛାଡ଼ି ସ୍ଥାନାନ୍ତର ହୋଇଗଲେ । ଏହା ବହୁଦିନ ଲୁଚି ରହିଲାନାହିଁ । ପଲିଟିକାଲ୍ ଏଜେଣ୍ଟ ମିଃ. ଫିଲିପ୍‌ସ କୌଣସି ସୂତ୍ରରୁ ଏହା ଜାଣିପାରି ଗାଁ ଗାଁ ବୁଲି ଲୋକଙ୍କର ଅବସ୍ଥା ଦେଖିଥିଲେ । ଦି' ପଦ କଅଁଳ କଥା କହି ଲୋକଙ୍କର ସୁବିଧା ଅସୁବିଧା ପଚାରି ବୁଝୁଥିଲେ । ଭୟ ବିହ୍ୱଳିତ ପ୍ରଜାକୁଳ ଅତ୍ୟାଚାରୀର ଅତ୍ୟାଚାର ବର୍ଣ୍ଣନା କରିବାକୁ ସକ୍ଷମ ନଥିଲେ । ମାତ୍ର ପଲିଟିକାଲ ଏଜେଣ୍ଟଙ୍କୁ କେତେକ ସୁବିଧା କରିଦେବା ପାଇଁ କହିଥିଲେ । ତାହାହେଲା ୧-କାମ ଯୋଗାଇ ମଜୁରୀ ଦିଆଯାଉ । ୨-ବାହାରୁ ଖାଦ୍ୟଶସ୍ୟ କିଣି ଆଣିବା ପାଇଁ ସୁବିଧା ଦିଆଯାଉ । ୩-ସ୍ଥଳ ବିଶେଷରେ ସରକାରଙ୍କ ତରଫରୁ ଖାଦ୍ୟଶସ୍ୟ ବିକ୍ରୀ କେନ୍ଦ୍ର ଖୋଲାଯାଉ । ପଲିଟିକାଲ୍ ଏଜେଣ୍ଟ ଲୋକଙ୍କର ଆପତ୍ତି ଶୁଣି ଏହାର ସମ୍ୟକ ବିଚାର କରିବା ଫଳରେ ଆସନ୍ନ ମୃତ୍ୟୁମୁଖରୁ ହଜାର ହଜାର ଲୋକ ବଞ୍ଚିଗଲେ । ଜଣେ ବିଦେଶୀ ଲୋକ ଲୋକଙ୍କର ଦୁର୍ଦ୍ଦଶା

ବୁଝିପାରି ପ୍ରତିକାର କଲେ, ମାତ୍ର ନୟାଗଡ ରାଜ୍ୟର ପଲିଟିକାଲ୍ ଏଜେଣ୍ଟ ଓ ନୟାଗଡ ରାଜ୍ୟର ଅନ୍ନଜଳରେ ପ୍ରତିପାଳିତ ଦେଶୀ କର୍ମଚାରୀମାନେ ତାହା ବୁଝିବା ପାଇଁ ସକ୍ଷମ ହେଲେନାହିଁ ।

ଶ୍ରମ କରି ସମ୍ପଦ ଅର୍ଜନ କରିବାର ନ୍ୟାୟ ସଙ୍ଗତ ଅଧିକାର ଲୋକଙ୍କର ଥିଲେ ମଧ୍ୟ ରାଜକର୍ମଚାରୀମାନେ ଅଯଥା ହସ୍ତକ୍ଷେପ କରି ଲୋକଙ୍କୁ ନାନା ଅସୁବିଧାରେ ପକାଉଥିଲେ । କାହା ପାଖରେ ଟଙ୍କା ଟଇସା ଅଛି, ତାହା ପୋଲିସ୍ ଜାଣିପାରିଲେ ତାକୁ ନାନା ହଇରାଣ ହରକତ କରି ଏପରିକି ମିଥ୍ୟା ମାଲିମୋକଦ୍ଦମାରେ ସମ୍ପୃକ୍ତ କରାଇ ଉତ୍କୋଚ ଗ୍ରହଣ କରୁଥିଲେ । ଏହି କାରଣରୁ ଲୋକଙ୍କର ସମ୍ପଦ ଥିଲେ ମଧ୍ୟ ଭଲ ଘରଖଣ୍ଡିଏ କେହି କରୁନଥିଲେ । ଏଥିପାଇଁ ଏକ ପ୍ରବଚନ ମଧ୍ୟ ଥିଲା; "ନୟାଗଡେ ଯେବେ କରିବ ଘର, ଦାଣ୍ଡଘର ଝଣ୍ଡି ଅଳୁଆ କର ।"

## ବିଟ୍‌ପାଳି ବେଠି :—

ପ୍ରତି ଗାଁରେ ଗୋଟିଏ ଲେଖାଏଁ ବିଟ୍ ଘରଥାଏ । ଗ୍ରାମର ଜନସଂଖ୍ୟାକୁ ଚାହିଁ ପ୍ରତିଦିନ କେଉଁ ଗାଁରୁ କେତେଜଣ ବିଟ୍‌ପାଳି ବେଠି କରିବେ, ତାହା ପୋଲିସ୍ ଠିକ୍ କରିଥାଏ । ସେହି ଅନୁସାରେ ପ୍ରତିଦିନ ସନ୍ଧ୍ୟାରେ ବିଟ୍‌ପାଳିଆମାନେ ବିଟ୍ ଘର ଜଗିବାକୁ ଆସି ରାତ୍ର ବିଟ୍‌ଘରେ ଶୁଅନ୍ତି ଓ ତା ପରଦିନ ଦିବା ୧୦ଘଣ୍ଟା ପର୍ଯ୍ୟନ୍ତ ସେଠାରେ ରହନ୍ତି । ତା'ପରେ ପୋଲିସ୍‌ଙ୍କ ନିର୍ଦ୍ଦେଶମତେ ବିଟ୍‌ପାଳି କରିବା ପାଇଁ ପାଳିଆ ତା' ପଡୋଶୀକୁ ନିର୍ଦ୍ଦେଶ ଦେଇ ଆସେ । ଏହି ନିର୍ଦ୍ଦେଶ ଅର୍ଥ ବିଟ୍‌ପାଳିଆ ବିଟ୍‌ଘରୁ ଗୋଟିଏ ଠେଙ୍ଗା ନେଇ ପଡୋଶୀ ପାଳିଆର ସ୍ଥଳରେ ଢକୁଚି ଦେଇ ଆସେ ।

## ସଡକ ବେଠି : –

ନୟାଗଡରେ ଯେତେଗୁଡିଏ ପୁରାତନ ସଡକ ଅଛି, ସେସବୁ ଲୋକଙ୍କ ବେଠିରେ ନିର୍ମାଣ କରାଯାଇଥିଲା । ରାଜକର୍ମଚାରୀମାନେ ଏହା ଫଳରେ ବେଶ୍ ଦି ପଇସା ରୋଜଗାର କରିପାରୁଥିଲେ । ପୋଲିସ୍ ମାଧ୍ୟମରେ

ସଡ଼କ ବେଠି ହେଉଥିବାରୁ ଧାନକଟା ସମୟରେ ସଡ଼କ ବେଠି କରିବା ପାଇଁ ଲୋକଙ୍କୁ କହୁଥିଲେ । କିଛି ପଇସା ମିଳିଗଲେ ତାହା ପରିବର୍ତ୍ତନ ହୋଇ ପାଉଥିଲା ।

## ରଥ ବେଠି :—

ଚୁଣ୍ଡିଷ୍ଠ, ବାହୁଡା ଯାତ୍ରାପାଇଁ ଧର୍ମ ନାମରେ ସାରା ରାଜ୍ୟର ଲୋକଙ୍କୁ ରଥ ଟାଣିବା ପାଇଁ ବାଧ୍ୟ କରାଯାଉଥିଲା । ଯେତିକି ଲୋକଙ୍କୁ ବେଠିରେ ନିଆଯାଉଥିଲା, ତା'ର ଏକ ପଞ୍ଚମାଂଶ ଲୋକ ଅକ୍ଲେଶରେ ରଥ ଟାଣି ପାରନ୍ତେ ।

ବିଟ୍‌ପାଳିକୁ ଯାଉଥିବା ଲୋକେ କର୍ମଚାରୀମାନଙ୍କର କାଠ ହାଣିବା ବଗିଚା କାମକରିବା, ବେଡଂ ବୋହିବା କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ କର୍ମଚାରୀମାନେ ଗସ୍ତରେ ଗଲାବେଳେ ବାଟରେ ପାଣି କାଦୁଅ, ନଈ ନାଳ ପଡ଼ିଲେ ସେମାନଙ୍କୁ କାନ୍ଧରେ ବସାଇ ପାର କରଉଥିଲେ । ବେଠିରେ ଲୋକେ ସଡ଼କ ପକାଉଥିଲେ ମଧ୍ୟ ଉକ୍ତ ସଡ଼କରେ ରାଜକର୍ମଚାରୀମାନଙ୍କର ମଟର ଯିବା ଆସିବା ପାଇଁ ଉଦ୍ଦିଷ୍ଟ ଥିଲା । ପ୍ରଜା ସଡ଼କ ଉପରେ ଶଗଡ଼ ଚଳାଇଲେ ଏଥିପାଇଁ ଦଣ୍ଡ ଭୋଗ କରୁଥିଲା । ଲୋକଙ୍କର ଶଗଡ଼ ଯିବା ଆସିବା କରିବା ପାଇଁ ସଡ଼କ କାଛେ କାଛେ ଆଉ ଏକ କଚ୍ଚା ସଡ଼କ ବେଠିରେ କରାଯାଉଥିଲା । ଏହି ରାସ୍ତାକୁ 'ଡାଟ୍ ରୋଡ' ନାମରେ ଅଭିହିତ କରାଯାଇଥିଲା ।

## ବାଘଆଡ଼ ବେଠି :—

ସାହେବମାନେ ବର୍ଷକେ ଦୁଇ ଥରିଥର ବାଘ ଶିକାର କରିବାକୁ ଆସନ୍ତି । ଏଥିପାଇଁ ଲୋକେ ବାଘ ଆଡ଼ ପାଇଁ ବେଠିକରନ୍ତି । ସାହେବ ଗଛ ଉପରେ ସୁସଜ୍ଜିତ ନିରାପଦ ଘରରେ ବସନ୍ତି, ଲୋକେ ଜଙ୍ଗଲରେ ପଶି ହୋ ହୋ କରି ବାଜା ବଜାଇ ସାହେବ ବସିଥିବା ଘର ପାଖ ଗଛ ମୂଳକୁ ବାଘକୁ ଘଉଡ଼େଇ ଆଣନ୍ତି । ସାହେବ ବାଘକୁ ମାରି ଆନନ୍ଦ ଅନୁଭବ କରନ୍ତି । ଅଥଚ ସାହେବଙ୍କ ସାମନାରେ ବାଘ ଲୋକ ମାଇଲେ ସେଥିପାଇଁ କେହି ଶୋଚନା କରନ୍ତି ନାହିଁ ।

**ଜଙ୍ଗଲ ବେଠି** – ଜଙ୍ଗଲ ତୁଙ୍ଗ ସଫାକରିବା ଓ ଜଙ୍ଗଲ ନିଆଁ ଲିଭା କାର୍ଯ୍ୟ ବେଠିରେ କରହୁଏ । କିନ୍ତୁ ଜଙ୍ଗଲରୁ ପତ୍ରଟିଏ ସୁଦ୍ଧା ବ୍ୟବହାର କରିବାର ଅଧିକାର ଲୋକଙ୍କର ନଥିଲା । କବୁଲିୟତ ଜମି ଉପରେ ଗଛଟିଏ ଥିଲେ ପ୍ରଜା ନିଜପାଇଁ ତାହା ବ୍ୟବହାର କରିପାରୁ ନଥିଲା । ବନ୍ୟଜନ୍ତୁ ଜମିରେ ପଶି ଫସଲ ନଷ୍ଟକଲେ ତାକୁ ମାରିବାର ଅଧିକାର ପ୍ରଜାଙ୍କର ନଥିବାରୁ କ୍ରମେ ବନ୍ୟ ଜନ୍ତୁଙ୍କ ଅତ୍ୟାଚାର ଫଳରେ ବହୁ କବୁଲିୟତ ଜମି ଜଙ୍ଗଲରେ ପରିଣତ ହୋଇଗଲା । ହିଂସ୍ରଜନ୍ତୁଙ୍କ ଦାଉରେ ଅନେକ ଗାଁ ମଧ୍ୟ ଭଙ୍ଗି ଯାଇଥିଲା । ମୃଗ, ସମ୍ବର ଭଳି ବନ୍ୟଜନ୍ତୁ ଜଙ୍ଗଲରେ ମରି ପଡ଼ିଲେ ମଧ୍ୟ ଏହାର ମାଂସ, ଚମଡ଼ା କିମ୍ବା ଶିଙ୍ଗ କୌଣସି ପ୍ରଜା ଆଣିବାର ଜଣା ପଡ଼ିଲେ, ସେଥିପାଇଁ ଦଣ୍ଡିତ ହେଉଥିଲା । କାହାରିକୁ ବାଘ ଖାଇଗଲେ ଶୋକ ସନ୍ତପ୍ତ ପରିବାରକୁ ସାନ୍ତ୍ୱନା ଦେବା ପରିବର୍ତ୍ତେ ପୋଲିସ୍‌ମାନଙ୍କର ଅତ୍ୟାଚାର ଭୋଗ କରିବାକୁ ପଡ଼ୁଥିଲା ।

**ଲାଞ୍ଚ**—ପୋଲିସ୍, ଫରେଷ୍ଟର ବିଭାଗୀୟ କର୍ମଚାରୀମାନେ ବହୁ ଭାବରେ ଉତ୍‌କୋଚ ଗ୍ରହଣ କରୁଥିଲେ । ଏ ବିଷୟ ଯାହାଙ୍କ ଆଗରେ ଅପର୍ତ୍ତି ହୁଅନ୍ତା, ସେହି ଉଚ୍ଚ କର୍ମଚାରୀମାନଙ୍କର ଅଫିସ୍ ପ୍ରବେଶ ମାତ୍ରେ ପିଅନ ଠାରୁ ଆରମ୍ଭ କରି ବଡ ହାକିମଙ୍କ ପର୍ଯ୍ୟନ୍ତ ପଦ ମର୍ଯ୍ୟାଦା ଅନୁଯାୟୀ ଉତ୍‌କୋଚ ଦେବାକୁ ପଡୁଥିଲା । ସବୁ କ୍ଷେତ୍ରରେ ସବୁ ଶ୍ରେଣୀର କର୍ମଚାରୀ-ମାନେ ଲୋକଙ୍କୁ ବାଧ୍ୟ କରି ଉତ୍‌କୋଚ ଗ୍ରହଣ କରୁଥିଲେ । ସେତେବେଳେ ଜଣେ ଜଣେ ଫରେଷ୍ଟ ଗାର୍ଡ ଆଜିର ଚିଫ୍ କଞ୍ଜରଭେଟରଙ୍କ ଅପେକ୍ଷା ଅଧିକ କ୍ଷମତାଶାଳୀ ଥିଲେ । ସେହିଭଳି ଆଜିର ଆଇ. ଜି.ଙ୍କ ଅପେକ୍ଷା ତତ୍‌କାଳୀନ ଜଣେ କନେଷ୍ଟବଳର କ୍ଷମତା ଅଧିକ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ବର୍ତ୍ତମାନ ଉତ୍‌କୋଚ ଦିଆନିଆ ବହୁ ପରିମାଣରେ ହେଉଛି, ଏଥିରେ ସନ୍ଦେହ ନାହିଁ । ମାତ୍ର ସେତେବେଳର ଉତ୍କୋଚ ଗ୍ରହଣ ଆଜିର ଉତ୍କୋଚ ଗ୍ରହଣ ମଧ୍ୟରେ ପାର୍ଥକ୍ୟ ଏତିକି ଯେ ନିଜ ବ୍ୟକ୍ତିଗତ ଲାଭପାଇଁ ଲୋକେ ଆଜି ଲାଞ୍ଚ ଦେଉଛନ୍ତି । କିନ୍ତୁ ତତ୍‌କାଳୀନ ରାଜକର୍ମଚାରୀମାନେ ଲୋକଙ୍କ ଉପରେ ବେଆଇନ୍ ଭାବେ ଅତ୍ୟାଚାର କରି ଲାଞ୍ଚ ଗ୍ରହଣ କରୁଥିଲେ ।

୧୮୪୨ ମସିହାରୁ ଇଂରେଜ ସରକାର ଆଇନ୍ କରି ନରବଳି ପ୍ରଥା ଉଠାଇ ଦେଇଥିଲେ ମଧ୍ୟ ୧୯୨୯ ମସିହା ପର୍ଯ୍ୟନ୍ତ ଏହି ପ୍ରଥା ଲୁଚିଛପି ନୟାଗଡରେ ଚାଲିଥିଲା । ଏଥିପାଇଁ ଦଳେଲୋକ ଡାଗିରପାଇ ରହିଥିଲେ । ଏହି ଡାଗିର ଲୋକମାନଙ୍କୁ ଶଙ୍ଖୀଆକଟା ବୋଲି କୁହାଯାଏ । ଶଙ୍ଖୀଆ-କଟା ଯାହାକୁ ନିଅନ୍ତି ସେ ବିଷୟରେ କେହି କିଛି କହିପାରନ୍ତି ନାହିଁ । ଦି' ଗୋଡ଼ଆ ବାଘ ନେଲା ବୋଲି ଗୃହକର୍ତ୍ତା କହି ମୁଣ୍ଡ କାନ ଆଉଁସି ଘରେ ରହେ । ଆପତ୍ତି କଲେ ଅଧିକ ଦଣ୍ଡ ଭୋଗିବାକୁ ପଡେ । ନରବଳି ଭଳି ନିନ୍ଦନୀୟ କାର୍ଯ୍ୟପ୍ରତି ତତ୍କାଳୀନ ସରକାର ଚରମ ଉଦାସୀନତା ପ୍ରକାଶ କରୁଥିଲେ ମଧ୍ୟ କୌଣସି ଠାରେ ଅପମୃତ୍ୟୁଟାଏ ଘଟିଲେ ସେଥିପାଇଁ ଗାଁ ଲୋକଙ୍କ ଉପରେ ପୋଲିସ୍ ଯେଉଁଭଳି ଅତ୍ୟାଚାର କରୁଥିଲେ, ତା'ର ପଟାନ୍ତର ନାହିଁ । ଏଭଳି ବହୁ ଘଟଣା ଘଟିଥିଲେ ମଧ୍ୟ ସମସ୍ତଙ୍କ ଜାଣିବା ପାଇଁ ୧୯୨୩ ମସିହାରେ ଘଟିଥିବା ଗୋଟିଏ ଘଟଣାର ବିବରଣୀ ଦେବା:ଦ୍ୱାରା କଥାଟି ସ୍ପଷ୍ଟ ହୋଇଯିବ । ଗୋଟିଏ କୁଷ୍ଠରୋଗୀ ଭିକାରୀ ଢେଙ୍କଣା ନିକଟ କାଞ୍ଜିଆମ୍ବା ଜଙ୍ଗଲରେ ଦଉଡ଼ି ଦେଇ ଆତ୍ମହତ୍ୟା କଲା ' ଆଠଦିନ ପରେ ପୋଲିସ୍ ଏହିକଥା ଶୁଣି ପଚାସଢ଼ା ଦୁର୍ଗନ୍ଧ ଶବଟିକୁ ଡାକ୍ତର ପରୀକ୍ଷା ପାଇଁ ନୟାଗଡ ପଠାଇଦେଇ ଢେଙ୍କଣା ପାର୍ଶ୍ୱବର୍ତ୍ତୀ ୪୫ ଖଣ୍ଡ ଗ୍ରାମ ଉପରେ ଅତ୍ୟାଚାର ଚଳାଇଲେ । ତାହା ଶୁଣିବା ଲୋକର ମନରେ ଏବେ ମଧ୍ୟ ଶିହରଣ ଆସେ । ଉକ୍ତ ୪୫ଖଣ୍ଡ ଗ୍ରାମର ଆବାଳ-ବୃଦ୍ଧବନିତାଙ୍କୁ ଜବରଦସ୍ତ ଧରିଆଣି ଢେଙ୍କଣା ନିକଟବର୍ତ୍ତୀ ଗାଈଚରା ପଡ଼ିଆରେ ମୁକ୍ତ ଆକାଶ ତଳେ ଅଟକାଇ ଏଭଳି ଅତ୍ୟାଚାର କରଯାଇଥିଲା, ତାହା ଏଭଳି ହୃଦୟ ବିଦାରକ ଯେ ଭାଷାରେ କହି ହେବନାହିଁ । ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସମସ୍ତଙ୍କ ଉପରେ ପାଶବିକ ଅତ୍ୟାଚାର କରଯାଉ-ଥିଲା । ଲୋକଙ୍କ ନଖକୋଣରେ ବାଉଁଶ ପାତିଆ ବାଡେଇବା, ଆଣ୍ଠୁତଳେ ଗୋଡଦେଇ ଦିନରାତି ବସାଇବା ଇତ୍ୟାଦି ବହୁ ଅତ୍ୟାଚାର କରଯାଉଥିଲା । ଯିଏବା କିଛି ଲାଞ୍ଚ ରିହିମତ ଦେଉଥିଲା, ସେ କିଛି ସମୟ ପାଇଁ ଦଣ୍ଡରୁ ମୁକ୍ତ ହେଉଥିଲା । ଲାଠି ଓ ଜୋତାମାଡ଼ ତ ନିତ୍ୟପ୍ରତ୍ୟହ ଘଟଣା । ଏଭଳି ଅତ୍ୟାଚାର ସପ୍ତାହେ ଚାଲିବା ପରେ ହୀରଦେଈପୁରର ବିପ୍ଳବୀ ଗତି ମଙ୍ଗରାଜ ପୋଲିସ୍‌ଙ୍କ ସାମନାରେ ଏହି କାର୍ଯ୍ୟର ତୀବ୍ର ପ୍ରତିବାଦ କରିଥିଲେ । ପୋଲିସ୍‌ଙ୍କୁ ନ ମାନି ଘରକୁ ଚାଲିଯିବା ପାଇଁ ଲୋକଙ୍କୁ

ଅନୁରୋଧ କରିଥିଲେ ଓ ଏହି ଅତ୍ୟାଚାରର ମର୍ମନ୍ତୁଦ ବିବରଣୀ ତତ୍-କାଳୀନ ପଲିଟିକାଲ୍ ଏଜେଣ୍ଟଙ୍କୁ ଜଣାଇ ସୁପରିଣ୍ଟେଣ୍ଡେଣ୍ଟ ଅନିରୁଦ୍ଧ ପଟେଲ ଓ ପୋଲିସ୍‌ଙ୍କ ବେଆଇନ୍ କାର୍ଯ୍ୟ ସମ୍ପର୍କରେ ବିହିତ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ଆବେଦନ କରିଥିଲେ । ଏହି ଦରଖାସ୍ତଟିର ବିଚାର ପାଇଁ ପଲିଟିକାଲ୍ ଏଜେଣ୍ଟ ଅନିରୁଦ୍ଧ ପଟେଲଙ୍କ ପାଖକୁ ପଠାଇଦେଲେ । ଉକ୍ତ ଦରଖାସ୍ତର ବିଚାର କରିବା ପାଇଁ ଅନିରୁଦ୍ଧ ପଟେଲ ମଙ୍ଗରାଜଙ୍କୁ ଡକାଇବାରୁ ସେ ଦିନବେଳେ ଲଣ୍ଠନ ଜାଳି ସୁପରିଣ୍ଟେଣ୍ଡେଣ୍ଟଙ୍କ କୋର୍ଟରେ ଉପସ୍ଥିତ ହୋଇଥିଲେ । ତାଙ୍କର ଏଭଳି କାର୍ଯ୍ୟ ଦେଖି ରାଜପକ୍ଷ ଲୋକେ ତାଙ୍କୁ ଉପହାସ କରିବାରୁ ସେ କହିଥିଲେ, ନୟାଗଡ ଦିନବେଳେ ଅନ୍ଧାର । ମୁଁ ଯେଉଁ ସୁପରିଣ୍ଟେଣ୍ଡେଣ୍ଟଙ୍କ ବିରୁଦ୍ଧରେ ପଲିଟିକାଲ୍ ଏଜେଣ୍ଟଙ୍କୁ ଦରଖାସ୍ତ କଲି, ସେହି ଦରଖାସ୍ତର ବିଚାର ଯଦ୍ୟପି ସେହି ସୁପରିଣ୍ଟେଣ୍ଡେଣ୍ଟ କରନ୍ତୁ, ତାହାହେଲେ ଦିନବେଳେ ଅନ୍ଧାର ନୁହେଁ ତ ଆଉ କ'ଣ ? ବିଚାର ଶେଷରେ ମଙ୍ଗରାଜଙ୍କୁ ସୁପରିଣ୍ଟେଣ୍ଡେଣ୍ଟ ଦୁଇବର୍ଷ ଜେଲ୍ ଦଣ୍ଡରେ ଦଣ୍ଡିତ କଲେ । ଜେଲ୍ ମୁକ୍ତ ହେବାପରେ କିମ୍ବଦନ୍ତୀ ଅଛି ସେ ପଲିଟି-କାଲ୍ ଏଜେଣ୍ଟଙ୍କୁ ଏକଥା କହିବାକୁ ଯାଇ ଆଉ ଫେରି ନାହାନ୍ତି ।

ରହାଦ :—

କୌଣସି ଉଚ୍ଚ ସରକାରୀ କର୍ତ୍ତୃପକ୍ଷ କିମ୍ବା ପଲିଟିକାଲ୍ ଏଜେଣ୍ଟ ଗସ୍ତରେ ଆସିଲେ ତାଙ୍କ କ୍ୟାମ୍ପ୍‌ର ସମସ୍ତ ପ୍ରକାର ଖର୍ଚ୍ଚ ପ୍ରଜାମାନେ ବହନ କରୁଥିଲେ । କ୍ୟାମ୍ପ୍ ଖର୍ଚ୍ଚ ପାଇଁ ସର୍ବରାକାରମାନେ ପ୍ରଜାଙ୍କଠାରୁ ବାଦଖର୍ଚ୍ଚ ନାମରେ ଏକ ପାଉଣା ଆଦାୟ କରି ଏହି ଖର୍ଚ୍ଚରେ ମାଠିଆ ମାଠିଆ ଗୁଆଘିଅ, ଘର ଘର ଅକ୍ଷତ ସୁବାସିତ ଚାଉଳ, ଆଳୁ, କଦଳୀ ଇତ୍ୟାଦି ପରିବା କ୍ୟାମ୍ପ୍ ପାଇଁ ଯୋଗାଉଥିଲେ । ପୋଲିସ୍ ଓ ବନବିଭାଗୀୟ କର୍ମଚାରୀମାନେ କ୍ୟାମ୍ପ୍‌କୁ କ୍ଷୀର୍ ଦହି ମାଛ,ମାଂସ ଇତ୍ୟାଦି ଯୋଗାଇବାର ଭାର ବହନ କରି ଗଉଡ ଘରୁ ଦୁହାଁଳିଆ ଗାଈ ଓ ମଇଁଷି ଶହ ଶହ ସଂଖ୍ୟାରେ ଆଣି କ୍ୟାମ୍ପ୍‌ରେ ଜମା କରୁଥିଲେ । ଗା ରକ୍ଷୀଙ୍କର ପୋଷା ଖାସି ବିନା ମୂଲ୍ୟରେ ଆଣି କ୍ୟାମ୍ପ୍ ପାଇଁ ମାଂସ ଯୋଗାଉଥିଲେ । ଗରିବ ହରିଜନଙ୍କ ଘରୁ ଶହ ଶହ ସଂଖ୍ୟାରେ ଅଣ୍ଡା, କୁକୁଡା ଜବରଦସ୍ତି

କ୍ୟାମ୍ପ୍ ଖର୍ଚ୍ଚ ପାଇଁ ନେଉଥିଲେ । କ୍ୟାମ୍ପର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ କରିବା ପାଇଁ ଶହ ଶହ ପ୍ରଜା ଦିନରାତି ବେଠି ଖଟୁଥିଲେ । କ୍ୟାମ୍ପ୍ ଏତେ ଯାକଜମକରେ ଚାଲିଥିଲେ ମଧ୍ୟ କ୍ୟାମ୍ପ୍ କାର୍ଯ୍ୟରେ ନିଯୁକ୍ତ ବେଠିଆମାନେ ଉପାସ ପେଟରେ କାର୍ଯ୍ୟ କରୁଥିଲେ । ବିଭାଗୀୟ ଅଫିସରମାନେ ଜାଣିଶୁଣି ଏମାନଙ୍କର ଖାଦ୍ୟପେୟର ବ୍ୟବସ୍ଥା କିଛି କରୁନଥିଲେ । ପଲିଟିକାଲ୍ ଏଜେଣ୍ଟ ଏହା ସ୍ୱଚକ୍ଷୁରେ ଦେଖି ମଧ୍ୟ ନୀରବ ରହୁଥିଲେ ।

ହିନ୍ଦୁ ଧାର୍ମିକ ବ୍ୟକ୍ତିମାନେ ମୁକ୍ତି କାମନା କରି ନିଜ ବ୍ୟୟରେ ମନ୍ଦିର ନିର୍ମାଣ, ପୁଷ୍କରିଣୀ ଖନନ ଇତ୍ୟାଦି କୀର୍ତ୍ତିମାନ କରିବାକୁ ଇଚ୍ଛାକଲେ ସେଥିପାଇଁ କର୍ତ୍ତୃପକ୍ଷଙ୍କୁ ଆବେଦନ କରି, ଭେଟି ସଲାମୀ ଦେଇ ଅନୁମତି ଆଣିଲେ କୀର୍ତ୍ତି କରୁଥିଲେ । ଦୁଆରେ ଡାଉଁଳି କବାଟ, ଘୋଡ଼ାଗ ପାହାଚ କରିବାକୁ ହେଲେ ସେଥିପାଇଁ ରାଜାଙ୍କର ଅନୁମତି ଦରକାର ପଡ଼ୁଥିଲା । ବ୍ରାହ୍ମଣ, କରଣ, କ୍ଷତ୍ରୀୟ ପ୍ରଭୃତି କେତେକ ନିର୍ଦ୍ଦିଷ୍ଟ ବର୍ଣ୍ଣର ବ୍ୟକ୍ତିଙ୍କ ବ୍ୟତୀତ ଅନ୍ୟ କେହି ସବାରୀ ପାଲିଙ୍କିରେ ବସିବାକୁ ଚାହିଁଲେ ରାଜାଙ୍କର ଅନୁମତି ଦରକାର ହେଉଥିଲା । ଏଥିପାଇଁ ରାଜାଙ୍କୁ ଭେଟି ସଲାମୀ ମଧ୍ୟ ଦିଆଯାଉଥିଲା । ଠାକୁର ଗୁଡେରୀ ଭୋଗ ଦୁଆରେ କରିବା ପାଇଁ ରାଜାଙ୍କର ଅନୁମତି ଦରକାର ପଡ଼ୁଥିଲା । ଏପରିକି ତଳ ଶ୍ରେଣୀର ଲୋକେ ରଙ୍ଗ ବେରଙ୍ଗର ଶାଲ୍ ବ୍ୟବହାର କରିବା ପାଇଁ ରାଜାଙ୍କର ଅନୁମତି ଦରକାର ପଡ଼ୁଥିଲା । ରାଜା ବିଜେହେବା ବେଳେ କେହି କୁଆପେର ଛାଡ଼ ଚାଲି-ପାରୁନଥିଲେ । ରାଜକର୍ମଚାରୀମାନେ ନିର୍ଲଜ୍ଜ ଭାବେ ଓଡ଼ଗାଁ ରାମନବମୀ ଯାତ୍ରାଦିନ ସାଙ୍ଗରେ ବେଶ୍ୟାଧରି ଯାତ୍ରା ଦେଖିବାକୁ ଆସୁଥିଲେ ଏବଂ ଉକ୍ତ ବେଶ୍ୟାମାନଙ୍କୁ ପ୍ରଜାଙ୍କ ଘରେ ବାଧ୍ୟ ବାଧ୍ୟକତା ଭାବେ ରଖାଉ-ଥିଲେ । ଖଣ୍ଡେ ଫୁଟିକିଆ ଲମ୍ବର ଛୁରୀ ଲୋକେ ରଖିଲେ ଦଣ୍ଡ ଭୋଗ-କରୁଥିଲେ । ଏଭଳି କେତେ ଯେ ଅକଥନୀୟ ନିର୍ଯ୍ୟାତନା ଲୋକେ ଭୋଗକରୁଥିଲେ ତା'ର ପଟାନ୍ତର ନାହିଁ ।

# ସ୍ୱାଧୀନତା ଆନ୍ଦୋଳନରେ ନୟାଗଡ଼
# ସ୍ୱାର୍ଥ ଦୃଷ୍ଟିରୁ ଶାସନଗତ ପରିବର୍ତ୍ତନ

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତବର୍ଷରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ୧୯୨୧ ମସିହାରେ ହେଲା, ନୟାଗଡ ଉପରେ ତା'ର ସମ୍ୟକ ପ୍ରଭାବ ପଡ଼ିବାରୁ ବିଶେଷତଃ ମହାତ୍ମାଜୀଙ୍କର ବୋଲଗଡ ଆଗମନ ନୟାଗଡର କେତେକ ଲୋକଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସେହିଦିନୁ ଗାନ୍ଧିଜୀଙ୍କ ଚରଖା ଆନ୍ଦୋଳନ ସହ ସମ୍ପୃକ୍ତ ହୋଇ ନୟାଗଡର ହଜାର ହଜାର ଲୋକ ସୂତା କାଟିଥିଲେ । ବାଉଁଶିଆ ଗ୍ରାମର ମୁରଲୀ ତ୍ରିପାଠୀ ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନରେ ଝାସଦେଲେ । ଶ୍ରୀ ଗତି ମଙ୍ଗରାଜ ସରକାରୀ ଅତ୍ୟାଚାରର ପ୍ରତିବାଦ କରି ଚିରଦିନ ପାଇଁ ନିର୍ବାସିତ ହେଲେ । ଓଡଗାଁର ଶ୍ରୀ ନାରାୟଣ ନନ୍ଦ ପୋଷ୍ଟ-ମାଷ୍ଟର ଥାଇ ନିଜ ହାତରେ ଅରଟରେ ସୂତାକାଟି ଖଦଡ ପିନ୍ଧିବା ହେତୁ ତାଙ୍କ ଘର ଖାନତଲାସ ହେଲା । ତାଙ୍କର ଅରଟଖଣ୍ଡି ମଧ୍ୟ ବାଜ୍ୟାପ୍ତ କରି ତାଙ୍କୁ ପୋଷ୍ଟମାଷ୍ଟର ଚାକିରିରୁ ଅନ୍ତର କରିବା ସଙ୍ଗେ ସଙ୍ଗେ ତାଙ୍କର ପୁରୁଷାନୁକ୍ରମିକ ରଘୁନାଥ ଜୀଉଙ୍କ ସେବାପୂଜା ଚାକିରିରୁ ବହିଷ୍କୃତ କରାଗଲା । ତାଙ୍କର ସେବା ଜମି ତାଙ୍କଠାରୁ ଛଡାଇ ନିଆଗଲା ।



# ଜନହିତକର କାର୍ଯ୍ୟପାଇଁ ଅବ୍ଦୁଲ ସତାରଖାଁଙ୍କର ଆଗ୍ରହ

ନୟାଗଡ ଇଂରେଜ ସରକାରଙ୍କର ବଶ୍ୟତା ସ୍ୱୀକାର କରିବା ଦିନୁ ପର୍ଯ୍ୟାୟକ୍ରମେ କଲେକ୍ଟର, କମିଶନର ଓ ପ୍ରାଦେଶିକ ଗଭର୍ଣ୍ଣରଙ୍କ ସୁପାରିଶ ଅନୁଯାରେ ଇଂରେଜ ସରକାର ଗଡଜାତଗୁଡିକୁ ଖୋଦ୍ ବଡଲାଟଙ୍କ ତତ୍ତ୍ୱାବଧାନରେ ରଖିଲେ । ବଡଲାଟ ପ୍ରାଦେଶିକ ଗଭର୍ଣ୍ଣର ଇନ୍-କାଉନ୍-ସିଲରଙ୍କୁ ଏଜେଣ୍ଟ ନିଯୁକ୍ତି କରି ତାଙ୍କରି ମାଧ୍ୟମରେ ଶାସନ ଚଳାଇଲେ । ୧୯୨୩ ମସିହାନ୍ତୁ ବିହାର ଓଡ଼ିଶା ଗଭର୍ଣ୍ଣର ଇନ୍ କାଉନ୍ସିଲର ଘରେ ନୟାଗଡ ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୩୩ ମସିହାରେ ଓଡ଼ିଶା ଓ ମଧ୍ୟପ୍ରଦେଶର ୪୦ଟି ଗଡଜାତକୁ ଏକାଠି କରି ଇଷ୍ଟର୍ଣ୍ଣ ଷ୍ଟେଟ୍ସ ନାମରେ ଏକ ଅଞ୍ଚଳ ଗଠନ କରି ବଡଲାଟ ଗୋଟିଏ ବିଭାଗ ଖୋଲି ଏହାର ପରିଚାଳନା ପାଇଁ ଜଣେ ରେସିଡେଣ୍ଟ ନିଯୁକ୍ତି କଲେ । ଏହି ରେସିଡେଣ୍ଟଙ୍କ ଅଧୀନରେ ୩ଜଣ ପଲିଟିକାଲ ଏଜେଣ୍ଟ ନିଯୁକ୍ତକରି ଇଷ୍ଟର୍ଣ୍ଣଷ୍ଟେଟ୍ ଏଜେନ୍ସିକୁ ୩ ଭାଗରେ ବିଭକ୍ତ କରି ଗୋଟିଏ ଗୋଟିଏ ଅଞ୍ଚଳ ପାଇଁ ଜଣେ ଜଣେ ପଲିଟିକାଲ୍ ଏଜେଣ୍ଟଙ୍କୁ ଦାୟିତ୍ୱ ଦେଲେ ।

୧୯୨୮ ମସିହାରେ ତତ୍କାଳୀନ ସୁପରିଣ୍ଟେଣ୍ଡେଣ୍ଟ ଅବଦୁଲ୍ ସତାର ଖାଁ ନୟାଗଡରେ ରାଜସ୍ୱ ବନ୍ଦୋବସ୍ତ କାର୍ଯ୍ୟ ଆରମ୍ଭକଲେ । ୧୯୨୯ ମସିହାରେ ବିଶ୍ୱରେ ଡିଫ୍ଲେସନ୍ (ଦରଦାମ ହ୍ରାସ) ପରିସ୍ଥିତି ସୃଷ୍ଟି ହେବା ଫଳରେ ନୟାଗଡ ଭଳି କୃଷିପ୍ରଧାନ ରାଜ୍ୟରେ ଏହାର ତୀବ୍ରତା ଅନୁଭବ କରଗଲା । କୃଷିଜାତ ଦ୍ରବ୍ୟର ମୂଲ୍ୟ ଅତିମାତ୍ରାରେ ହ୍ରାସ ହୋଇଯିବା ସଙ୍ଗେ ସଙ୍ଗେ ବନ୍ଦୋବସ୍ତ କର୍ମଚାରୀମାନଙ୍କର ଅତ୍ୟାଚାର ହେତୁ ଲୋକେ ଚରମ ଦୁର୍ବିପାକର ସମ୍ମୁଖୀନ ହେଲେ । ଧାନବସ୍ତା ଦୁଇଟଙ୍କା, ମୁଗବସ୍ତା ଚାରିଟଙ୍କା, ଟଙ୍କାକୁ ଘିଅ ୨୪ପଳ, ଏଭଳି

ଅନ୍ୟାନ୍ୟ ସମସ୍ତ ଜିନିଷପତ୍ରର ଦର ମଧ୍ୟ କମିଗଲା । ଏହା ଚାଷୀମାନଙ୍କ ପକ୍ଷେ ଯେତିକି ଦୁର୍ବିପାକ ହେଲା, ନିର୍ଦ୍ଦିଷ୍ଟ ଭାବେ ବେତନ ପାଉଥିବା ରାଜକର୍ମଚାରୀମାନଙ୍କ ପକ୍ଷେ ସେତିକି ଆନନ୍ଦଦାୟକ ହେଲା । ଲୋକେ ବନ୍ଦୋବସ୍ତ ଓ ରାଜକର୍ମଚାରୀମାନଙ୍କର ପାଉଣା ସାଙ୍ଗକୁ ଖଜଣା ଦେଇ-ନପାରି ରେଙ୍ଗୁନ୍, କଲିକତା କୁଲି ଖଟିବା ପାଇଁ ପଳାଇଗଲେ । ଏପରିକି ବଡ ବଡ ଚାଷୀମାନେ ଖଜଣା ଦେଇନପାରି ଜମି ଛାଡ଼ିଗଲେ । ବହୁ ଆବାଦଜମି ଫସଲ ହୋଇନପାରିବାରୁ ଜଙ୍ଗଲରେ ପରିଣତ ହେଲା । ଚାଷୀଙ୍କର ଏହି ଦୁର୍ଦ୍ଦିନରେ ସରକାର ସାହାଯ୍ୟ କରିପାରିନଥିଲେ । ବର୍ତ୍ତମାନ କୃଷିଜାତ ଦ୍ରବ୍ୟର ମୂଲ୍ୟାୟନ କରି ଶସ୍ତାରେ ପାଇବା ପାଇଁ ସହର ଅଞ୍ଚଳର ଲୋକେ ଯେଉଁଳି ଉଦ୍ବୋଳନ କରୁଛନ୍ତି ୧୯୨୯ ଠାରୁ ୧୯୪୩ ପର୍ଯ୍ୟନ୍ତ ଚାଷୀକୁଳ କୃଷିଜାତ ଦ୍ରବ୍ୟର ମୂଲ୍ୟହ୍ରାସ ହେତୁ ଯେଉଁଳି ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ, ତାହା ଆଜିର ଇନ୍‌ଫ୍ଲେସନ୍ (ମୁଦ୍ରାସ୍ଫୀତି) ଠାରୁ କୌଣସି ଗୁଣରେ ଊଣା ନୁହେଁ । ବର୍ତ୍ତମାନ ଦରଦାମ ବୃଦ୍ଧି ଘଟିଛି । ମାତ୍ର ଦରଦାମ କମୁଥିବା ବେଳେ ଦେଶରେ ଯେତେ ଲୋକ ଉପବାସ ରହୁଥିଲେ, ଆଜିର ମୁଦ୍ରାସ୍ଫୀତି ହେତୁ ସେତେ ଲୋକ ଉପବାସ ରହୁ-ନାହାନ୍ତି । ନିର୍ଦ୍ଦିଷ୍ଟ ଆୟ କରୁଥିବା ବ୍ୟକ୍ତିମାନଙ୍କ ପକ୍ଷେ ମୁଦ୍ରାସ୍ଫୀତି ଯେଉଁଳି କଷ୍ଟଦାୟକ, ଡିଫ୍ଲେସନ୍ ହେଲେ ଚାଷୀ ପକ୍ଷେ ଏହା ତାହାଠାରୁ ଅଧିକ କଷ୍ଟଦାୟକ ।

୧୯୨୮ ମସିହାରୁ ୧୯୩୨ ମସିହାପର୍ଯ୍ୟନ୍ତ ବନ୍ଦୋବସ୍ତ କାର୍ଯ୍ୟ ଚାଲିଲା । ବନ୍ଦୋବସ୍ତ କର୍ମଚାରୀମାନେ ଲୋକଙ୍କୁ କାଙ୍ଗାଳ କରିଦେଲେ । ଏହା ସାଙ୍ଗକୁ ମାମୁଲି ବେଠି ସହିତ ବନ୍ଦୋବସ୍ତ ପାଇଁ ଲୋକେ ଅଧିକ ବେଠି କଲେ । ଅପର୍ଯ୍ୟାପ୍ତ ଲାଞ୍ଚଦେଇ ସର୍ବସ୍ୱାନ୍ତ ହେଲେ । ବନ୍ଦୋବସ୍ତରେ ଖଜଣା ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସତ୍ୱାସତ୍ୱ ମଧ୍ୟ ଠିକ୍ କରଗଲା । ଏହା ଫଳରେ ଏକପ୍ରକାର ଭୂସଂସ୍କାର ହୋଇଗଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ପ୍ରଜାଙ୍କୁ ଯେଉଁ ଅଧିକାର ଦିଆଗଲା, ସେଥିରେ ପ୍ରଜା ଜମିର ପୂର୍ଣ୍ଣ ମାଲିକନା ପାଇଲାନାହିଁ । କବୁଲିୟତ ଜମି ଉପରେ ଥିବା ଗଛ ଓ ପୋଖରୀର ମାଛ ବ୍ୟବହାର କରିବାର ଅଧିକାର ପ୍ରଜାର ରହିଲାନାହିଁ । ବେଠି ଉଠାଇ-ଦେଇ ଖଜଣା ଉପରେ ରୟତି ଜମିପକ୍ଷେ ଟଙ୍କାକେ ତିନିଅଣା ଓ ଅନ୍ୟାନ୍ୟ

ମଧ୍ୟ-ସତ୍ୱାଧିକାର ଜମି ପକ୍ଷେ ଟଙ୍କାକେ ଚ଼'ଅଣା ବେଠିକର ଧାର୍ଯ୍ୟ ହେଲା । ବହୁ ସିକିମ ପ୍ରଜା ଭୂମିର ଅଧିକାର ପାଇଲେ । ବନକର ଓ ଶିକ୍ଷାକର ମଧ୍ୟ ଏହି ବନ୍ଦୋବସ୍ତରେ ଲୋକଙ୍କ ଉପରେ ଧାର୍ଯ୍ୟ କରାଗଲା ।

ଅବ୍ଦୁଲ୍ ସତାର ଖାଁ ବନ୍ଦୋବସ୍ତ କରାଇ ସମ୍ୟକ୍ ଭାବେ ଭୂ-ସଂସ୍କାର କରାଇବା ସଙ୍ଗେ ସଙ୍ଗେ ରାଜ୍ୟରେ ବାଧ୍ୟତାମୂଳକ ଶିକ୍ଷା ପ୍ରଚଳନ କରାଇଥିଲେ । ହରିଜନ ଓ ଆଦିବାସୀ ପ୍ରଜାଙ୍କ ପାଇଁ ସ୍ୱତନ୍ତ୍ର କଟକଣା ଜାରିକରି ସେମାନଙ୍କର ଜମି ବିକ୍ରୀ ବେଳେ ଅନୁମତି ପ୍ରଥା ପ୍ରଚଳନ କରିଥିଲେ । ଛୁଆଁ ଅଛୁଆଁ ଭେଦଭାବ ଉଠାଇବା ପାଇଁ ଚେଷ୍ଟା କରିଥିଲେ । ହରିଜନ ଓ ଆଦିବାସୀ ପିଲାଙ୍କ ଶିକ୍ଷାପାଇଁ ଆର୍ଥିକ ବ୍ୟବସ୍ଥା କରାଇଥିଲେ । ନିଶାନିବାରଣ କାର୍ଯ୍ୟ ଆରମ୍ଭ କରିଅଫିମ ପ୍ରଚଳନର ବ୍ୟବସ୍ଥାକୁ ସଙ୍କୁଚିତ କରିଦେଇଥିଲେ । ମଦ କାରବାରକୁ ସମ୍ପୂର୍ଣ୍ଣ ନିଷେଧ କରା-ଯାଇଥିଲା । ରାଜ୍ୟରେ ଚୋରଙ୍କ ଉପଦ୍ରବ ସମ୍ପୂର୍ଣ୍ଣ ଭାବେ ନିବାରଣ କରାଯାଇଥିଲା । ଗ୍ରାମରୁ ଗ୍ରାମାନ୍ତର ବେଠିରେ ସଡ଼କ ପକାଇବାର ବ୍ୟବସ୍ଥା ମଧ୍ୟ କରାଇଥିଲେ । ଜଣେ ଅମଲାତାନ୍ତ୍ରିକ ଶାସନକର୍ତ୍ତା ସ୍ୱ କ୍ଷମତା ବଳରେ ସେତେବେଳେ ଯାହା କରିପାରିଥିଲେ ଆଜିର ଗଣତନ୍ତ୍ର ସରକାର ବହୁ ଧନ ବ୍ୟୟକରି ସେହି କାର୍ଯ୍ୟ କରାଉଅଛନ୍ତି । ଅବ୍ଦୁଲ୍ ସତାର ଖାଁ ରାଜ୍ୟରେ ବହୁ ସଂସ୍କାର ମୂଳକ କାର୍ଯ୍ୟ କରିଥିବା ସତ୍ତ୍ୱେ ପୂର୍ବ ବର୍ଣ୍ଣିତ ଅତ୍ୟାଚାର ଉପଶମ କରିପାରିନଥିଲେ । ଏଣୁ ଜନସାଧାରଣ ରାଜାଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଥିଲେ । ଏହି ସମୟରେ ଜମି ବିକ୍ରୀବେଳେ ରୟତି ଜମି ପକ୍ଷେ ଖଜଣାର ବାରଗୁଣ, ବ୍ରହ୍ମୋତ୍ତର ଜମି ପକ୍ଷେ ଖଜଣାର ୨୦ଗୁଣ ଏବଂ ଜାଗିର ଜମି ପକ୍ଷେ ୨୪ଗୁଣ ହସ୍ତାନ୍ତର ଫିସ୍ ଧାର୍ଯ୍ୟ କରାଯାଇଥିଲା ।

ଇଂରେଜ ସରକାରଙ୍କ ଦ୍ୱାରା ନିଯୁକ୍ତ, ସାଇମନ୍ କମିଶନ୍ ଭାରତବର୍ଷକୁ ଆସି ଶାସନ ସଂସ୍କାର ସମ୍ପର୍କରେ ଯେଉଁ ରିପୋର୍ଟ ଦେଇ-ଥିଲେ, ସେଥିରେ ଏହି କମିଶନର ଅଟ୍ଲି ସବ୍‌କମିଟି ଗଡ଼ଜାତ ବିଷୟ ଅନୁସନ୍ଧାନ କରି ତାହାର ରାଜନୈତିକ, ଆର୍ଥିକ ତଥା ସାମାଜିକ ଅବସ୍ଥା ପର୍ଯ୍ୟାଲୋଚନା କରି ଏଭଳି ଗଡ଼ଜାତଗୁଡ଼ିକ ସ୍ୱତନ୍ତ୍ର ଭାବେ ଶାସନ ଚଳାଇବାକୁ ଅକ୍ଷମ ବୋଲି ମତବ୍ୟକ୍ତ କରି ପାର୍ଶ୍ୱବର୍ତ୍ତୀ ପ୍ରଦେଶ ସହିତ

ଏଗୁଡକୁ ମିଶାଇଦେବାକୁ ସୁପାରିଶ କଲେ । ଉକ୍ତ ମତ ଉଚ୍ଚପଦସ୍ଥ ବ୍ୟକ୍ତିମାନଙ୍କ ଦ୍ୱାରା ଅନୁମୋଦିତ ହୋଇଥିଲେ ମଧ୍ୟ ରାଜନୈତିକ କାରଣରୁ ଏହାକୁ କାର୍ଯ୍ୟକାରୀ କରାଗଲା ନାହିଁ ।

୧୯୩୪ ମସିହା ଭାରତ ଶାସନ ଆଇନ ପ୍ରବର୍ତ୍ତିତ ହେବା ପରେ ଗଡଜାତ-ଗୁଡିକ ଭାଇସ୍‌ରୟଙ୍କ ଜରିଆରେ ସିଧା ବ୍ରିଟିଶ୍ ପାର୍ଲାମେଣ୍ଟଙ୍କ ଅଧୀନରେ ରହିଲେ । ସାଧାରଣ ଶାସନ ସହିତ ରାଜାମାନଙ୍କର କିଛି ସମ୍ପର୍କ ରହିଲା ନାହିଁ ସତ୍ୟ, ମାତ୍ର ଇଂରେଜ ସରକାରଙ୍କର ୨୬-୬-୩୭ରେ ରାଜାମାନଙ୍କୁ ଯେଉଁ ସନନ୍ଦ ଦିଆଗଲା ତାଦ୍ୱାରା ରାଜାମାନେ ନିରଙ୍କୁଶ କ୍ଷମତାର ଅଧିକାରୀ ହେଲେ । ମାତ୍ର ଇଂରେଜ ସରକାର ରାଜାମାନଙ୍କୁ ଯେଉଁ ସନନ୍ଦ ଦେଲେ ସେଥିରେ ନିଜର ପ୍ରଭୁତ କ୍ଷମତା ରଖିଥିଲେ । ଉକ୍ତ ସନନ୍ଦର ୩ୟ ଦଫାଠାରୁ ଷଷ୍ଠ ଦଫା ପର୍ଯ୍ୟନ୍ତ ଯାହା ବିଧାନ ଥିଲା ତାହା ହେଲା (୩ୟ ଦଫା) ଆପଣ ନିଜ ରାଜ୍ୟର ସକଳ ପ୍ରକାର ଅପରାଧ ଦମନ କରିବେ, ୪ର୍ଥ ଦଫା-ଆପଣ ନିରପେକ୍ଷ ଭାବରେ ସମସ୍ତଙ୍କ ପ୍ରତି ସମାନ ଭାବରେ ନ୍ୟାୟ ବିଚାର ଦେବେ, ୫ମ ଦଫା-ଆପଣ ଲୋକଙ୍କ ଅଧିକାରକୁ ସ୍ୱୀକାର କରିବେ ଓ ରକ୍ଷା କରିବେ । କୌଣସି କାରଣରୁ ଅତ୍ୟାଚାର କରିବେ ନାହିଁ ବା ଲୋକଙ୍କୁ ଅନ୍ୟଦ୍ୱାରା ଅତ୍ୟାଚାରିତ ହେବାକୁ ଦେବେନାହିଁ । ବିଶେଷକରି ଆଦିବାସୀ ଜନତାର ମଙ୍ଗଳ ଦାୟିତ୍ୱ ନିଜେ ବହନ କରିବେ । ୬ଷ୍ଠ ଦଫା-ଗଭର୍ଣ୍ଣର ଜେନେରାଲ ପୂର୍ବ ଗଡଜାତମାନଙ୍କ ପାଇଁ ଏଜେଣ୍ଟ ବା ଭାଇସ୍‌ରୟଙ୍କ ଦ୍ୱାରା କ୍ଷମତାପ୍ରାପ୍ତ ଅନ୍ୟ କୌଣସି କର୍ତ୍ତୃପକ୍ଷ ଆପଣଙ୍କୁ ଯେଉଁ ପରାମର୍ଶ ଦେବେ ସେ ପରାମର୍ଶ ଅନୁସାରେ କାର୍ଯ୍ୟ କରିବାକୁ ବାଧ୍ୟହେବେ । ଏହି ସନନ୍ଦ ଅନୁସାରେ ପଲିଟିକାଲ୍ ଏଜେଣ୍ଟଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟକରିବା ଛଡା ରାଜାମାନଙ୍କର ଅନ୍ୟ ପନ୍ଥା ନଥିଲା । କିନ୍ତୁ ରାଜା କୌଣସି ଅତ୍ୟାଚାର କଲେ ତାହା ପଲିଟିକାଲ୍ ଏଜେଣ୍ଟଙ୍କୁ ଜଣାଇଲେ ମଧ୍ୟ ସେ ରାଜାମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁନଥିଲେ । ଫଳରେ ପ୍ରଜାଭାବି ଶାସନରେ ବନ୍ଧାହୋଇ ଲୋକେ ଚରମ ନିର୍ଯ୍ୟାତନାର ସମ୍ମୁଖୀନ ହେଲେ ।

୧୯୩୨ରେ ଅବଦୁଲ୍ ସତାର୍ ଖାଁ ଙ୍କ ମୃତ୍ୟୁପରେ ସଚ୍ଚିଦାନନ୍ଦ ପୂଜାରୀ ସୁପରିଟେଣ୍ଡେଣ୍ଟ୍ ହୋଇ ଆସିଲେ ଓ ୧୯୩୩ ମସିହାରେ କୃଷ୍ଣଚନ୍ଦ୍ରସିଂହ ରଜା ହେବାପରେ ପ୍ରଜାମାନଙ୍କର ଦୁଃଖ ଲାଘବ କରିବା ପରିବର୍ତ୍ତେ ନିଜ ସ୍ୱାର୍ଥକୁ ସାମନାରେ ରଖି ରାଜକାର୍ଯ୍ୟ ଚଳାଇବା ଫଳରେ ଲୋକେ ଚରମ ହତାଶର ସମ୍ମୁଖୀନ ହେଲେ । ବହୁଦିନ ଇଂରେଜୀ କର୍ମଚାରୀଙ୍କ ଦ୍ୱାରା ଅତ୍ୟାଚାରିତ ହୋଇ ଯେଉଁ ପ୍ରଜା କୁଳ ରଜାଙ୍କ ଉପରେ ଭରସା ରଖି ବଞ୍ଚି ରହିଥିଲେ ତାଙ୍କର ସେ ଆଶା ମରୁମରିଚିକାରେ ପରିଣତ ହେଲା । ପୂର୍ବର ଅତ୍ୟାଚାର ସହିତ ରଜା ନୂତନ କେତେକ ବ୍ୟବସ୍ଥା କରାଇଲେ । ବେଠିକର ନେଇ ଲୋକେ ନାମମାତ୍ର ପଇସାରେ ବେଠି କଲେ । ଜାତିଆଣ ବେହେରା ବିଶୋଇ ନିଯୁକ୍ତି କରି ଭେଟି ସଲାମୀ ଗ୍ରହଣ କଲେ । ଏହି ଟଙ୍କା ରଜାଙ୍କର ଘରେଇ କ୍ୟାସକୁ ଗଲା । ରଜା ଭୋଗ ବିଳାସରେ ନିଜକୁ ବୁଡାଇଦେଇ ଶାସନ କ୍ଷମତା ବିଦେଶୀ ଦେଓ୍ୱାନଙ୍କ ଉପରେ ଛାଡିଦେଇ ନିଜର ବ୍ୟସନ ପାଇଁ ବହୁଅର୍ଥ ରାଜ-କୋଷରୁ ଖର୍ଚ୍ଚ କଲେ । ଦେଓ୍ୱାନ୍ ଓ ରାଜକର୍ମଚାରୀମାନେ ରଜାଙ୍କୁ ପ୍ରଚୁର ଅର୍ଥ ଦେଇ ରାଜ୍ୟରେ ଯଥେଚ୍ଛାଚାର ଅତ୍ୟାଚାର ଚଳାଇଲେ । ସବୁବେଳେତ ସବୁକଥା ରହେନି । ୧୯୩୪ ଭାରତ ଶାସନ ଆଇନ ବଳରେ ଇଂରେଜ ଶାସିତ ଭାରତରେ ଲୋକ ପ୍ରତିନିଧି ମୂଳକ ଶାସନ ପ୍ରବର୍ତ୍ତିତ ହେବାରୁ ଗଡଜାତ ଲୋକଙ୍କ ଉପରେ ଏହାର ପ୍ରଭାବ ପଡିଲା । ୧୯୩୭ ମସିହା ହରିପୁର କଂଗ୍ରେସ ଅଧିବେଶନରେ ଭାରତୀୟ ଗଡଜାତମାନଙ୍କ ଶାସନ ବିଷୟରେ ଆଲୋଚନା କରାଯାଇଥିଲା ଏବଂ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ନେତୃତ୍ୱରେ ଗଡଜାତମାନଙ୍କରେ ଆନ୍ଦୋଳନ ଚଳାଇବାପାଇଁ ନିଖିଳ ଭାରତ ଗଡଜାତ ପ୍ରଜାସମ୍ମିଳନୀ ନାମରେ ଏକ ଅନୁଷ୍ଠାନ କଂଗ୍ରେସ ଆନୁକୂଲ୍ୟରେ ଗଠନ କରାଗଲା । ଶେଖ ମହମ୍ମଦ ଅବ୍ଦୁଲା, ଶ୍ରୀବଳବନ୍ତ ରାୟ ମେହେଟ୍ଟା, ସ୍ୱାମୀ ରମାନନ୍ଦତୀର୍ଥ, ଜୟନାରାୟଣ ବ୍ୟାସ ଓ ହୀରାଲାଲ୍ ଶାସ୍ତ୍ରୀ ପ୍ରମୁଖ ଏହି ସମ୍ମିଳନୀର ସଭ୍ୟ ଭାବରେ ମନୋନୀତ ହୋଇଥିଲେ । ଏହାପରେ ଭାରତର ବିଭିନ୍ନ ଅଞ୍ଚଳରେ ଆଞ୍ଚଳିକ କମିଟିମାନ ଗଠନ କରାଯାଇ ସର୍ବତ୍ର ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାପାଇଁ ସ୍ଥିର କରାଗଲା ।

ଓଡ଼ିଶା ଗଡ଼ଜାତମାନଙ୍କ ପାଇଁ ଗୋଟିଏ କମିଟି ଗଠନ କରିବା ଉଦ୍ଦେଶ୍ୟରେ ଢେଙ୍କାନାଳର ଶ୍ରୀ ସାରଙ୍ଗଧର ଦାସ କଟକରେ ଥିବା ସେତେବେଳର ଗଡ଼ଜାତମାନଙ୍କର କେତେକ ମୁଖ୍ୟ ବ୍ୟକ୍ତିମାନଙ୍କ ସହିତ କଥାବାର୍ତ୍ତା କରି ଏଥିପାଇଁ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ଶ୍ରୀ ରାଧାନାଥ-ରଥ, ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି ପ୍ରମୁଖଙ୍କୁ ନେଇ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ଗଠନ ଉଦ୍ଦେଶ୍ୟରେ ଏକ ଅଭ୍ୟର୍ଥନା କମିଟି ଗଠନ କରିଥିଲେ । ଉକ୍ତ ଅଭ୍ୟର୍ଥନା କମିଟିଙ୍କ ଆହ୍ୱାନକ୍ରମେ ଗଡ଼ଜାତମାନଙ୍କର ସ୍ୱାଧୀନତା-ପ୍ରେମୀ କର୍ମୀମାନଙ୍କର ଏକ ବୈଠକ ଭୁବନାନନ୍ଦ ଦାସଙ୍କ ବାସଭବନରେ ତା୨୪ । ୬ । ୩୭ ରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ନୟାଗଡ଼ର ଶ୍ରୀ ନାରାୟଣ ନନ୍ଦ ଉପସ୍ଥିତ ଥିଲେ । ସର୍ବସମ୍ମତିକ୍ରମେ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀ ଗଠନ କରାଗଲା ଏବଂ ଗଡ଼ଜାତ ମାନଙ୍କରେ ବିଧିବଦ୍ଧ ଆନ୍ଦୋଳନ ଚଳାଇବାର ସ୍ଥିର ହେଲା । ଅସ୍ଥାୟୀ-ଭାବେ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ସଭାପତି ଓ ସାରଙ୍ଗଧର ଦାସ ଏହି ସମ୍ମିଳନୀର ସେକ୍ରେଟେରୀ ଭାବେ ସର୍ବସମ୍ମତି କ୍ରମେ ମନୋନୀତ ହେଲେ । ଉପସ୍ଥିତ ଗଡ଼ଜାତର ପ୍ରତିନିଧିମାନଙ୍କ ମଧ୍ୟରୁ ପ୍ରତିରାଜ୍ୟରୁ ଜଣେ ଲେଖାଏଁ ପ୍ରତିନିଧି ପ୍ରୋକ୍ତ ଅନୁଷ୍ଠାନରେ ସଭ୍ୟ ଭାବରେ ମନୋନୀତ ହୋଇଥିଲେ । ତତ୍କାଳୀନ କଂଗ୍ରେସ ନେତା ହରେକୃଷ୍ଣ ମହତାବଙ୍କ ଉଦ୍ୟମ ଫଳରେ ଏହି ଅନୁଷ୍ଠାନ ଗଠିତ ହୋଇଥିଲା । ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାଶ ଓ କଂଗ୍ରେସ ନେତା ନବକୃଷ୍ଣ ଚୌଧୁରୀ ଓଡ଼ିଶା ପ୍ରଜାସମ୍ମିଳନୀ ଗଠନ ପାଇଁ ସକଳ ପ୍ରକାର ସହାଯ୍ୟ କରିଥିଲେ । ବହୁ ବିଚାର ଆଲୋଚନା ପରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀର ସ୍ଥାୟୀ ସମ୍ମିଳନୀ ଗଠନ କରିବା ପାଇଁ ତା ୨୦ । ୭ । ୩୭ ଦିନ କଟକ ଠାରେ ସମସ୍ତ ଗଡ଼ଜାତମାନଙ୍କର ବହୁପ୍ରତିନିଧି ଉପସ୍ଥିତ ହୋଇ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ପଟ୍ଟାଭି ସୀତାରାମୟାଙ୍କ ସଭାପତିତ୍ୱରେ ଓଡ଼ିଶା ଗଡ଼ଜାତର ନିର୍ଦ୍ଧାରିତ ପ୍ରଜାସମ୍ମିଳନୀ ଗଠିତ ହେଲା । ଶ୍ରୀ ସାରଙ୍ଗଧର ଦାସ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀର ସମ୍ପାଦକ ରୂପେ ନିର୍ବାଚିତ ହେଲେ । ଗଡ଼ଜାତମାନଙ୍କରେ ଆନ୍ଦୋଳନ କରିବା ସ୍ଥିର ହେବାରୁ ସେ ଅଞ୍ଚଳରେ ରାଜନୈତିକ ପରିସ୍ଥିତି ଓ ଅନ୍ୟାୟ ଅତ୍ୟାଚାର ସମ୍ପର୍କରେ ସମ୍ପୂର୍ଣ୍ଣ ରୂପେ ଅଭିହିତ ହେବାପାଇଁ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଶ୍ରୀ ଜଳବନ୍ତରାୟ ମେହେଟା ଓ ଶ୍ରୀ ଲାଲ୍‌ମୋହନ

ପଟ୍ଟନାୟକଙ୍କୁ ନେଇ ଏକ ତଦନ୍ତ କମିଟି ଗଠନ କରାଗଲା । ଶ୍ରୀ ସାରଙ୍ଗଧର ଦାସ ଉକ୍ତ କମିଟିର ସମ୍ପାଦକ ହେଲେ । ପ୍ରୋକ୍ତ କମିଟି ସମସ୍ତ କଥା ବିଚାର କରି ୧୫୦ଗୋଟି ପ୍ରଶ୍ନ ସମ୍ବଳିତ ଏକ ପ୍ରଶ୍ନାବଳୀ ତିଆରି କରି ଓଡ଼ିଶା ଗଡ଼ଜାତମାନଙ୍କର ଜଣାଶୁଣା ବ୍ୟକ୍ତିଙ୍କ ପାଖକୁ ମତାମତ ଜାଣିବା ପାଇଁ ପଠାଇଥିଲେ । ନୟାଗଡ଼ ରାଜ୍ୟର ନାରାୟଣ ନନ୍ଦ ଭରତ ନାୟକ ଲକ୍ଷ୍ମଣ ମହାରଣା, ଭୁବନେଶ୍ୱର ରାୟଗୁରୁ, ବାଞ୍ଛାନିଧି ସେନାପତି, ଜନାର୍ଦ୍ଦନ ସୁବୁଦ୍ଧି, ମହେଶ୍ୱର ଅତିବୁଦ୍ଧି, ଲକ୍ଷ୍ମଣ ସାହୁ, ସୁଦର୍ଶନ ପୃଷ୍ଟି ମଧୁସୂଦନ ମିଶ୍ର ଓ ଲିଙ୍ଗରାଜ ମିଶ୍ରଙ୍କ ଉକ୍ତ ପ୍ରଶ୍ନାବଳୀ ପଠାଯାଇଥିଲା । ଶ୍ରୀ ଲିଙ୍ଗରାଜ ମିଶ୍ରଙ୍କ ବ୍ୟତୀତ ଅନ୍ୟ ସମସ୍ତେ ପ୍ରଶ୍ନାବଳୀର ପ୍ରାୟ ଏକପ୍ରକାର ଉତ୍ତର ଦେଇଥିଲେ । କିନ୍ତୁ ଲିଙ୍ଗରାଜ ମିଶ୍ର କେତେକ ରାଜାଙ୍କୁ ସୁହାଇଲା ଭଳି ମନ୍ତବ୍ୟ ଦେଇଥିଲେ । ନୟାଗଡ଼ ରାଜାଙ୍କୁ ମଧ୍ୟ ଉକ୍ତ ପ୍ରଶ୍ନାବଳୀର ଉତ୍ତର ମଗାଯାଇଥିଲା । ମାତ୍ର ରାଜା କୌଣସି ଉତ୍ତର ଦେଇନଥିଲେ ।

ବେଠିକର ଉଠାଇ ନାମମାତ୍ର ପଇସାରେ ବାଧ୍ୟତାମୂଳକ ସଡ଼କ ବେଠି କରାଇବାରୁ ଓଡ଼ଗାଁ ଅଞ୍ଚଳର ଲକ୍ଷ୍ମଣ ମହାରଣା, ଭରତ ନାୟକ, ନାରାୟଣ ନନ୍ଦ ପ୍ରମୁଖ ପ୍ରତିବାଦ କରି ହଜାର ହଜାର ଲୋକଙ୍କ ସ୍ୱାକ୍ଷରରେ ୧୯୩୮ ମସିହା ପ୍ରାରମ୍ଭରେ ପଲିଟିକାଲ ଏଜେଣ୍ଟଙ୍କୁ ଏହାର ନିରାକରଣ ଆଶାରେ ଏକ ଆବେଦନପତ୍ର ଦେଇଥିଲେ । ୧୯୩୭ ମସିହା ସନନ୍ଦ ମୁତାବକ ପଲିଟିକାଲ ଏଜେଣ୍ଟ ଉକ୍ତ ଆବେଦନ ବିଚାର କରିବାର ପୂର୍ଣ୍ଣ କ୍ଷମତାପ୍ରାପ୍ତ ବ୍ୟକ୍ତି ହୋଇଥିଲେ ମଧ୍ୟ ଆବେଦନର ବିଚାରନକରି ଆବେଦନଟି ରାଜାଙ୍କ ପାଖକୁ ପଠାଇଦେଇ ଆବେଦନକାରୀଙ୍କୁ ଜଣାଇ-ଦେଲେ ଯେ ରାଜାଙ୍କର ଆଭ୍ୟନ୍ତରୀଣ ଶାସନ ଶୃଙ୍ଖଳାରେ ହସ୍ତକ୍ଷେପ କରିବାର ଅଧିକାର ତାଙ୍କର ନାହିଁ । ଏହା ପରେ ପରେ ଆସିଷ୍ଟାଣ୍ଟ ଦେଓ୍ୟାନ ଗାଁ ଗାଁ ବୁଲି ସଡ଼କ ବେଠି ବନ୍ଦକଲେ । ସେହିଦିନୁ ଆଉ ନାମମାତ୍ର ପଇସାରେ ବେଠି ହେଲନାହିଁ । ଏହା ଫଳରେ ରାଜ୍ୟରେ ଆନ୍ଦୋଳନ କରିବା ପାଇଁ ଲୋକଙ୍କ ମନରେ ଶକ୍ତିର ସଞ୍ଚାର ହୋଇଥିଲା । ନାରାୟଣ ନନ୍ଦ ପ୍ରମୁଖଙ୍କର ରାଜନୈତିକ କାର୍ଯ୍ୟକଳାପ ରାଜା ତଥା ପୋଲିସ୍‌ଙ୍କ ଆଖି ଏଡ଼ାଇ ପାରିଲାନାହିଁ । ଓଡ଼ଗାଁ ଥାନା ଇନ୍‌ଚାର୍ଜ୍ଜ ଅଫିସରଙ୍କର ବାରମ୍ବାର ତାଗିଦ୍ ସତ୍ତ୍ୱେ ଏମାନଙ୍କର ରାଜନୈତିକ କାର୍ଯ୍ୟକଳାପ

ଦିନୁଦିନ ବଢ଼ିବାରୁ ପୋଲିସ୍ ରଜାଙ୍କ ନିର୍ଦ୍ଦେଶକ୍ରମେ ସେମାନଙ୍କୁ ନାନା ପ୍ରକାର ହଇରଣ କରିବାରେ ଲାଗିଗଲେ । ସରକାରୀ ଓ ବେସରକାରୀ ଲୋକଙ୍କ ଉଦ୍ୟମରେ ଗଠିତ ଓଡ଼ଗାଁ କ୍ଲବରୁ ନାରାୟଣ ନନ୍ଦ, ଲକ୍ଷ୍ମଣ ମହାରଣ, ଭରତ ନାୟକ ପ୍ରଭୃତିଙ୍କୁ ପୋଲିସ୍‌ଙ୍କ ପରାମର୍ଶକ୍ରମେ ତଡ଼ିଦିଆଗଲା । ସେମାନଙ୍କର ଜମାଥିବା ଟଙ୍କା ପଇସା ମଧ୍ୟ ସେମାନଙ୍କୁ ଦିଆଗଲା ନାହିଁ । ତା ୬-୯-୩୮ ଦିନ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀର ସଂପାଦକ ଶ୍ରୀ ସାରଙ୍ଗଧର ଦାସ ଓଡ଼ଗାଁ ଆସି ନୟାଗଡ଼ ପ୍ରଜାମଣ୍ଡଳ ଗଠନ ସଂପର୍କରେ ଆଲୋଚନା କରିଥିଲେ । ଏହିପରିପ୍ରେକ୍ଷୀରେ ପ୍ରାଥମିକ ସ୍କୁଲ ଶିକ୍ଷକ ଶ୍ରୀ କୁବେର ସାହୁ ସଂପୃକ୍ତ ଥିବା ଜଣାପଡ଼ିବାରୁ ତାଙ୍କୁ ଚାକିରିରୁ ଅନ୍ତର କରିଦେବାରୁ ସେ ଆନ୍ଦୋଳନ ସହିତ ସଂପୃକ୍ତ ହୋଇଗଲେ । ଥୁଆବାରୀର କସ୍ତୁରୀ ପରିଡ଼ା ମଧ୍ୟ ଉକ୍ତ ଆନ୍ଦୋଳନ ସହିତ ସଂପୃକ୍ତ ହୋଇଗଲେ

୧୯୩୮ ମସିହା ମାର୍ଚ୍ଚ ମାସରେ ଗାନ୍ଧୀ ସେବାସଂଘର ସର୍ବ-ଭାରତୀୟ ବୈଠକ ଡେଲାଙ୍ଗ ଥାନାର ବେରବୋଇ ଗ୍ରାମରେ ଅନୁଷ୍ଠିତ ହେଲା । ନୟାଗଡ଼ର ଶତାଧିକ ବିପ୍ଳବୀ କର୍ମୀ ଉକ୍ତ ବୈଠକରେ ଯୋଗଦେବା ପାଇଁ ଯାଇଥିଲେ । ନୟାଗଡ଼ ରଜା ଜାଣିପାରି ସେମାନଙ୍କର ଗତିବିଧି ଲକ୍ଷ୍ୟ କରିବା ପାଇଁ ପୋଲିସ୍ ଅଫିସର ବୈଦ୍ୟନାଥ ମିଶ୍ରଙ୍କୁ ବେରବୋଇ ପଠାଇଲେ । ସମ୍ମିଳନୀ ସମାପ୍ତ ପରେ କର୍ମୀମାନେ ଗାଁକୁ ଫେରିଲେ । ରଜା ପ୍ରତିଶୋଧପରାୟଣ ହୋଇ ଉକ୍ତ ଦଳର ନେତା ନାରାୟଣ ନନ୍ଦ, ଭରତ ନାୟକ, କାଶୀନାଥ ସାହୁ, ରମକୃଷ୍ଣ ଅଧିକାରୀ ଓ ଲିଙ୍ଗରାଜ ସାହୁମାନଙ୍କ ନାମରେ ଓଡ଼ଗାଁ ପାନଠିକାଦାରଙ୍କ ଏଜେଣ୍ଟ ମାଧ୍ୟମରେ ସେମାନଙ୍କ ନାମରେ ଏକ ପାନଚୋରି କେଶ୍ କଲେ । [ଖଣ୍ଡିଏ ବାଡ଼ ଓ କେତେଗୋଟି ପାନଚୋରି କରିବା କଥା ଏତଲାରେ ଥିଲା] ପୋଲିସ୍ ଏତଲା ପାଇ ସଙ୍ଗେ ସଙ୍ଗେ ଉପରୋକ୍ତ ନେତାମାନଙ୍କୁ ଗିରଫ କରି ଜେଲ୍ ହାଜତକୁ ପଠାଇଦେଲେ । ଏତଦ୍ଦ୍ୱାରା ରଜାଙ୍କର ଆନ୍ଦୋଳନକୁ ଦବାଇଦେବାର ଯେଉଁ ଭାବନାଥିଲା ତାହା ତା'ର ବିପରୀତ ବାଟଧରିଲା । ଲୋକେ ନଜାଣିଥିବା ଅଜ୍ଞାତରେ ମଧ୍ୟ ବହୁ ସୁଯୋଗ ଆପେ ଆପେ ଆସିଯାଇଥାଏ । ସେହି ସୁଯୋଗ ବର୍ତ୍ତମାନ ମିଳିଗଲା । ଏହା ଆନ୍ଦୋଳନପାଇଁ ବାଟ ପରିଷ୍କାର କରିଦେଲା କହିଲେ ଅତ୍ୟୁକ୍ତି ହେବନାହିଁ ।

# ପାନ ବର୍ଜନ ଆନ୍ଦୋଳନ

ନୟାଗଡ଼ର ବହୁ ଗରିବ ପାନ ବ୍ୟବସାୟୀଙ୍କୁ ପାନ ବ୍ୟବସାୟରୁ ବଞ୍ଚିତ କରି ରଜା ଏକଛତିଆ ପାନ ବ୍ୟବସାୟ କରଇବା ହେତୁ ପାନ ଠିକାଦାର ମନଇଚ୍ଛା ପାନ ବିକ୍ରୀ କରୁଥିବାରୁ ଲୋକେ ଅଧିକ ଦାମ୍ ଦେଇ ପାନ କିଣୁଥିଲେ ଓ ବହୁ ଛୋଟ ଛୋଟ ପାନ ବ୍ୟବସାୟୀ ଜୀବିକା ହରାଇ ଦୟନୀୟ ଅବସ୍ଥାରେ କାଳାତିପାତ କରୁଥିଲେ । କର୍ମୀମାନଙ୍କ ନାମରେ ପାନ ଠିକାଦାର ଏକ ଅପମାନଜନକ ମିଥ୍ୟା ମୋକଦ୍ଦମାର ସୂତ୍ରଧର ହୋଇଥିବାରୁ ପ୍ରଥମେ ପାନ ଠିକାଦାରଙ୍କୁ ଉଚିତ ଶିକ୍ଷା ଦେବା-ପାଇଁ ପାନ ବର୍ଜନ ଆନ୍ଦୋଳନ ଆରମ୍ଭକଲେ । କର୍ମୀମାନେ ଗାଁ ଗାଁ ବୁଲି କେହି ପାନ ନ ଖାଇବା ପାଇଁ ଲୋକମାନଙ୍କୁ ପରାମର୍ଶ ଦେଲେ । ଚିର-ନିପୀଡ଼ିତ ଜନତା ସାହାସ ପାଇ ପାନ ବର୍ଜନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କଲେ । ଏତଦ୍ ଦ୍ୱାରା ନୟାଗଡ଼ରେ ପାନ ଖାଉଥିବା ଲୋକଙ୍କ ମଧ୍ୟରୁ ଶତକଡ଼ା ୯୯ ଭାଗ ଲୋକ ପାନ ଖାଇଲେ ନାହିଁ । ଫଳରେ ପାନ ଠିକାଦାରଙ୍କର ହଜାର ହଜାର ଟଙ୍କାର ପାନ ପଚିସଢ଼ି ନଷ୍ଟ ହୋଇଗଲା । ପାନ ଠିକା ନ ଉଠିବା ପର୍ଯ୍ୟନ୍ତ କେହି ପାନ ଖାଇବେ ନାହିଁ ବୋଲି ଶପଥ ନେଲେ । ଲୋକଙ୍କୁ ପାନ ଖୁଆଇବା ପାଇଁ ରଜାଙ୍କ ପକ୍ଷରୁ ଧମକଚମକ ଓ ନାନା ପ୍ରଲୋଭନ ଦେଖାଇଲେ ମଧ୍ୟ ଲୋକେ ତାହା ଶୁଣିଲେ ନାହିଁ । ନାରାୟଣ ନନ୍ଦ ପ୍ରମୁଖ ଜେଲ୍ କୁ ଯିବାପରେ ଶ୍ରୀ ସାରଙ୍ଗଧର ଦାସ ନୟାଗଡ଼ବାସୀଙ୍କ ପ୍ରୋତ୍ସାହିତ କରିବା ପାଇଁ ଗିରଫ ହୋଇଥିବା ବ୍ୟକ୍ତି-ମାନଙ୍କୁ ସାଧୁବାଦ ଦେବା ସଙ୍ଗେ ସଙ୍ଗେ ପ୍ରତିଜ୍ଞାରେ ଦୃଢ଼ ରହିବାକୁ ଉପଦେଶ ଦେଇଥିଲେ । ତାଙ୍କର ଉତ୍ସାହବାଣୀ କର୍ମୀମାନଙ୍କୁ ଦ୍ୱିଗୁଣ ଉତ୍ସାହିତ କରିଥିଲା । ନାରାୟଣ ନନ୍ଦ ପ୍ରମୁଖଙ୍କୁ ଜାମିନି ନ ମିଳିବାରୁ ରଜାଙ୍କର ଏଭଳି ସ୍ୱେଚ୍ଛାଚାର ମୂଳକ କାର୍ଯ୍ୟ ଲୋକଙ୍କ ମନରେ ଅଧିକ ଅସନ୍ତୋଷ ସୃଷ୍ଟି କଲା । ଅବସ୍ଥା ଲକ୍ଷ୍ୟକରି ରଜା ଶେଷରେ ବାଧ୍ୟହୋଇ ଗିରଫ ହୋଇଥିବା କର୍ମୀମାନଙ୍କୁ ଜାମିନ ଦେଲେ ।

ରାଜ୍ୟରେ ବିଭିନ୍ନ ଭାବରେ ଆନ୍ଦୋଳନ ଚଳାଇବା ପାଇଁ ନାରାୟଣ ନନ୍ଦଙ୍କ ଆହ୍ୱାନକ୍ରମେ ଗଞ୍ଜାମ ଜିଲ୍ଲାର ତାର୍କିବନ୍ଧ ଗ୍ରାମକୁ ନୟାଗଡ ରାଜ୍ୟର ବିପ୍ଳବୀ କର୍ମୀମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ବୈଠକ ଡକାଗଲା । ଉକ୍ତ ସଭାରେ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ଲକ୍ଷ୍ୟ ଏବଂ କାର୍ଯ୍ୟକ୍ରମ ବିଶଦ୍ ଭାବରେ ଆଲୋଚିତ ହୋଇ ସର୍ବସମ୍ମତିକ୍ରମେ ନୟାଗଡରେ ପ୍ରଜାମଣ୍ଡଳ ଗଠନ କରଯିବାର ସ୍ଥିର କରାଗଲା । ଗଞ୍ଜାମ ଜିଲ୍ଲାର କଂଗ୍ରେସ କର୍ମୀ ଶ୍ରୀ ସୂର୍ଯ୍ୟନାରାୟଣ ପଟ୍ଟନାୟକ ଏହି ସମ୍ମିଳନୀରେ ଅଧ୍ୟକ୍ଷତା କରିଥିଲେ ଏବଂ କର୍ମୀ ସମ୍ମିଳନୀ ପାଇଁ ସମସ୍ତ ସହାୟତା କରିଥିଲେ ।

ଶ୍ରୀ ହରେକୃଷ୍ଣ ମହତାବଙ୍କର ନେତୃତ୍ୱରେ ଗଠିତ ତଦନ୍ତ କମିଟି ନୟାଗଡ ରାଜ୍ୟରେ ହେଉଥିବା ଅତ୍ୟାଚାର ସମ୍ପର୍କରେ ଯେଉଁସବୁ ରିପୋର୍ଟ ପାଇଥିଲେ ସେ ସମ୍ପର୍କରେ ଆବଶ୍ୟକୀୟ ତଥ୍ୟ ପାଇବା ପାଇଁ ପ୍ରଶ୍ନାବଳୀର ଉତ୍ତର ଦେଇଥିବା ବ୍ୟକ୍ତିମାନଙ୍କୁ ବୋଲଗଡକୁ ଡକାଇଥିଲେ । ଏହି କମିଟି ତା ୨୯-୬ ୩୮ ମସିହା ଦିନ ବୋଲଗଡ ଆସି ସାକ୍ଷ୍ୟ ଗ୍ରହଣକଲେ ।



# ନୟାଗଡ଼ ପ୍ରଜାମଣ୍ଡଳ ଗଠନ

ଡାଙ୍ଗିବନ୍ଧ କର୍ମୀ ସମ୍ମିଳନୀ ପ୍ରସ୍ତାବମତେ ତା୨୮-୬-୩୮ ଦିନ ଓଡଗାଁ ରଘୁନାଥଜୀଙ୍କ ପୁଣ୍ୟ ପୀଠରେ ଶହଶହକର୍ମୀଙ୍କ ଉପସ୍ଥିତିରେ ଏକ ବୈଠକ ହୋଇ ଅସ୍ଥାୟୀ ଭାବେ ନୟାଗଡ ପ୍ରଜାମଣ୍ଡଳ ଗଠନ କରାଗଲା । ଶ୍ରୀ ନାରାୟଣ ନନ୍ଦ ପ୍ରଜାମଣ୍ଡଳର ଅସ୍ଥାୟୀ ସଭାପତି ନିର୍ବାଚିତ ହେଲେ ଓ ନିମ୍ନଲିଖିତ ବ୍ୟକ୍ତିମାନେ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ସଭ୍ୟ ନିର୍ବାଚିତ ହେଲେ । କୁବେର ସାହୁ ଉପସଭାପତି, ଭରତ ନାୟକ-ସଂପାଦକ ଏବଂ ଲକ୍ଷ୍ମଣ ମହାରଣା, ବାଞ୍ଛାନିଧି ସେନାପତି, ସୁଦର୍ଶନ ପୃଷ୍ଟି, ଜନାର୍ଦ୍ଦନ ସୁବୁଦ୍ଧି, ହରିବନ୍ଧୁ ଆଚାର୍ଯ୍ୟ, ଈଶ୍ୱର ପାଟଶାଣୀ ଓ ଲକ୍ଷ୍ମଣ ସାହୁ ପ୍ରମୁଖ ସଭ୍ୟଭାବେ ନିର୍ବାଚିତ ହେଲେ । ପ୍ରଜାମଣ୍ଡଳ ଗଠନ ପରେ ପରେ ଗଡଜାତ ତଦନ୍ତ କମିଟି ଆଗରେ ସାକ୍ଷ୍ୟ ଦେବାପାଇଁ ସେହିଦିନ ଅଧିକାଂଶ ସଭ୍ୟ ବୋଲଗଡ ଯାଇଥିଲେ । ନୟାଗଡରେ ହେଉଥିବା ବେଠି, ଭେଟି, ମାଗଣ ରସଦ ପ୍ରଭୃତି ବେଆଇନ ଓ ଅତ୍ୟାଚାର ମୂଳକ କାର୍ଯ୍ୟର କରୁଣ କାହାଣୀ ବର୍ଣ୍ଣନା କରିବା ସହିତ ପ୍ରତ୍ୟକ୍ଷ ତଥ୍ୟ ପ୍ରଜାମଣ୍ଡଳର ସଭାପତି ତଥା କାର୍ଯ୍ୟ-କାରୀ କମିଟିର ସଭ୍ୟମାନେ ତଦନ୍ତ କମିଟି ଆଗରେ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ ବହୁ ପ୍ରମାଣ ସମ୍ବଳିତ ଦଲିଲ କମିଟିକୁ ଦେଇଥିଲେ । ଏହି ତଦନ୍ତ ବେଳେ ନୟାଗଡ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ସଭ୍ୟମାନଙ୍କ ବ୍ୟତୀତ ବହୁ କର୍ମୀ ଓ ସାଧାରଣ ଲୋକ ବ୍ୟକ୍ତିଗତ ଭାବେ କମିଟି ଆଗରେ ସାକ୍ଷ୍ୟ ପ୍ରମାଣ ଦେଇଥିଲେ ।

ତଦନ୍ତ କମିଟିରୁ ଫେରିବା ପରେ ଅସ୍ଥାୟୀ ପ୍ରଜାମଣ୍ଡଳର କାର୍ଯ୍ୟକାରୀ କମିଟିର ବୈଠକ ବସି ରାଜ୍ୟର ରାଜନୈତିକ ପରିସ୍ଥିତି ଆଲୋଚନା କଲେ ଏବଂ ପାନ ଠିକା ଉଠିବା ପର୍ଯ୍ୟନ୍ତ ପାନ ବର୍ଜନ ଆନ୍ଦୋଳନ ଚଳୁରହିବା ପାଇଁ ସ୍ଥିରକଲେ । ଲୋକେତ ମନକୁମନ ପାନ ବର୍ଜନ କରିଥିଲେ ମାତ୍ର କେତେକ କ୍ଷେତ୍ରରେ ସରକାରୀ କର୍ମଚାରୀଙ୍କ

ହସ୍ତକ୍ଷେପକୁ ରୋକିବା ପାଇଁ କର୍ମୀମାନେ ଗାଁ ଗଣ୍ଡା ବୁଲି ଲୋକମାନଙ୍କୁ ସାହସ ଦେଉଥିଲେ । ସ୍ଥାନେ ସ୍ଥାନେ ରାଜକର୍ମଚାରୀମାନେ ପାନ କିଣିବା ପାଇଁ ଲୋକଙ୍କୁ ବାଧ୍ୟ କରୁଥିଲେ । ସ୍ଥଳବିଶେଷରେ ଅତ୍ୟାଚାର ମଧ୍ୟ କରୁଥିଲେ । ପ୍ରଜାମଣ୍ଡଳ କର୍ମୀମାନଙ୍କର କାର୍ଯ୍ୟ ଫଳରେ ଏହା ବହୁପରିମାଣରେ କମିଗଲା । ପାନ କିଣିବା ନ କିଣିବା ଲୋକଙ୍କର ନ୍ୟାୟସଂଗତ ଅଧିକାର ହେଲେ ମଧ୍ୟ ଜାଣିଶୁଣି ରାଜକର୍ମଚାରୀମାନେ ଲୋକଙ୍କ ଉପରେ ଅଯଥା ଅତ୍ୟାଚାର କରୁଥିଲେ ।

ନାରାୟଣ ନନ୍ଦ ପ୍ରମୁଖଙ୍କ ନାମରେ ହୋଇଥିବା ମିଥ୍ୟା ମୋକଦ୍ଦମାର ବିଚାର ଆସିଷ୍ଟାଣ୍ଟ ଦେଓ୍ୱାନିଙ୍କ ଅଦାଲତରେ ହେଲା । ଆସାମୀମାନେ ଓକିଲ ଦେବାପାଇଁ ଆବେଦନ କରିବାରୁ ବିଚାରପତି ଆବେଦନ ନାମଞ୍ଜୁର କଲେ । ସୁବିଚାର ଆଶାରେ ଏ ସମ୍ପର୍କରେ ଆବଶ୍ୟକୀୟ ସହାୟତା କରିବା ପାଇଁ ରାଜା ଏବଂ ପଲିଟିକାଲ୍ ଏଜେଣ୍ଟ ତଥା ରେସିଡେଣ୍ଟଙ୍କୁ ଆବେଦନ ଜଣାଇଲେ ମଧ୍ୟ କୌଣସି ସୁଫଳ ମିଳିଲା ନାହିଁ । ସମସ୍ତ ପ୍ରକାର ଆଇନଗତ ସୁବିଧାରୁ ବିଚାରପତି କର୍ମୀମାନଙ୍କୁ ବଞ୍ଚିତ କରି ମେରିଗସ୍ନ ନୀତିରେ ସମସ୍ତଙ୍କୁ ୧ମାସ ଲେଖାଏଁ କାରାଦଣ୍ଡରେ ଦଣ୍ଡିତ କରି ଜେଲ୍‌କୁ ପଠାଇଦେଲେ । ପ୍ରଜାମଣ୍ଡଳ ଏହି ମୋକଦ୍ଦମା ରାୟ ବିରୁଦ୍ଧରେ ରାଜାଙ୍କ କୋର୍ଟରେ ଅପିଲ କରିବା ପାଇଁ ସ୍ଥିରକରି କର୍ମୀମାନଙ୍କୁ ଜାମିନିରେ ଆଣିଲେ । ପ୍ରଜାମଣ୍ଡଳ ପ୍ରସ୍ତାବକ୍ରମେ ରାଜାଙ୍କ ଇଜଲାସରେ ବିଚାର ପାଇଁ ଅପିଲ ହେଲା । ତା ୩-୯-୩୮ ମସିହା ଦିନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ଏକ ବୈଠକରେ ସ୍ଥିର ହେଲାଯେ ତା ୯-୯-୩୮ ଭଦ୍ରବ ପୂର୍ଣ୍ଣମୀ ଭଗବତ ଜନ୍ମଦିନ ନୟାଗଡ଼ ଜନସାଧାରଣଙ୍କର ସମ୍ମତି ଓ ସମର୍ଥନକ୍ରମେ ବିଧିବଦ୍ଧ ଭାବେ ପ୍ରଜାମଣ୍ଡଳ ଗଠନ କରାଯିବ । ତଦନୁସାରେ ନୟାଗଡ଼ର ସମସ୍ତ ପ୍ରଜା ଭଗବତ ଜନ୍ମଦିନ ଓଡ଼ଗାଁ ସଭରେ ଯୋଗଦେବା ପାଇଁ ପ୍ରତ୍ୟେକ ଗ୍ରାମବାସୀଙ୍କୁ ନିମନ୍ତ୍ରଣ ପଠାଗଲା । ରାଜା ଏହା ଜାଣିପାରି ତା ୯-୯-୩୮ ଦିନକୁ ପାନ ମୋକଦ୍ଦମାର ଅପିଲ ଶୁଣିବା ପାଇଁ ଆବେଦନକାରୀମାନଙ୍କୁ ସମନ କଲେ । ଓକିଲ ଦେବାପାଇଁ ଆବେଦନ ହେବାରୁ ରାଜା ତାହା ନାମଞ୍ଜୁର କଲେ । କର୍ମୀମାନଙ୍କର କୌଣସି କଥାକୁ ଭ୍ରୂକ୍ଷେପ ନକରି ରାଜା ନିମ୍ନ କୋର୍ଟରାୟକୁ କାୟମ ରଖିବା ସଙ୍ଗେ ସଙ୍ଗେ ନାରାୟଣ ନନ୍ଦଙ୍କୁ ଅଧିକ ଟ ୩୦.୦୦ ଜୋରିମନା କରି ସମସ୍ତଙ୍କୁ ଜେଲ୍‌କୁ ପଠାଇଦେଲେ ।

●

# ନୟାଗଡ ପ୍ରଜାମଣ୍ଡଳର ପ୍ରଥମ ଅଧିବେଶନ ଓ ବିଧିବଦ୍ଧଭାବେ ପ୍ରଜାମଣ୍ଡଳ ଗଠନ

ପ୍ରଜାମଣ୍ଡଳ ସଭାପତି ଓ ସମ୍ପାଦକ ପ୍ରଭୃତିଙ୍କୁ ଜେଲ୍‌ରେ ରଖି ଲୋକଙ୍କୁ ଭୀତତ୍ରସ୍ତ କରାଇ ପ୍ରଜାମଣ୍ଡଳ ପ୍ରଥମ ଅଧିବେଶନକୁ ମୂଳରୁ ଭଣ୍ଡୁର କରିଦେବା ପାଇଁ ରଜା ଯେଉଁ କଳ୍ପନା କରିଥିଲେ ତାହା ଲୋକଙ୍କ ମନରେ ଭୀତି ସଞ୍ଚାର ନକରି ବରଂ ଅଧିକ ଉନ୍ମାଦନା ସୃଷ୍ଟି କଲା । ପୂର୍ବନିର୍ଦ୍ଧାରିତମତେ ତା ୯-୯-୩୮ ମସିହା ଭାଗବତ ପୂର୍ଣ୍ଣିମାଦିନ ଓଡଗାଁଠାରେ ପ୍ରଜାମଣ୍ଡଳ ପ୍ରଥମ ଅଧିବେଶନ ବିଧିବଦ୍ଧ ଭାବେ ଅନୁଷ୍ଠିତ ହେଲା । ସମଗ୍ର ରାଜ୍ୟର ହଜାର ହଜାର ଲୋକ ନାନା ପ୍ରକାର ବାଜାବଜାଇ ଶୋଭାଯାତ୍ରାରେ ଆସି ପ୍ରଜାମଣ୍ଡଳ ଅଧିବେଶନରେ ଯୋଗଦେଲେ । ବାଟରେ ରାଜକର୍ମଚାରୀ ଓ ପୋଲିସ୍‌ମାନେ ଲୋକଙ୍କୁ ଧମକଚମକ ଦେଖାଇ ଏପରିକି ମାଡଦେଇ ଅଧିବେଶନକୁ ନ ଯିବାପାଇଁ ଯେତେ ଅଟକାଇଲେ ମଧ୍ୟ ଲୋକେ ସେମାନଙ୍କ ଧମକଚମକକୁ ନଡରି ଅଧିବେଶନରେ ଯୋଗଦେଲେ । ନରସିଂହ ନନ୍ଦ ଓ ଲକ୍ଷ୍ମଣ ମହାରଣାଙ୍କ ନେତୃତ୍ୱରେ ଏକ ବିରାଟ ଶୋଭାଯାତ୍ରା ଓଡଗାଁ ପରିକ୍ରମା କରି ସନ୍ଧ୍ୟା ୭ଘଣ୍ଟା ସମୟରେ ଅଧିବେଶନ ମଣ୍ଡପରେ ଯୋଗଦେଲେ । ୧୦ସହସ୍ରାଧିକ ଲୋକଙ୍କ ଉପସ୍ଥିତିରେ ଶ୍ରୀ ବାଞ୍ଛାନିଧି ସେନାପତି ପ୍ରଜାମଣ୍ଡଳର ସଭାପତି ଭାବରେ ସର୍ବସମ୍ମତିକ୍ରମେ ନିର୍ବାଚିତ ହୋଇ ଅଧିବେଶନରେ ସଭାପତିତ୍ୱ କରିଥିଲେ । ଶ୍ରୀ ନରସିଂହ ନନ୍ଦ ପ୍ରସ୍ତାବ କଲେଯେ ନୟାଗଡର ଦରବାର ଦ୍ୱାରା ହେଉଥିବା ଅତ୍ୟାଚାର ମୂଳକ ଶାସନ ଓ ନାଗରିକ ସ୍ୱାଧୀନତା ହାସଲ କରିବା ପାଇଁ ନୟାଗଡର "ନୟାଗଡ ପ୍ରଜାମଣ୍ଡଳ" ନାମରେ ଏକ ରାଜନୀତିକ ଦଳ ଗଠନ କରାଯାଉ । ଶ୍ରୀ କୁବେର ସାହୁ ଏ ପ୍ରସ୍ତାବଟିକୁ ସମର୍ଥନକଲା ପରେ ଏହା ସର୍ବସମ୍ମତି-

କ୍ରମେ ଗ୍ରହଣ କରାଗଲା । ୨ୟ ପ୍ରସ୍ତାବ ଆଗତ କରି ଶ୍ରୀ କୁବେର ସାହୁ ପ୍ରଜାମଣ୍ଡଳ ନିମ୍ନତମ ଦାବିପତ୍ର ଉପସ୍ଥାପିତ କରିଥିଲେ । ଶ୍ରୀ ସୁଦର୍ଶନ ପୃଷ୍ଟିଙ୍କ ସମର୍ଥନ ପରେ ଏହା ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

## ନୟାଗଡ଼ ପ୍ରଜାମଣ୍ଡଳର ନ୍ୟୁନତମ ଦାବୀ

୧- **ନାଗରିକ ସ୍ୱାଧୀନତା** – [କ] ସବୁପ୍ରକାର ସଭସମିତି କରିବା ଓ ମେମ୍ବର ନିଯୁକ୍ତି କରିବାର ଅଧିକାର ଦିଆଯିବା ଓ ସାମାଜିକ ଚେତେର ବିଶୋଇ ନିଯୁକ୍ତିର ଯେଉଁ କଟକଣା ଅଛିତାକୁ ଉଠାଇଦେବା । [ଖ] ଯେ କୌଣସି ଖବର କାଗଜ ପଢ଼ିବା ଓ ପ୍ରଚାର କରିବାର ଅଧିକାର ଦିଆଯିବା ।

୨- **ବେଠି** – ବିନା ପଇସାରେ ବା ନାମମାତ୍ର ପଇସାରେ କାହାରିକୁ କୌଣସି କାର୍ଯ୍ୟ କରିବାକୁ ବାଧ୍ୟ ନ କରିବା । [ଖ] ବେଠି କର ଓ ପଥ କର ଉଠାଇଦେବା ।

୩- **ମାଗଣ**—ରଜାଙ୍କ ବିଭା, ବ୍ରତ ବା ଶୁଦ୍ଧି କାର୍ଯ୍ୟରେ ନିଆଯାଉଥିବା ସମସ୍ତ ପ୍ରକାର ମାଗଣ ପ୍ରଥା ବନ୍ଦକରିବା ।

୪- **ପ୍ରଜାସ୍ୱତ୍ୱ ଆଇନ** – (କ) ପ୍ରଜମାନଙ୍କ ଜମି ଉପରେ ନ୍ୟାୟ ସଂଗତ ଅଧିକାର ରଖାଯିବା । [ଖ] ଅଜୟବାବୁଙ୍କ ସେଟଲମେଣ୍ଟରେ ଯେପରି ଖଜଣା ଜିଲ୍ଲାଓ୍ୱାରିଥିଲା ସେହିପରି ରଖାଯିବ । (ଗ) ଦତ୍ତପୁତ୍ର ଫିସ୍ ପୂର୍ବପରି ୧ଟଙ୍କା ରଖାଯିବା ଏବଂ ପୋଷ୍ୟପୁତ୍ର କରିବାରେ ବର୍ତ୍ତମାନ ଯେଉଁ ନିୟମ ଅଛି ତାହା ଉଠାଇଦେଇ ସାଧାରଣ ଦରଖାସ୍ତରେ ମଞ୍ଜୁର କରାଇବା । (ଘ) ଜମି ହସ୍ତାନ୍ତର ଫିସ୍ ଉଠାଇଦେବା । [ଙ] ଉତ୍ତରାଧିକାରୀମାନଙ୍କ ଠାରୁ ଯେଉଁ ଦାଖଲ-ଖାରଜ ଫିସ୍ ନିଆଯାଉଛି ତାହା ଉଠାଇଦେବା (ଚ) ଖଜଣା ଅସୁଲ ଓ ମହାଜନ ଦେଣା ଅସୁଲ ସକାଶେ ମୋଗଲବନ୍ଦୀରେ ଯେପରି ଆଇନ ଅଛି ସେହିପରି କରାଯିବା । (ଛ) ରକ୍ଷୋପକରଣ ଓ କଂସାବାସନ କ୍ରୋକ ବନ୍ଦ ରଖାଯିବା । (ଜ) ପଳାତକ ଓ ଭଗ୍ନାବସ୍ଥାରେ ପଡ଼ିଥିବା ମୌଜାମାନଙ୍କର ପୁନରୁଦ୍ଧାର କରାଯିବା ।

(ଙ) ଆବାଦ ହେଉନଥିବା ଅର୍ଥାତ ବାଲିଚର, ଜଙ୍ଗଲଦ୍ୱାରା ଓ ନାଳଦ୍ୱାର ନଷ୍ଟ ହୋଇଯାଇଥିବା ଜମିର ଖଜଣା ଆବାଦ ଯୋଗ୍ୟ ହେବା ପର୍ଯ୍ୟନ୍ତ ବନ୍ଦରଖିବା ।

୫- **ଜଙ୍ଗଲ ଆଇନ** —. (କ) ଗୃହୋପକରଣ ଓ ଗୃହୋପକରଣ, ଜାଳେଣୀ କାଠ, ବାଉଁଶ ଓ ଲଇ ଇତ୍ୟାଦି ବିନା ମାହାସୁଲରେ ପାଇପାରିବା ଓ ସବୁହଦ କଟକଣା ଉଠାଇଦେବା । [ଖ] ଚର କର ଉଠାଇଦେବା । (ଗ) ବନ୍ୟଜନ୍ତୁମାନଙ୍କ ଉପଦ୍ରବରୁ ଫସଲ ନଷ୍ଟ ହୋଇଯାଉଥିବାରୁ ବିନା ଫିସ୍‌ରେ ଜନ୍ତୁ ମାରିବା । ଘ] କବୁଲିୟତ ଜାଗାରେ ଥିବା ଗଛମାନ ବିନା ଫିସ୍‌ରେ କାଟି କାଠ ବ୍ୟବସାୟ କରିପାରିବା ଓ ବିକ୍ରୀ କରିବାପାଇଁ ଅଧିକାର ଦିଆଯିବା ।

୬- **ରପ୍ତାନି ଆମଦାନୀ କଟକଣା**—କୃଷିଜାତ ଦ୍ରବ୍ୟ ଦେଶ ବିଦେଶକୁ ନେଇ ଇଚ୍ଛାମତେ ବିକ୍ରୀ କରିପାରିବା

୭- **ଏକଚାଟିଆ ବେପାର** – କ) ପାନ, ତୋଳ, କୁସୁମ, କରଞ୍ଜ ପ୍ରଭୃତିର ଲାଇସେନ୍‌ସ ଉଠାଇ ଦିଆଯିବା । ଖ] ଅଙ୍ଗୁଳିକର ଉଠାଇ ଦିଆଯିବା ।

୮- **ନିଶା**—ମଦ, ଅଫିମ ଓ ଗୁଲି ପ୍ରଭୃତି ନିଶାଦ୍ରବ୍ୟ ଖାଁ ସାହେବ ଅମଳରେ ଯେଉଁଳି କଟକଣା ହେଉଥିଲା ସେହିଭଳି କଟକଣା କରାଯିବା ।

୯- କ] ଯେଉଁମାନଙ୍କର ଖାଲି ଘରଡିହ ଖଣ୍ଡିଏ ଅଛି ସେମାନଙ୍କୁ ସକଳ ପ୍ରକାର କର ଛାଡ ଦିଆଯିବା । ଖ) ଯେଉଁ ଗରିବ ଲୋକମାନେ ଜାଳେଣି କାଠ ବିକ୍ରୀକରି ପେଟ ପୋଷନ୍ତି ସେମାନଙ୍କ ଠାରୁ କୌଣସି ପ୍ରକାର ଫିସ୍ ନ ନେବା । ଗ] ହାଡି, ପାଣ ଓ ଡମମାନେ ବାଉଁଶ ଆଣି ଟୋକେଇ ଇତ୍ୟାଦି ବିକ୍ରୀ କରିବାରେ ଯେଉଁ ଫିସ୍ ଧାର୍ଯ୍ୟ କରାଯାଇଛି ତାହା ଛାଡ ଦିଆଯିବା ।

୧୦- **କର୍ମଚାରୀମାନଙ୍କ ଉପରେ କଟକଣା**—ଯେଉଁ କର୍ମଚାରୀମାନେ ବେଆଇନ ଭାବେ ପ୍ରଜାମାନଙ୍କ ଠାରୁ ପଇସାପତ୍ର ନେଉଛନ୍ତି ସେମାନଙ୍କୁ ଜବତ କରାଯିବା ।

୧୧- ବୃତ୍ତିକର ଉଠାଇ ଦିଆଯିବା

୧୨- ଜାହ୍ନୁକା ଓ ଶୁଳିଆ ନଦୀରେ କୂଳଘାଇ କରିବାର ବନ୍ଦୋବସ୍ତ କରିବା

୧୩- ଦେଓ୍ୱାନୀ ଓ ଫୌଜଦାରୀ ମୋକଦ୍ଦମା ପ୍ରଭୃତିରେ ରଘୁନାଥ ସିଂହ ମାନଧାତାଙ୍କ ସମୟରେ ଯେପରି ଫିସ୍ ନିଆଯାଉଥିଲା ସେପରି ରଖାଯିବା ।

୧୪- ଷ୍ଟେଟ୍‌ର ସମସ୍ତ ନିୟମ ଓଡ଼ିଆରେ ଛପାଇ ସର୍ବସାଧାରଣ ଜାଣିବାର ସୁବିଧା କରିବା

୧୫- ପୂର୍ବପରି ପ୍ରତି ପ୍ରଗଣାରେ ଧାନ ଅମାର ରଖାଯିବା ।

୧୬- ନିରଶ୍ରୟ ଜମିର ଫସଲ ଅମଦାନୀ ସୁବିଧା ନିମିତ୍ତ ଜଳ ଯୋଗାଇ-ଦେବାର ସୁବିଧାଦେବା ।

୧୭- **ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା**—ନାଗରିକ ସ୍ୱାଧୀନତା ରକ୍ଷା କରିବା ସଙ୍ଗେ ସଙ୍ଗେ ଆଇନ ଅନୁସାରେ ଶାସନ ଚଳାଇବା ଦୃଷ୍ଟିରୁ ଲୋକ ପ୍ରତିନିଧିମାନଙ୍କ ଦ୍ୱାରା ଚାଳିତ ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ଏକାନ୍ତ ଆବଶ୍ୟକ ଅର୍ଥାତ୍ ଭିନ୍ନ ଭିନ୍ନ ଅଞ୍ଚଳର ଲୋକେ ଭୋଟଦ୍ୱାରା ପ୍ରତିନିଧି ବାଛି ଯେଉଁ ଲୋକପ୍ରତିନିଧି ସଭା କରିବେ, ସେହି ସଭା ନୂଆ ଲୋକ ହିତକର ଆଇନ୍ ଗଢ଼ିବେ । ରାଜ୍ୟର ଆୟବ୍ୟୟ ବୁଝିବେ ଏବଂ ରାଜାଙ୍କ ଅଧୀନରେ ସମସ୍ତ ଶାସନ ଚଳାଇବେ । ରାଜା ଓ ପ୍ରଜା ଉଭୟଙ୍କର ହିତ ନିମିତ୍ତ ଏହି ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ଶୀଘ୍ର ପ୍ରଚଳିତ ହେବା ଆମର ଶେଷ ଓ ସର୍ବୋଚ୍ଚ ଦାବି ।

ଅନ୍ୟ ଏକ ପ୍ରସ୍ତାବ ଆଗତକରି ଶ୍ରୀ ଲକ୍ଷ୍ମଣମହାରଣା କହିଲେ ଯେ, ରାଜ୍ୟରେ ଯେଉଁ ପାନ ବର୍ଜନ ଆନ୍ଦୋଳନ ଚାଲିଛି ପାନ ଠିକା ନଉଠାଇବା ପର୍ଯ୍ୟନ୍ତ ତାହା ସେହିଭଳି ରଖାଯିବ । ଏହି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

ପ୍ରଜାମଣ୍ଡଳ କର୍ମୀମାନଙ୍କୁ ମିଥ୍ୟା ମୋକଦ୍ଦମାରେ ଅଭିଯୁକ୍ତ କରି ଏବଂ ସେମାନଙ୍କୁ ଆଇନଗତ ସୁବିଧାଦେଇ ନୟାଗଡ଼ ରାଜା ବେଆଇନ ଭାବେ ଜେଲ୍‌ଦଣ୍ଡ ଦେଇଥିବାରୁ ରାଜାଙ୍କର ଏଭଳି ବେଆଇନ କାର୍ଯ୍ୟର ନିନ୍ଦାକରି ସଭାପତିଙ୍କ ପକ୍ଷରୁ ଗୋଟିଏ ପ୍ରସ୍ତାବ ଆଗତ ହୋଇଥିଲା ଓ ଏଥିପ୍ରତି ସର୍ବସମ୍ମତି ପ୍ରକାଶ ପାଇଥିଲା । ତତ୍‌ପରେ ସଭାପତି ତାଙ୍କ କାର୍ଯ୍ୟକାରୀ କମିଟି ସଭ୍ୟମାନଙ୍କ ନାମ ଘୋଷଣା କରି ମଞ୍ଜୁର କରାଇଥିଲେ । ଏହି କମିଟିର ସଭାପତି ବାଞ୍ଛାନିଧି ସେନାପତି ଉପସଭାପତି କୁବେର ସାହୁ ସମ୍ପାଦକ, ଭରତ ନାୟକ ସହ ସମ୍ପାଦକ, ନରସିଂହ ନନ୍ଦ

ସଭ୍ୟ ଲକ୍ଷ୍ମଣ ମହାରଣା, ନାରାୟଣ ଦାଶ, କାଶୀନାଥ ପଣ୍ଡା, ରାମକୃଷ୍ଣ ଅଧିକାରୀ, ଜନାର୍ଦ୍ଦନ ତ୍ରିପାଠି, ସୁଦର୍ଶନ ମିଶ୍ର, ହରିବନ୍ଧୁ ଆଚାର୍ଯ୍ୟ, ଈଶ୍ୱର ପାଟଶାଣୀ, ଲକ୍ଷ୍ମଣ ସାହୁ, ଗୋପୀନାଥ ମିଶ୍ର, ଶ୍ରୀଧର ଦାଶ ପ୍ରମୁଖ ରହିଲେ ।

ପ୍ରଜାମଣ୍ଡଳ ଅଧିବେଶନରେ ଗୃହୀତ ପ୍ରସ୍ତାବଗୁଡ଼ିକର ବିଧିବଦ୍ଧ ବିଚାର କରି ଲୋକଙ୍କୁ ସୁଯୋଗ ଦେବାପାଇଁ ପ୍ରଜାମଣ୍ଡଳ ସଭାପତି ରାଜାଙ୍କ ଦରବାରକୁ ପଠାଇଦେଲେ । ରାଜା ପ୍ରଜାମଣ୍ଡଳରେ ଦାବିପତ୍ର ଓ ଅନ୍ୟାନ୍ୟ ପ୍ରସ୍ତାବଗୁଡ଼ିକ ପାଇବାପରେ କୌଣସି ଭଲମନ୍ଦ ପ୍ରତି ଦୃଷ୍ଟି ନଦେଇ ପ୍ରଜାମଣ୍ଡଳର କର୍ମୀମାନଙ୍କ ଉପରେ ପ୍ରବଳ ଭାବେ ଦମନ ଆରମ୍ଭ କରି-ଦେଲେ । ପୋଲିସ୍‌ମାନଙ୍କ ସହିତ ଜଙ୍ଗଲ ବିଭାଗୀୟ କର୍ମଚାରୀ, ଗ୍ରାମ୍ୟ ଚୌକିଦାର, ସରକାର କେତେକ ପ୍ରାଥମିକ ସ୍କୁଲ ଶିକ୍ଷକ ମିଶି ପ୍ରଜାମଣ୍ଡଳ କର୍ମୀମାନଙ୍କୁ ଯିଏ ଯେଉଁଠି ଦେଖିଲେ ସେମାନଙ୍କୁ ଗୁଣ୍ଡା ଲଗାଇ ନିସ୍ତୁକମାଡ ଚଳାଇଲେ । ପ୍ରଜାମଣ୍ଡଳର ସାଧାରଣ ସଭମାନଙ୍କରେ ଉପସ୍ଥିତ ହୋଇ ସଭ କରାଇ ଦେଲେନାହିଁ । ଯେଉଁ ଲୋକ କର୍ମୀମାନଙ୍କୁ ରହିବାକୁ ଓ ଖାଇବାକୁ ଜାଗା ଦେଲେ ସେମାନେ ମଧ୍ୟ ଅତ୍ୟା-ଚାରିତ ହେଲେ । ରାଜସରକାରର ଅତ୍ୟାଚାର ଦିନକୁଦିନ ଅଧିକରୁ ଅଧିକ ହେବାରୁ ରାଜା ଶାସନ ବିରୁଦ୍ଧରେ ସର୍ବସାଧାରଣ ଜନ ଅସନ୍ତୋଷ ପ୍ରକଟିତ ହେଲା । ଏହାର ପ୍ରତିବାଦରେ ତା ୧୦-୯-୩୮ ଦିନ ବାହୁଡାଝୋଲାରେ ଓ ତା ୧୩-୯-୩୮ ଦିନ ଗୋଡପଡାଠାରେ ବିରାଟ ଜନସଭାରେ ରାଜାଙ୍କର ଏଭଳି ଅତ୍ୟାଚାରର ଦୃଢ଼ ନିନ୍ଦା କରଯାଇ ପ୍ରଜାମଣ୍ଡଳ କାର୍ଯ୍ୟକ୍ରମକୁ ଦୃଢ଼ ସମର୍ଥନ ଜ୍ଞାପନ କରଗଲା ।

ପ୍ରଜାମଣ୍ଡଳର କର୍ମୀମାନେ ଗାଁ ଗାଁ ବୁଲି ବିପ୍ଳବର ବାର୍ତ୍ତା ପ୍ରଚାର କରିବା କାର୍ଯ୍ୟ ସଙ୍ଗେ ସଙ୍ଗେ ରାଜାଙ୍କ କାର୍ଯ୍ୟର ଅସାରତା ଲୋକଙ୍କୁ ବୁଝାଇବାରେ ଲୋକେ ରାଜାଙ୍କ ଏତାଦୃଶ କାର୍ଯ୍ୟପ୍ରତି ସର୍ବତ୍ର ବିକ୍ଷୋଭ ଜଣାଇଲେ ଏବଂ ପାନବର୍ଜନ ଆନ୍ଦୋଳନକୁ କୃତକାର୍ଯ୍ୟ କରାଇବାକୁ ଦୃଢ଼ ସଂକଳ୍ପ ନେଲେ । ଯାବତୀୟ ଅତ୍ୟାଚାର ମଧ୍ୟରେ ପାନବର୍ଜନ ଆନ୍ଦୋଳନ ଆଗେଇ ଚାଲିଲା ।

କଂଗ୍ରେସ ଏବଂ ମହାତ୍ମାଗାନ୍ଧୀଙ୍କ ଆଦର୍ଶରେ ନୟାଗଡ ପ୍ରଜାମଣ୍ଡଳ ଆନ୍ଦୋଳନ କରୁଥିବାରୁ ସବୁକ୍ଷେତ୍ରରେ ଏହା ଯେପରି ପ୍ରକଟିତ ହେବ ସେହି ଲକ୍ଷ୍ୟରେ କର୍ମୀମାନେ ନିଜ ଆଚରଣରେ ତାହା ପ୍ରକାଶ କରିବା ପାଇଁ ପ୍ରଜାମଣ୍ଡଳ ନିର୍ଦ୍ଦେଶ ଦେଇଥିବାରୁ କର୍ମୀମାନେ ନିଜ ଚରିତ୍ରରେ ତାହା ପ୍ରମାଣ କରିବା ପାଇଁ ତ୍ୟାଗପୂତ ସରଳ ଜୀବନଯାପନ କରୁଥିଲେ । କର୍ମୀମାନଙ୍କର ଆଦର୍ଶ ଜୀବନଯାପନ ସେମାନଙ୍କୁ ଜନସାଧାରଣଙ୍କଦ୍ୱାରା ଅତ୍ୟନ୍ତ ସମ୍ମାନିତ ଓ ଆଦୃତ କରୁଥିଲା । ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନରଖି ସଂଗ୍ରାମୀ କର୍ମୀବୃନ୍ଦ ନିରବଚ୍ଛିନ୍ନ ଭାବେ ଦେଶ ତଥା ଜନତାର ସେବା କରୁଥିଲେ । ଦେଶର ମୁକ୍ତି କାମନାରେ ସେମାନେ ଯେଉଁ ଲୁହ ଓ ଲହୁ ଢାଳି ଦେଇଗଲେ ତାହା ଆଜି ଇତିହାସର ବସ୍ତୁ ହୋଇପାରେ । ମାତ୍ର ସେମାନଙ୍କର ସାଧନା ହିଁ ଦେଶକୁ ସ୍ୱାଧୀନତା ଆଣି ଦେଇଥିଲା । ସେତେବେଳେ ନେତା ଓ କର୍ମୀଙ୍କ ମଧ୍ୟରେ ସମ୍ପର୍କ ଅତି ଘନିଷ୍ଠତର ଥିଲା । ଛୋଟବଡର ଅହଂକାର କାହାରି ମନରେ ନଥିଲା । ତେଣୁ ସବୁ ସମୟରେ ଦଳ ମଧ୍ୟରେ ଶାନ୍ତି ବିରାଜମାନ କରୁଥିଲା । କର୍ମ ହିଁ କର୍ମୀର ମାନଦଣ୍ଡ ଥିଲା । ଯିଏ ଯେତେ କାର୍ଯ୍ୟ କରିପାରୁଥିଲେ, ଦଳ ମଧ୍ୟରେ ସେ ସେତେ ସମ୍ମାନର ଅଧିକାରୀ ହେଉଥିଲା । ସେଠାରେ କୌଣସି ଭେଦଭାବ ନଥିଲା ।

## ଚଉକିର ଆନ୍ଦୋଳନ—

ଚଉକିର ଡିସେମ୍ବର ମାସରେ ଆଦାୟ ହେବାର ନିର୍ଦ୍ଦିଷ୍ଟ ଥିବା ସତ୍ତ୍ୱେ ତାହା ସେପ୍ଟେମ୍ବର ମାସରେ ଆଦାୟ କରିବା ପାଇଁ ରାଜା ଆଦେଶ ଦେଲେ । ସେପ୍ଟେମ୍ବର ମାସରେ ଏହା ଆଦାୟ କରିବା ଅନ୍ୟାୟ, ଏହିକଥା ପ୍ରଜାମଣ୍ଡଳ ସଭାପତି ରାଜାଙ୍କୁ ଜଣାଇବା ସଙ୍ଗେ ସଙ୍ଗେ ତୁରନ୍ତ ଏହା ବନ୍ଦ କରିବା ପାଇଁ ଲେଖିଲେ । ରାଜା ପ୍ରଜାମଣ୍ଡଳ ସଭାପତିଙ୍କ ଅନୁରୋଧ ପ୍ରତ୍ୟାଖାନ କରିବାରୁ ସବୁଦିନ ଚଉକିର ବନ୍ଦ କରିବା ପାଇଁ ପ୍ରଜାମଣ୍ଡଳ ନିଷ୍ପତ୍ତି କଲେ । ପ୍ରଜାମଣ୍ଡଳର ନିଷ୍ପତ୍ତିକ୍ରମେ କେହି ଚଉକିର ଦେଲେନାହିଁ । ଶତଚେଷ୍ଟା କରି ମଧ୍ୟ ବିଭାଗୀୟ କର୍ମଚାରୀମାନେ ଅଣାଏ ପଇସା ଚଉକିରରୁ ଆଦାୟ କରିପାରିନଥିଲେ । ଏହାପରେ

ବନବିଭାଗୀୟ କର୍ମଚାରୀମାନେ ଓଡଗାଁ, ଗୋଡପଡା ଓ ବାହାଡାଝୋଲର ଗୋରୁଗାଈ, ମେଣ୍ଢା ଚରଣ ଭୂଇଁରୁ ଧରିଆଣି କାଇନହାଉସରେ ଭର୍ତ୍ତି-କଲେ । ଚରକର ଦେଲେ ଗାଈଗୋରୁ ସବୁ ଛାଡ ପାଇବେ ବୋଲି ସଂପୃକ୍ତ ବ୍ୟକ୍ତିଙ୍କୁ ଫୁସୁଲାଫୁସୁଲି କଲେ । ଏଥିରେ ବ୍ୟର୍ଥ ମନୋରଥ ହେବାରୁ ତା ୧୯ - ୧୦- ୩୮ ରେ ଓଡଗାଁର ଗାଈଗୁଡକୁ ଏବଂ ଗୋଡପଡାର ଗାଈଗୋଠକୁ ତା ୨୦-୧୦-୩୮ଦିନ ନିଲାମ କରିଦେଲେ । ଓଡଗାଁ ଗାଈଗୁଡକୁ ନିଲାମ ଧରିବାକୁ କେହି ରାଜି ନ ହେବାରୁ ବିଲ୍ଲମାନ-ପୁର ସର୍ବରାକାର ଦେବରାଜ ଜେନାଙ୍କୁ ମାଡଦେଇ ବାଧ୍ୟକରି ୩୦୦ଟଙ୍କାର ଗାଈଗୁଡକୁ ୨୦ଟଙ୍କାରେ ତାଙ୍କ ନାମରେ ନିଲାମକଲେ । ଶ୍ରୀଯୁକ୍ତ ଜେନା ୨୦ଟଙ୍କା ଦେଇ ଗାଈଗୁଡକୁ ଆଣି ଯାହାଙ୍କର ନିଲାମ ହୋଇଥିଲା ତାହା ତାଙ୍କୁ ଫେରାଇଦେବା ହେତୁ ତାଙ୍କୁ ସର୍ବରାକାରରୁ ବରଖାସ୍ତ କରାଗଲା । ବାହାଡାଝୋଲର ଗାଈ ଓ ଛେଳିଗୁଡକୁ କେହି ନିଲାମରେ ନ ନେବାରୁ ୨୦୦ଟଙ୍କାର ଗାଈ ଓ ଛେଳିଗୁଡକୁ ନାମମାତ୍ର ଟ ୫ ଙ୍କାରେ ଜଣେ ମୁସଲମାନକୁ ବିକ୍ରୀ କରି ଦିଆଗଲା । ଓଡଗାଁ, ବାହାଡାଝୋଲ ଅଭିଜ୍ଞତାରୁ କେତେକ ସର୍ବରାକାର ଓ ସରକାରୀ କର୍ମଚାରୀ ତଥା କେତେଜଣ ମାମଲତକାର ଲୋକଙ୍କୁ ଗାଈ ନିଲାମ ଧରିବାପାଇଁ ଗୋଡପଡା ନିଆଗଲା । ଗୋଡପଡାରେ ମଧ୍ୟ କୌଣସି ସାଧାରଣ ଲୋକ ନିଲାମ ଡାକିନଥିଲେ । ବାହାରୁ ଧରହୋଇ ଆସିଥିବା ରାଜକର୍ମଚାରୀ ଓ ମାମଲତକାରମାନେ ହଜାର ହଜାର ଲୋକଙ୍କ ଅନୁରୋଧକୁ ପ୍ରତ୍ୟାଖାନ କରି ହଜାରେ ଟଙ୍କାରେ ଗାଈଗୋରୁଙ୍କୁ ମାତ୍ର ସତାବନ ଟଙ୍କାରେ ନେଇ ଯାଇଥିଲେ । ଏହାଫଳରେ ଲଡୁ ମହନ୍ତ, ଭିକାରୀ ମହନ୍ତ, ଆନନ୍ଦ ବେହେରା, କାଳୁ ସାହୁ ମହେଶ୍ୱର ସାହୁ ଓ ମଦନ ନାୟକ ସର୍ବସ୍ୱାନ୍ତ ହୋଇଗଲେ ।

ତା ୧୬-୧୦-୩୮ ଦିନ ରାଜା ଦରବାର କରି ନିଜର ବ୍ୟକ୍ତିଗତ ଅସୁବିଧା ଦର୍ଶାଇବା ସଙ୍ଗେ ସଙ୍ଗେ ପ୍ରଜାମାନଙ୍କର ସାମାନ୍ୟ କିଛି ସୁବିଧା କରିବା ଘୋଷଣା କରି ପ୍ରଜାମଣ୍ଡଳ ବିରୁଦ୍ଧରେ ନାନାପ୍ରକାର କୁତ୍ସାମୂଳକ ବାକ୍ୟ ପ୍ରୟୋଗ କରିଥିଲେ ଏବଂ ଆନ୍ଦୋଳନକୁ ବନ୍ଦକଲେ ଦେଇଥିବା ସମସ୍ତ ସୁଯୋଗ ପ୍ରତ୍ୟାହାର କରିନେବା ପାଇଁ ଧମକଦେଲେ ଏବଂ ରାଜ୍ୟରେ ଶାନ୍ତିଶୃଙ୍ଖଳା ରକ୍ଷା ଦୃଷ୍ଟିରୁ ଆବଶ୍ୟକୀୟ ଶକ୍ତି ପ୍ରୟୋଗ କରିବା

ପାଇଁ ଦୃଢ଼କଣ୍ଠରେ ଘୋଷଣା କଲେ । ରାଜାଙ୍କର ଏହି ଘୋଷଣା ପରେ ପରେ ତାଙ୍କ ପ୍ରରୋଚନାକ୍ରମେ ରାଜ୍ୟର ୨୧ଜଣ ଧନୀ ପୁଞ୍ଜିପତି, ସର୍ବରକାର ଓ ମାମଲତକାର ମିଶି 'ପ୍ରଜାବନ୍ଧୁ ସମିତି' ନାମରେ ଏକ ଅନୁଷ୍ଠାନ ଗଠନକରି ପ୍ରଜାମଣ୍ଡଳ ବିରୁଦ୍ଧରେ ନାନାପ୍ରକାର କୁତ୍ସାମୂଳକ ଲେଖାମାନ ଲେଖି ପ୍ରଚାରକଲେ । ଏହି ସବୁ ଲୋକ ନିଜ ସ୍ୱାର୍ଥ ଦୃଷ୍ଟିରୁ ସବୁବେଳେ ଜନତାକୁ ଶୋଷଣ କରୁଥିବାରୁ ଏମାନଙ୍କ କଥା କେହି ଶୁଣିଲେ ନାହିଁ । କେବଳ ୨ଟି ପ୍ରଚାରପତ୍ର ବାଣ୍ଟିବାପରେ ଏହି ଅନୁଷ୍ଠାନର କାର୍ଯ୍ୟକ୍ରମ ଛାଏଁ ଛାଏଁ ବନ୍ଦ ହୋଇଯାଇଥିଲା ।

ତା ୧୭ :୧୦' ୩୮ ରାଜାଙ୍କ ଘୋଷଣା ପରେ ପରେ ଅଧିକରୁ ଅଧିକ ଦମନ ଲୀଳା ଚାଲିବାରୁ ଉକ୍ତ ପରିସ୍ଥିତିର ମୁକାବିଲା କରିବା ପାଇଁ ପ୍ରଜାମଣ୍ଡଳ ନିର୍ଦ୍ଦେଶକ୍ରମେ ନୟାଗଡ଼ର ପ୍ରତ୍ୟେକ ଗ୍ରାମରେ ଗ୍ରାମପଞ୍ଚାୟତ ଗଠନ କରାଗଲା । ଏହି ପଞ୍ଚାୟତ ପ୍ରଜାମଣ୍ଡଳର ମୂଳ ପିଣ୍ଡ ରୂପେ ରହି ନିକଟଭବିଷ୍ୟତରେ ଆସୁଥିବା ନିର୍ଯ୍ୟାତନାର ସମ୍ମୁଖୀନ ହେବାପାଇଁ ଲୋକଙ୍କୁ ସଙ୍ଗଠିତ ହେବାକୁ ନିର୍ଦ୍ଦେଶଦେଲା ଏବଂ ରାଜାଙ୍କର ମିଥ୍ୟା ପ୍ରବଞ୍ଚନା ପୂର୍ଣ୍ଣ ଘୋଷଣା ପ୍ରତି ସଜାଗ ରହିବା ଲାଗି ଜନତାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଏହି ସମୟରେ ରାଜାଙ୍କର ଅର୍ଥହୀନ ଘୋଷଣାର ପ୍ରତିବାଦ କରି ନୟାଗଡ଼ ପ୍ରଜାମଣ୍ଡଳ ପକ୍ଷରୁ ଏକ ନିବେଦନ ପତ୍ର ଜନତାଙ୍କ ଉଦ୍ଦେଶ୍ୟରେ ବଣ୍ଟନ କରାଯାଇଥିଲା ଏବଂ ରାଜାଙ୍କର ସମସ୍ତ ମିଥ୍ୟା ପ୍ରବଞ୍ଚନା ପୂର୍ଣ୍ଣ ଷଡ଼ଯନ୍ତ୍ରକୁ ଏହି ପ୍ରଚାରପତ୍ର ଦ୍ୱାରା ଚିକିନିଖି ଭାବେ ଖଣ୍ଡନ କରି ଲୋକଙ୍କୁ ବୁଝାଇ ଦିଆଯାଇଥିଲା ଏବଂ ଯେଉଁ ରାଜକର୍ମଚାରୀ ବା ରାଜପକ୍ଷ ଲୋକ ଗ୍ରାମମାନଙ୍କରେ ବିଭେଦ ସୃଷ୍ଟି କରିବେ, ସେମାନଙ୍କ ସହିତ ଗ୍ରାମବାସୀ ସମସ୍ତ ସଂପର୍କ ତୁଟାଇ ଦେବାପାଇଁ ପ୍ରଜାମଣ୍ଡଳ ପକ୍ଷରୁ ଅନୁରୋଧ କରାଯାଇଥିଲା ।



# ରାଜ୍ୟରେ ପଞ୍ଚାୟତ ଶାସନ ଓ ଦମନଲୀଳା

ଜନମତ ଦ୍ୱାରା ଗ୍ରାମମାନଙ୍କରେ ଗ୍ରାମ ପଞ୍ଚାୟତମାନ ଗଠନ କରି ଗାଁର ଶାସନଭାର ପଞ୍ଚାୟତ ନିଜହାତକୁ ନେଇଥିବା ହେତୁ ରାଜା ଉତ୍ୟକ୍ତ ହୋଇ ପୁନର୍ବାର ଗୋରୁଗାଈ କାଇନ ହାଉସରେ ଭରିକରି ନିଲାମ କରିବାକୁ ନିର୍ଦ୍ଦେଶ ଦେଲେ । ପୋଲିସ ଓ ବନବିଭାଗୀୟ କର୍ମଚାରୀମାନେ ପୁନର୍ବାର ଗୃହପାଳିତ ପଶୁମାନଙ୍କୁ କାଇନହାଉସ୍‌କୁ ଆଣିବା ଉଦ୍ୟମ କରିବାରୁ ପ୍ରଜାମଣ୍ଡଳ ସତ୍ୟାଗ୍ରହୀମାନେ ସେମାନଙ୍କୁ ଉକ୍ତ କାର୍ଯ୍ୟ କରଇ ଦେଲେନାହିଁ । ନୂଆଗାଁ ଥାନାର ଶହ ଶହ ସତ୍ୟାଗ୍ରହୀ ଏହାର ବିରୋଧ କରି ପୋଲିସ୍ ଓ ବନବିଭାଗୀୟ କର୍ମଚାରୀଙ୍କ ଲାଠିମାଡ ଫଳରେ କ୍ଷତବିକ୍ଷତ ହେଲେ । କର୍ମୀ ସୁଦାମ ଚରଣ ବାରିକ, ନାରାୟଣ ବେହେରା, କୃପାସିନ୍ଧୁ ପଟ୍ଟନାୟକ ଏତଦ୍‌ଦ୍ୱାରା ଭୀଷଣ ଭାବେ ଆହତ ହୋଇଥିଲେ । ବାହାଡାଝୋଲାର ସତ୍ୟାଗ୍ରହୀମାନେ ପ୍ରତିରୋଧ କରି ପୋଲିସଙ୍କ ପ୍ରହାରର ଶିକାର ହେଲେ । କର୍ମୀ ସଦାଶିବ ସାହୁ, ଚନ୍ଦ୍ରମଣି ସାହୁ ଓ ସର୍ବେଶ୍ୱର କର ପୋଲିସ୍ ଲାଠି ପ୍ରହାରରେ ଅଚେତ ହୋଇ ତଳେ ପଡ଼ିଥିବା ସମୟରେ ସେମାନଙ୍କୁ ଗିରଫ କରି ଥାନାକୁ ନେଇଗଲା । ତାଲଣ୍ଡାର ମଙ୍ଗୁଳି ସାହୁଙ୍କୁ ମର ମର ଅବସ୍ଥାରେ ରସ୍ତାକଡକୁ ଗଡାଇଦିଆଯାଇଥିଲା । କୋରଡା ବେଢନଟି ଆଦିବାସୀ ଅଞ୍ଚଳରେ କର୍ମୀମାନେ ମଧ୍ୟ ସତ୍ୟାଗ୍ରହ କରି ଦଣ୍ଡିତ ହୋଇଥିଲେ । ନୂଆଗାଁର ବୃଦ୍ଧ କର୍ମୀ ହାଡ଼ବନ୍ଧୁ ପଟ୍ଟନାୟକଙ୍କୁ ପୋଲିସ୍ ନିଷ୍ଠୁର ଭାବେ ମାଡଦେଇ ଅଚେତ ଅବସ୍ଥାରେ ଜଙ୍ଗଲ ମଧ୍ୟରେ ପକାଇଦେଇ ଆସିଥିଲେ । ଯାତ୍ରୀ ଚନ୍ଦ୍ରଶେଖର ଷୁବୁଦ୍ଧି ତାଙ୍କୁ ଚେତା କରାଇ ବହୁ କଷ୍ଟରେ ନେଇକି ନେଇ ତାଙ୍କ ଗ୍ରାମରେ ଛାଡ଼ଦେଇ ଆସିଥିଲେ । ମୁମୂର୍ଷୁ ପଟ୍ଟନାୟକଙ୍କୁ ଗାଁ ଲୋକେ ରାଜାଙ୍କ ପାଖକୁ ନେଇ ଆପତ୍ତି କରିବାରୁ ରାଜା କହିଲେ, ମରିନାହିଁ ତ, ବିଚାର କ'ଣ ହେବ ? ଗାଁକୁ ନେଇଯାଅ, ଚିକିତ୍ସା ପାଇଁ ଡାକ୍ତରଖାନାକୁ ନେବାରେ ଏଭଳି ରୋଗୀକୁ ଚିକିତ୍ସା କରିବାକୁ ରାଜାଙ୍କ ଆଦେଶ ନାହିଁ କହି ଡାକ୍ତର ଫେରାଇଦେଲେ ।

ଓଡ଼ିଶା ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଦମନ କରିବାପାଇଁ ଇଂରେଜ ସରକାରଙ୍କ ସହାୟତାରେ ରାଜାମାନେ ଯେଉଁ ଅମାନୁଷିକ, ପାଶବିକ ଅତ୍ୟାଚାର ଚଳାଇଥିଲେ, ତାର ପ୍ରତିବାଦ କରିବା ପାଇଁ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ତା ୨୯-୧୦-୩୮ ଦିନଟିକୁ ଗଡ଼ଜାତ ଦିବସ ରୂପେ ପାଳନ କରିବା ପାଇଁ ଜନସାଧାରଣଙ୍କୁ ନିବେଦନ କରିଥିଲେ । ଏହି ପରିପ୍ରେକ୍ଷୀରେ ନୟାଗଡ଼ ପ୍ରଜାମଣ୍ଡଳ କାର୍ଯ୍ୟସାରା ସଭା, ଶୋଭାଯାତ୍ରା, ହରତାଳ କରାଇ ନିଜର ପ୍ରତିବାଦ ଜଣାଇଥିଲେ । ସେହିଦିନ ଗୋଢ଼ପଡ଼ାଠାରେ ଏକ ବିରାଟ ସାଧାରଣସଭା ହେଉଥିବା ସମୟରେ ପୋଲିସ୍ ଓ ବନବିଭାଗୀୟ କର୍ମଚାରୀମାନେ, ଗୋଢ଼ପଡ଼ାର ପୁଣି ଏକଗୋଠ ଗାଈଙ୍କୁ କାଇନହାଉସକୁ ଅଣୁଥିବା କଥା ଜଣାଗଲା । ଏହି ସମ୍ବାଦ ଶୁଣିବା ପରେ ପରେ ଶ୍ରୀଧର ଦାଶଙ୍କ ନେତୃତ୍ୱରେ ସଭାରେ ଯୋଗଦେଇଥିବା ହଜାର ହଜାର ଲୋକ ପ୍ରତିରୋଧ କରି ସଂପୃକ୍ତ କର୍ମଚାରୀମାନଙ୍କୁ କାର୍ଯ୍ୟ କରାଇ ଦେଲେନାହିଁ । ଲୋକଶକ୍ତି ସମ୍ମୁଖରେ ପରାଭୂତ ହୋଇ ପୋଲିସ୍ ପକ୍ଷରୁ ଶ୍ରୀଧର ଦାଶ, ଦଣ୍ଡପାଣି ଷଡ଼ଙ୍ଗୀ, ଅଗାଧୁ ଦୋରା, ମାଗତି ଦୋରା, ରାମଚନ୍ଦ୍ର ମିଶ୍ର, ପାଣ୍ଡୁଚରଣ ସାହୁ, ଉଦୟନାଥ ପୃଷ୍ଟି, ବାସୁ ପୃଷ୍ଟି, ତ୍ରିଲୋଚନ ଦାଶ ପ୍ରମୁଖ ୪୪ଜଣ କର୍ମୀଙ୍କ ନାମରେ ଏକ ମୋକଦ୍ଦମା ରୁଜୁ କରିଥିଲେ ।

ରାଜାଙ୍କର ଧମକଚମକରେ ଲୋକେ ନ ଡରିବାରୁ ଏବଂ ଗ୍ରାମମାନଙ୍କରେ ଗ୍ରାମପଞ୍ଚାୟତ ରୀତିମତ ଚାଲି ଗ୍ରାମର ଭଲମନ୍ଦ ବୁଝିବା ଫଳରେ ଥାନା ଏବଂ କଚେରୀକୁ କମ ମାଲିମୋକଦ୍ଦମା ଗଲା । ଏହା ସାଙ୍ଗକୁ ସଭା ଓ ଶୋଭାଯାତ୍ରା ମାଧ୍ୟମରେ ଦମନର ପ୍ରତିବାଦ ଚାଲିଥାଏ । ରାଜା ଓ ତାଙ୍କ କର୍ମଚାରୀଙ୍କ ପକ୍ଷେ ଏହା ଅସହ୍ୟ ହେବାରୁ ପୋଲିସ୍ ଗୁଣ୍ଡାଶ୍ରେଣୀୟ ଲୋକଙ୍କ ସହିତ ମେଣ୍ଟବାନ୍ଧ ପ୍ରଜାମଣ୍ଡଳ ଦ୍ୱାରା ହେଉଥିବା ସଭାସବୁ ଭଙ୍ଗିବାର ଉଦ୍ୟମକଲେ । ବାଲୁଗାଁରେ ହେଉଥିବା ଏକ ସଭାକୁ ଗୁଣ୍ଡାମାନଙ୍କ ଦ୍ୱାରା ଭଙ୍ଗିବାକୁ ଚେଷ୍ଟାକରି ବିଫଳ ହେବାରୁ ସଭାପରେ ଆଦିବାସୀ କର୍ମୀ ରଘୁନାଥପ୍ରଧାନଙ୍କୁ ଏକାକି ଦେଖି ନିଷ୍ଠୁର ଭାବେ ମାଡ ଦେଇଥିଲେ । ତାଙ୍କୁ ରକ୍ଷା କରିବାକୁ ଯାଇ କର୍ମୀ କୃପାସିନ୍ଧୁ ପଟ୍ଟନାୟକ, ବିଶ୍ୱନାଥ ପଟ୍ଟନାୟକ , ଅନନ୍ଦଚନ୍ଦ୍ର ଦୋରା, ଚକ୍ରଧର ମହାରଣା ପ୍ରମୁଖ ଗୁଣ୍ଡାମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହେଲେ । ସେହିଭଳି ଶିଖରପୁର ଗ୍ରାମରେ

ପ୍ରଜାମଣ୍ଡଳ ପକ୍ଷରୁ ଏକ ସାଧାରଣସଭା ହେଲା । କର୍ମୀ ମଦନମୋହନ ପଟ୍ଟନାୟକ ଉକ୍ତ ସଭାର ସଭାପତିତ୍ୱ କରୁଥିଲେ । ସେ ତାଙ୍କର ଭାଷଣ ଦେଉଥିବା ବେଳେ ସ୍ଥାନୀୟ ସର୍ବରକାର ଓ ଅନ୍ୟାନ୍ୟ କେତେକ ରାଜ-କର୍ମଚାରୀ ଶ୍ରୀଯୁକ୍ତ ପଟ୍ଟନାୟକଙ୍କୁ ନାନା ପ୍ରଶ୍ନମାନ କଲେ ଓ ତା'ର ଯଥାର୍ଥ ଉତ୍ତର ମଧ୍ୟ ପାଇଲେ । ପରିଶେଷରେ ସଭା ଭାଙ୍ଗିବା ପାଇଁ ଗୁଣ୍ଡା ଲଗାଇ ମଦନ ମୋହନଙ୍କୁ ସଭାରୁ ଟାଣିଆଣି ମାଡଦେଲେ । ସେହିଭଳି ଅନ୍ୟ ସଭାମାନଙ୍କରେ ମଧ୍ୟ କରଯାଇଥିଲା । ରାଜ୍ୟରେ ଗୁଣ୍ଡା ଶାସନ ଚଳାଇ ଏହା ଯେପରି ବାହାର ଜଗତରେ ପ୍ରକଟିତ ନହୁଏ, ରାଜା ତା'ର ଯୋଗାଡ କରିଥା'ନ୍ତି । ପ୍ରଜାମଣ୍ଡଳ ପକ୍ଷରୁ ଯେଉଁ ଚିଠିପତ୍ର ଡାକ ମାଧ୍ୟମରେ ଯିବାଆସିବା କରେ ସେ ସମସ୍ତ ଚିଠି ପୋଲିସ୍ ଜବତ କରନ୍ତି । ରାସ୍ତାରେ ଓ ବସ୍‌ରେ ଯିବାଆସିବା କର୍ମୀମାନଙ୍କୁ ସର୍ଚ୍ଚ କଲେ, ପ୍ରଜାମଣ୍ଡଳ ଲୋକଙ୍କୁ ଓ ତାଙ୍କ ସମର୍ଥକମାନଙ୍କୁ ରାଜ୍ୟ ବାହାରକୁ ଯିବାପାଇଁ ବାରଣ କଲେ । ପ୍ରଜାମଣ୍ଡଳ କର୍ମକର୍ତ୍ତାମାନେ ସେସବୁ ଜାଣିପାରି ପ୍ରଜାମଣ୍ଡଳ ଚିଠିପତ୍ର ରାଜ୍ୟ ବାହାରେ ଭିତରେ ଦିଆନିଆ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କଲେ । ପଡୋଶୀ ପୁରୀ ଓ ଗଞ୍ଜାମ ଜିଲ୍ଲାର ନିକଟବର୍ତ୍ତୀ ଡାକଘର ମାଧ୍ୟମରେ ଡାକ ବାହାର ଜଗତକୁ ପଠାଇଲେ ଓ ରାଜ୍ୟ ଭିତରେ ଡାକ ନେବା ଆଣିବା ପାଇଁ ସ୍ୱତନ୍ତ୍ର ଲୋକ ନିଯୁକ୍ତି କଲେ । ନଗରର ବନ୍ଦ ଆନ୍ଦୋଳନକୁ ଜବତ କରିବାରେ ରାଜା ବିଫଳହେବାରୁ ଉକ୍ତ ପନ୍ଥା ତ୍ୟାଗକରି ପ୍ରଜାମଣ୍ଡଳ କର୍ମୀ ଓ ସମର୍ଥକମାନଙ୍କୁ ଯେଉଁଠି ଦେଖିଲେ ପୋଲିସ୍ ଓ ଗୁଣ୍ଡା ଲଗାଇ ବିଚ୍ ରାସ୍ତାଉପରେ ମାଡ ଦେଲେ, ଗ୍ରାମମାନଙ୍କରେ ପ୍ରଜାମଣ୍ଡଳ ଦ୍ୱାରା ଗଠିତ ପଞ୍ଚାୟତଗୁଡ଼ିକୁ ସର୍ବରକାର ପୋଲିସ୍ ଚୌକିଦାର ଗୁଣ୍ଡାମାନଙ୍କ ସହାୟତାରେ ଭାଙ୍ଗିବା, ସଭାମାନଙ୍କରେ ଗୋଳମାଳ କରି ସଭା ଭାଙ୍ଗିବା ଇତ୍ୟାଦି କାର୍ଯ୍ୟମାନ କରାଇଲେ । ପ୍ରଜାମଣ୍ଡଳ ପକ୍ଷରୁ ପ୍ରଜାମଣ୍ଡଳ ସଭାପତି ରାଜାଙ୍କର ଏଭଳି ଅମାନୁଷିକ କାର୍ଯ୍ୟର ପ୍ରତିବାଦ କରି ରାଜାଙ୍କୁ ପତ୍ରଦେବା ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳରେ ବାସକରୁଥିବା ରାଜକର୍ମଚାରୀମାନଙ୍କୁ ଏଭଳି କାର୍ଯ୍ୟରୁ ନିବୃତ୍ତ ହେବାପାଇଁ ଅନୁରୋଧ କଲେ ଓ ଏଭଳି କାର୍ଯ୍ୟକଲେ ଯେଉଁ ଅବସ୍ଥା ଉପୁଯିବ ସେଥିପାଇଁ ସେମାନେ ସତର୍କ ରହିବେ ବୋଲି ପରୋକ୍ଷରେ ଧମକଦେଲେ । ଫଳରେ ଗ୍ରାମାଞ୍ଚଳର କର୍ମଚାରୀମାନେ ସ୍ଥାନେ ସ୍ଥାନେ ଲୋକଙ୍କ ଠାରୁ ଅଲଗା ହୋଇଗଲେ । ଲୋକମାନେ ସେମାନଙ୍କୁ କୌଣସି ପ୍ରକାରର

ସହାୟତା ନ ଦେବାରୁ କେତେକ କର୍ମଚାରୀ ନିରୁପାୟ ହୋଇ ଗ୍ରାମ-ପଞ୍ଚାୟତ ନିକଟରେ ଶରଣ ପଶିଲେ । ରାଜାଙ୍କର ଅତ୍ୟାଚାର ଯେତିକି ଅଧିକ ହେଉଥାଏ, ଆଇନଭଙ୍ଗ କରିବା ପାଇଁ ପ୍ରଜାମଣ୍ଡଳ ସେତିକି ଆଗଭର ହେଉଥାଏ । ରାଜାଙ୍କ କାର୍ଯ୍ୟର ତୀବ୍ର ପ୍ରତିବାଦ କରି ପ୍ରଜାମଣ୍ଡଳ ନିର୍ଦ୍ଦେଶକ୍ରମେ ଲୋକେ ଜଙ୍ଗଲ ଆଇନକୁ ଅମାନ୍ୟ କରି ରାଜାଙ୍କର ସଂରକ୍ଷିତ ଜଙ୍ଗଲମାନଙ୍କରୁ କାଠ, ବାଉଁଶ କାଟି ଜଙ୍ଗଲ ଆଇନକୁ ପଣ୍ଡ କରିଦେଲେ । ଦିନକୁଦିନ ରାଜା ଏବଂ ପ୍ରଜାମଣ୍ଡଳ ମଧ୍ୟରେ ଗୁରୁତର ସଂଘର୍ଷର ସୂତ୍ରପାତ ହେବାରୁ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ଏକ ବୈଠକ ହୋଇ ସମସ୍ତ ବିଷୟରେ ରାଜାଙ୍କ ସହିତ ଆଲୋଚନା କରିବା ପାଇଁ ତା ୨୮ ୧୧ ୩୮ ଦିନ ନୟାଗଡର ସମସ୍ତ ପ୍ରଜା ନୟାଗଡଠାରେ ଉପସ୍ଥିତ ହେବା ପାଇଁ ନିର୍ଦ୍ଦେଶଦେଲେ । ପ୍ରଜାମଣ୍ଡଳର ଆହ୍ୱାନକ୍ରମେ ପ୍ରାୟ ଅଧିକାଂଶ ଲୋକ ତା ୨୮-୧୧-୩୮ ଦିନ ନୟାଗଡ ରାଜବାଟୀ ସାମନା ତୋଟାରେ ସମବେତ ହୋଇଥିଲେ । ପ୍ରଜାମଣ୍ଡଳ ସଭପତି ଶ୍ରୀ ବାଞ୍ଛାନିଧି ସେନାପତିଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ସଭ୍ୟମାନେ ରାଜାଙ୍କୁ ଭେଟି ବର୍ତ୍ତମାନ ପରିସ୍ଥିତି ସମ୍ପର୍କରେ ଏବଂ ପ୍ରଜା-ମଣ୍ଡଳ ଦାବିପତ୍ର ସମ୍ପର୍କରେ ରାଜା କି ବ୍ୟବସ୍ଥା କରୁଛନ୍ତି, ସେ ବିଷୟରେ ଆଲୋଚନା କରିବାପାଇଁ ଉପସ୍ଥିତ ଜନତାଙ୍କ ମଧ୍ୟରୁ ସର୍ବସମ୍ମତି ପ୍ରସ୍ତାବ ଦେବାରୁ ସାକ୍ଷାତ ପାଇଁ ରାଜାଙ୍କୁ ଜଣାଇ ଦିଆଗଲା । ହଜାର ହଜାର ଲୋକ ନଭେମ୍ବର ମାସର ଶୀତ କୁହୁଡରେ ୨ଦିନ କାଳାତିପାତ କଲାପରେ ତା ୩୦-୧୧-୩୮ ଦିବା ୧୨ଘଣ୍ଟା ସମୟରେ କଚେରୀଠାରେ ସାକ୍ଷାତ ପାଇଁ ରାଜା ଜଣାଇଦେଲେ । ରାଜାଙ୍କ କଥା ଅନୁସାରେ ଉପସ୍ଥିତ ସମସ୍ତ ଲୋକଙ୍କ ସହିତ ପ୍ରଜାମଣ୍ଡଳ ସଭପତି ଠିକ୍ ସମୟରେ କଚେରୀ ହତାରେ ଉପସ୍ଥିତ ହେଲେ । ରାଜା ପ୍ରଜାମଣ୍ଡଳ ନେତାମାନଙ୍କୁ ସାକ୍ଷାତ ପାଇଁ ତାଙ୍କ ଅଫିସକୁ ଡାକିନେଇ ବାସ୍ତବ ସମସ୍ୟା ପ୍ରତି ଦୃଷ୍ଟିନଦେଇ ଏଣେତେଣେ ନିରର୍ଥକ କଥାବାର୍ତ୍ତା କରିବାରୁ କୌଣସି ସମସ୍ୟାର ସମାଧାନ ହେଲାନାହିଁ । ପ୍ରଜାମଣ୍ଡଳ ନେତାମାନଙ୍କ ସହିତ କଥାହେବା ସଙ୍ଗେ ସଙ୍ଗେ ନୟାଗଡ ଦେଓ୍ୟାନଙ୍କ ମାଧ୍ୟମରେ ଆଦିବାସୀମାନଙ୍କ ସହିତ ଅନ୍ୟ ଲୋକମାନଙ୍କର ଯେଭଳି ବିଭେଦ ସୃଷ୍ଟି ହୁଏ, ଯେଥିପାଇଁ ଉଦ୍ୟମ କରାଗଲା । ଏଥିପାଇଁ ଦେଓ୍ୟାନ ଆଦିବାସୀ ନେତାମାନଙ୍କୁ ବହୁ ପ୍ରଲୋଭନ ଦେଖାଇଲେ ।

ମାତ୍ର କିଛି ଫଳ ହେଲନାହିଁ । ସମସ୍ୟା ସମାଧାନ କରିବା ପାଇଁ ପ୍ରଜାମଣ୍ଡଳ ମଧ୍ୟରେ ଭେଦ ସୃଷ୍ଟି କରିବାପାଇଁ ରାଜା ଯେଉଁ ଷଡ଼ଯନ୍ତ୍ର-ମୂଳକ କାର୍ଯ୍ୟକଲେ ଲୋକେ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହେଲେ । ରାଜା ଏତିକିରେ ସନ୍ତୁଷ୍ଟ ନହୋଇ ତାଙ୍କ ପକ୍ଷରୁ ଲିଖିତ ଏକ ଘୋଷଣାପତ୍ର ସେଠାରେ ବଣ୍ଟନ କରାଇଲେ । ସେଥିରେ ଲେଖାଥିଲ – "ଆମ୍ଭେ ପ୍ରଜାଙ୍କୁ କେତେକ ସୁବିଧା ଦେଇଛୁ । ଆହୁରି କେତେକ ଇଚ୍ଛାଅଛି । ଶାସନ ସଂସ୍କାର କରିବା କଥା ମଧ୍ୟ ବିଚାରାଧୀନ ଅଛି । ଉପସ୍ଥିତ ଆନ୍ଦୋଳନ ବନ୍ଦ ନହେଲେ ଏହା ଦେବାତ ଦୂରରକଥା, ପୂର୍ବରୁ ଦେଇଥିବା ସୁବିଧା ଉଠାଇ ନେଇ-ଯିବାର ବ୍ୟବସ୍ଥା କରଯିବ । ଦୁଃଖରକଥା ଆନ୍ଦୋଳନ ଦିନକୁଦିନ ବଢ଼ୁଛି । ଅଟକ ଜଙ୍ଗଲରୁ କାଠକାଟି ଆଣିବା, ଚଉକର ନଦେବ ପାଇଁ ଲୋକଙ୍କୁ ବତାଇବା ଓ ଆନ୍ଦୋଳନରେ ଯୋଗ ଦେଉନଥିବା ଲୋକଙ୍କୁ ଧୋବା ଭଣ୍ଡାରି ବାରଣ କରଯାଉଅଛି । ଶାନ୍ତିପ୍ରିୟ ପ୍ରଜାମାନେ ବିଚଳିତ ହେଲେଣି । ରାଜ୍ୟରେ ଶାନ୍ତିଶୃଙ୍ଖଳା ରକ୍ଷା କରିବାପାଇଁ ଆମେ ବାଧ୍ୟ ହେବୁ । ବର୍ତ୍ତମାନ ପ୍ରଜାଙ୍କୁ ସୁବିଧା ଓ ସୁଯୋଗଦେବା ଓ ଶାସନ ସଂସ୍କାର ପ୍ରବର୍ତ୍ତନ କରିବା ଉପସ୍ଥିତି ପରିସ୍ଥିତିରେ ଆମେ ବନ୍ଦ କରିବାକୁ ବାଧ୍ୟ ହେଲୁ ।" ରାଜାଙ୍କର ଏଭଳି ନୀଚ ଆଚରଣର ପ୍ରତିବାଦ କରି ତାଙ୍କ ପାଶବିକ ଶକ୍ତିର ସମ୍ମୁଖୀନ ହେବାକୁ ପ୍ରଜାମଣ୍ଡଳ ତରଫରୁ ରାଜାଙ୍କୁ ଲିଖିତ ଉତ୍ତରରେ ଜଣାଇ ଦିଆଗଲା ।

ନୟାଗଡ଼ ପ୍ରଜାଙ୍କର ନ୍ୟାଯ୍ୟୋଚିତ ଦାବିର ସମାଧାନ ନକରି ରାଜା ଘୋଷଣାପତ୍ର ଛାପି ବାଣ୍ଟି ଲଗିଥାନ୍ତି । ମାତ୍ର ତାହାର ପ୍ରଭାବ ଜନତା ଉପରେ ପଡୁନଥାଏ । ରାଜା ଲୋକଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ନରଖି ପାରିଷଦବର୍ଗଙ୍କ କଥା ଉପରେ ବିଶ୍ୱାସ ରଖି କାର୍ଯ୍ୟ କରୁଥିବାରୁ ବିପରୀତ ଫଳ ହେଉଥିଲା । ରାଜାଙ୍କର ଘୋଷଣାପତ୍ର କିଛି କାମ ନଦେବାରୁ ତା ୫-୧୨-୩୮ ରେ ଏକ ହୁକୁମନାମା ଜାରିକରି ତା ୨୨-୧୧-୩୭ରେ ଲୋକଙ୍କୁ ଦେଇଥିବା କେତେକ ଜଙ୍ଗଲ ସୁବିଧା ପ୍ରଜାମଣ୍ଡଳ ଆନ୍ଦୋଳନରେ ଅଗ୍ରଣୀଥିବା ଗ୍ରାମମାନଙ୍କରୁ ଯଥା— ୧-ଭେମାଦେଇପୁର ଶାସନ, ୨-କଞ୍ଚନବେଲି, ୩-କୋଡ଼ଏକାହାଣିଆ, ୪-ମାଳତୀପୁର, ୫-ଢମିରିପାଟଣା, ୬-କଣ୍ଡାବଣିଆ, ୭-ଅସୁରଝଡ଼ପା, ୮-ଚଉୟାପଲ୍ଲୀ, ୯-ଗୋଛା, ୧୦-କୋରଡ଼ା, ୧୧-ଦେଉଳି,

୧୨-ଚନ୍ଦ୍ରଶେଖରପୁର, ୧୩-କୃଷ୍ଣାଦେଈପୁର, ୧୪-ହରେକୃଷ୍ଣପୁର, ୧୫-ଟିପୁର, ୧୬-ଓଡଗାଁ, ୧୭-କୈବଲ୍ୟପୁର, ୧୮-ମଣାବାଦି, ୧୯-ନନ୍ଦଘୋଷ, ୨୦-କୁରଳ, ୨୧-ସୁନାମୁହିଁ, ୨୨-ବିଲମାନପୁର, ୨୩-ଗୋବିନ୍ଦପଡା, ୨୪-ରଙ୍ଗଦେଉଳି, ୨୫-ଭଲିଆଦହି, ୨୬-ଚଉଳସାହି, ୨୭-ଢମିଶର, ୨୮-ଡମସାହି, ୨୯-ବାହ୍ମଡାଝୋଲା, ୩୦-ବେରୁଆଁବାଦି, ୩୧-ଶିଙ୍ଗାରପଲ୍ଲୀ, ୩୨-ସେନ୍ତେରୀ ଗ୍ରାମମାନଙ୍କୁ ଉଠାଇଦେଲେ । ରାଜାଙ୍କର ଏଭଳି ହୁକୁମନାମା ଗୋଟିକପାଇଁ ମଧ୍ୟ କାର୍ଯ୍ୟକାରୀ ହୋଇ ପାରିଲନାହିଁ । ପ୍ରଜାମଣ୍ଡଳ ସଂଗଠିତ ଶକ୍ତି ରାଜାଙ୍କର ଯେ କୌଣସି ଆଦେଶକୁ ଅମାନ୍ୟ କରିବାକୁ ସମର୍ଥ ଥିବାରୁ ଏଭଳି ଏକ ହୁକୁମନାମା କାଗଜପତ୍ରରେ ରହିଲା ସତ୍ୟ, ମାତ୍ର ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ପ୍ରଜାମଣ୍ଡଳ ଆନ୍ଦୋଳନକୁ ଧ୍ୱଂସ କରିବାପାଇଁ ରାଜା ବାରମ୍ବାର ଦମନ ଚଳାଇ ଘୋଷଣାପତ୍ର ବାଣ୍ଟି, ଗୁଣ୍ଡା ଲଗାଇ ନପାରିବାରୁ କିଂକର୍ତ୍ତବ୍ୟବିମୂଢ଼ ହୋଇ ନୟାଗଡ ଷ୍ଟେଟ ଶୃଙ୍ଖଳା ଆଇନ (ରେଗୁଲେସନ ଆଇନ ୧ ନମ୍ବର ୧୯୩୮ ମସିହା) ଡିସେମ୍ବର ୧୦ତାରିଖରେ ଜାରିକଲେ ଏବଂ ସଙ୍ଗେ ସଙ୍ଗେ ନୟାଗଡ ରାଜ୍ୟରେ ଏହା କାର୍ଯ୍ୟକାରୀ ହେଲା । ଫୌଜଦାରି ଦଣ୍ଡବିଧି ଆଇନ ଆନ୍ଦୋଳନ ଦବାଇବା ପାଇଁ ସକ୍ଷମ ନହେବାରୁ ଏହି ରେଗୁଲେସନ ଏହା ସହିତ ସଂଯୋଗ କରାଗଲା । ଏହି ଆଇନ ଜାରିହେବା ଯୋଗୁଁ ସାଧାରଣ ସଭାସମିତି,ଶୋଭାଯାତ୍ରା ଉପରେ କଟକଣା ଜାରିହେଲା । ଖବରକାଗଜ ପଢ଼ିବା, ବାଣ୍ଟିବା, ପଢି ଶୁଣାଇବା ନିଷେଧ କରାଯାଇଥିଲା । ଲୋକଙ୍କର ନାଗରିକ ସ୍ୱାଧୀନତା ଖର୍ବ କରିବା ସଙ୍ଗେ ସଙ୍ଗେ ବିନା ଓ୍ୱାରେଣ୍ଟରେ ଗିରଫ ଓ ଘରଖାନତଲାସ କରିବାର ଅଧିକାର ପୋଲିସଙ୍କୁ ମିଳିଗଲା । ପୁଣ ଦୋଷକଲେ ତାପାକୁ ଦଣ୍ଡଦେବାର ଧମକ ଦିଆଗଲା । ସରକାରୀ କର୍ମଚାରୀମାନଙ୍କୁ ରକ୍ଷା କରିବାପାଇଁ ଏହି ଆଇନବଳରେ ଲୋକମାନଙ୍କୁ ଦମନ କରିବାର ବ୍ୟବସ୍ଥା କରାଗଲା । ସର୍ବରକାର, ଅମୁଲ୍‌କାରୀ, ଚୌକିଦାର, ଜାଗିରଦାରୀ ଡାକୁଆ, ଦେବୋତ୍ତର ଡୋମେଷ୍ଟିକ୍ ଓ ରାଣୀମାହାଲ କର୍ମଚାରୀ ଭଳି ବ୍ୟକ୍ତିଗତ ସେବକଙ୍କୁ ସରକାରୀ କର୍ମଚାରୀ ପଦକୁ ଉନ୍ନୀତ କରାଯାଇଥିଲା । କଣ୍ଟ୍ରାକ୍ଟର ଓ କେତେକ ପ୍ରକାର

ବ୍ୟବସାୟୀଙ୍କୁ ଏହି ଆଇନ ବଳରେ ରକ୍ଷାକବଚ ମଧ୍ୟ ମିଳିଯାଇଥିଲା । ଏଭଳି ଏକ ମନମୁଖି ଜୁଙ୍କାପିଟା ରେଗୁଲେସନକୁ ପ୍ରଜାମଣ୍ଡଳ "କଳା ଆଇନ" ନାମରେ ଆଖ୍ୟା ଦେଇଥିଲା ।



# ପ୍ରଜାମଣ୍ଡଳ କୁମ୍ଭାପଡ଼ା ଅଧିବେଶନ

ରଜା ରେଗୁଲେସନ ଜାରି କରିବାପରେ ଯେଉଁ ନୂତନ ପରିସ୍ଥିତି ଉପୁଜିଲା, ସେ ପରିସ୍ଥିତି ସମ୍ମୁଖୀନ ହେବାପାଇଁ ଆବଶ୍ୟକୀୟ ବ୍ୟବସ୍ଥା ଗ୍ରହଣ କରିବା ଉଦ୍ଦେଶ୍ୟରେ ତା ୧୯ ୧୨-୩୮ ଦିନ ଗଞ୍ଜାମ ଜିଲ୍ଲାର କୁମ୍ଭାପଡାଠାରେ ପ୍ରଜାମଣ୍ଡଳର ବିଶେଷ ଅଧିବେଶନ ଅନୁଷ୍ଠିତ ହେଲା ଏବଂ ସର୍ବସମ୍ମତିକ୍ରମେ ରଜାଙ୍କ ଦ୍ୱାରା ଜାରି ହୋଇଥିବା ରେଗୁଲେସନକୁ ଅମାନ୍ୟ କରିବାପାଇଁ ସ୍ଥିର କରାଗଲା । ଆବଶ୍ୟକ ସ୍ଥଳେ ଜଙ୍ଗଲ ଆଇନ ଭଙ୍ଗ, ସାଧାରଣସଭା, ଶୋଭାଯାତ୍ରା ଏବଂ ବିକ୍ଷୋଭ, ଖବରକାଗଜ ପ୍ରଚାରପତ୍ର ଓ ବିପ୍ଳବାତ୍ମକ ପୁସ୍ତିକା ପଢ଼ି ଲୋକଙ୍କୁ ବୁଝାଇବା, ଶୃଙ୍ଖଳା ଆଇନ ଅନୁସାରେ କାହାରିକୁ ଗିରଫ କରାଗଲେ ଏକତ୍ରିତ ହୋଇ ଗିରଫ ବ୍ୟକ୍ତିଙ୍କୁ ମୁକ୍ତ କରିବା, ଯାହାରିକୁ ଜୋରିମନା ହେଲେ ସେଥିପାଇଁ ତାଙ୍କ ଘର ନିଲାମ କରାଇନଦେବା ଏବଂ ପୂର୍ବରୁ ଚାଲିଥିବା ଚରକର ଆନ୍ଦୋଳନକୁ ଦୃଢ଼ୀଭୂତ କରାଇବା ଇତ୍ୟାଦି କାର୍ଯ୍ୟ କରିବାପାଇଁ ସ୍ଥିରହେଲା । ସର୍ବୋପରି ପ୍ରଜାମଣ୍ଡଳ ସଭାପତିଙ୍କ ନିର୍ଦ୍ଦେଶକ୍ରମେ ଖଜଣା ଟିକସ ବନ୍ଦ କରିବାପାଇଁ ମଧ୍ୟ ସ୍ଥିରହେଲା । ଅଧିବେଶନ ସମାପ୍ତ ହେବାପରେ ୩ଦିନ ପାଇଁ କୁମ୍ଭାପଡାଠାରେ କର୍ମୀମାନଙ୍କୁ ସତ୍ୟାଗ୍ରହ କରିବାପାଇଁ ତାଲିମ ଦିଆଗଲା । ସତ୍ୟାଗ୍ରହୀ ତାଲିମ ଶିବିର ଚାଲିଥିବା ସମୟରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀର ସମ୍ପାଦକଙ୍କଠାରୁ ପତ୍ରପାଇ ଢେଙ୍କାନାଳ ସତ୍ୟାଗ୍ରହରେ ଯୋଗଦେବା ପାଇଁ ନୟାଗଡ଼ରୁ କର୍ମୀ ଯିବାକଥା ବିଚାର ହୋଇଥିଲା ।

ଅଧ୍ୟାପକ ରଙ୍କାଙ୍କ ନେତୃତ୍ୱରେ ତା ୨୭-୧୨-୩୮ରିନ ନୟାଗଡ଼ରୁ ସତ୍ୟାଗ୍ରହୀମାନେ ତାଙ୍କ ସହିତ ସତ୍ୟାଗ୍ରହରେ ଯୋଗଦେବା ପାଇଁ ବହୁ କର୍ମୀ ଢେଙ୍କାନାଳ ଯିବାପାଇଁ ଇଚ୍ଛା କରିଥିଲେ ମଧ୍ୟ ସ୍ଥାନୀୟ ଅବସ୍ଥା ଦୃଷ୍ଟିରୁ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ରମକୃଷ୍ଣ ଅଧିକାରୀ, ଆନନ୍ଦଚନ୍ଦ୍ର ଦୋର, ବ୍ରଜବନ୍ଧୁ ଶତପଥୀ, ଭୁବନେଶ୍ୱର ଅଧିକାରୀ, ସୂର୍ଯ୍ୟମଣି ମହାପାତ୍ର, କୃପାସିନ୍ଧୁ ପଟ୍ଟନାୟକ, ମାଗୁଣି ସାହୁ, କୁବେର ସାହୁ, ଲକ୍ଷ୍ମଣ ସାନବନ୍ତ, ଶୁକ ବେହେରା, ସର୍ବେଶ୍ୱର କର, ବିଦ୍ୟାଧର ମନ୍ତ୍ରୀ, ବିଶ୍ୱନାଥ ପଟ୍ଟନାୟକ, ଯଦୁନାଥ ନନ୍ଦ ଓ ବଳରମ ମହାପାତ୍ର ପ୍ରମୁଖ ୧୫ଜଣ କର୍ମୀଙ୍କୁ ଢେଙ୍କାନାଳ ସତ୍ୟାଗ୍ରହରେ ଯୋଗ-ଦେବାପାଇଁ ପଠାଇଥିଲେ । ନୟାଗଡ଼ ରଜ୍ୟରେ ସତ୍ୟାଗ୍ରହ ପରିଚ୍ଛଳନା କରିବାପାଇଁ ପ୍ରଜାମଣ୍ଡଳର ବିଶେଷ ଅଧିବେଶନ କାର୍ଯ୍ୟକାରୀ କମିଟିଙ୍କୁ ମଧ୍ୟ ଅଧିକାର ଦେଇଥିଲେ । ସତ୍ୟାଗ୍ରହୀ ଶିବିର ଉଦ୍‌ଯାପନ ହେବା ପରେ ଏହି ଶିବିରରୁ ଢେଙ୍କାନାଳ ସତ୍ୟାଗ୍ରହରେ ଯୋଗଦେବା ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ୧୫ଜଣ କର୍ମୀ ଢେଙ୍କାନାଳ ଅଭିମୁଖେ ଯାତ୍ରାକଲେ ଏବଂ ଅନ୍ୟାନ୍ୟ କର୍ମୀମାନେ ଗ୍ରାମାଞ୍ଚଳରେ ସଂଗଠନ କରିବାପାଇଁ ନିର୍ଦ୍ଦିଷ୍ଟ ଦାୟିତ୍ୱ ବହନକରି ଗାଁକୁ ଗଲେ । ଏହି ସମୟରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶକ୍ରମେ ବାହାର ଲୋକମାନଙ୍କ ଦ୍ୱାର ଢେଙ୍କାନାଳରେ ସତ୍ୟାଗ୍ରହ କରାଇବା କାର୍ଯ୍ୟକ୍ରମ ବନ୍ଦ ହୋଇଯିବାରୁ ନୟାଗଡ଼ର ସତ୍ୟାଗ୍ରହୀମାନେ କଟକଠାରୁ ସାରଙ୍ଗଧରବାବୁଙ୍କ ପରମର୍ଶକ୍ରମେ ଫେରି ଆସିଥିଲେ । କୁମ୍ଭା-ପଡ଼ାରେ ଅନୁଷ୍ଠିତ ହୋଇଥିବା ସତ୍ୟାଗ୍ରହୀ ତାଲିମ ଶିବିରକୁ ଗଞ୍ଜାମ ଜିଲ୍ଲାର କର୍ମୀ ମାଗୁଣୀ ଦାସ ଓ ମହେନ୍ଦ୍ର ପାତ୍ର ପ୍ରମୁଖ ସମସ୍ତ ପ୍ରକାର ସାହାଯ୍ୟ କରିଥିବାରୁ ପ୍ରଜାମଣ୍ଡଳ ପକ୍ଷରୁ ସେମାନଙ୍କୁ କୃତଜ୍ଞତା ଜଣାଇ ଦିଆଯାଇଥିଲା ।

ଜଳାଆଇନ ଭାଙ୍ଗି ପରେ ପରେ ନୟାଗଡ଼ ପ୍ରଜାମଣ୍ଡଳ ସତ୍ୟାଗ୍ରହ କାର୍ଯ୍ୟକ୍ରମ ଗ୍ରହଣ କରିବାରୁ ଏହା ବହୁ ଶିକ୍ଷିତ ଯୁବକ ଓ ଛାତ୍ର ସମାଜକୁ ଉଦ୍‌ବୁଦ୍ଧ କଲା । ଶହ ଶହ ଛାତ୍ର ଏବଂ ଯୁବକ ମିଳିତହୋଇ ସମ୍ମିଳିତ ଯୁବକ ସଂଘ ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠାକରି ଆନ୍ଦୋଳନରେ ଯୋଗଦେବାପାଇଁ ଆଗେଇ ଆସିଲେ ଏବଂ ଅହିଂସା ଭେରୀ ନାମରେ ଏକ ବୁଲେଟିନ ପ୍ରକାଶ କରି ଏବଂ ପ୍ରଚ୍ଚରକରି ରଜାଙ୍କ କାର୍ଯ୍ୟ ବିରୁଦ୍ଧରେ ଜନମତ ଗଠନ କଲେ ।

ବିଶେଷ ଅଧିବେଶନରେ ଗୃହିତ ପ୍ରସ୍ତାବ ପ୍ରଜାମଣ୍ଡଳର ସଭପତି ରଜାଙ୍କୁ ଜଣାଇବା ସଙ୍ଗେ ସଙ୍ଗେ ଯଥାଶୀଘ୍ର ରେଗୁଲେସନ ପ୍ରତ୍ୟାହାର କରି ନେବାପାଇଁ ଦାବୀ କଲେ । ରଜା ପ୍ରଜାମଣ୍ଡଳ ପ୍ରସ୍ତାବକୁ ଗ୍ରହଣ ନକରିବାରୁ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ବିଶେଷ ଅଧିବେଶନର ନିର୍ଦ୍ଦେଶ ମତେ ରେଗୁଲେସନ ଆଇନ ଭଙ୍ଗ କରିବାପାଇଁ ଘୋଷଣା କଲେ । ରାଜ୍ୟସାରା ସଭ, ଶୋଭଯାତ୍ରା ଓ ବିକ୍ଷୋଭ ଚାଲିଲା । ବହୁଳ ପରିମାଣରେ ପ୍ରଚାରପତ୍ର ଓ ଅହିଂସା ଭେରୀ ବୁଲେଟିନ ବଣ୍ଟାଗଲା । ରେଗୁଲେସନ (ଆଇନ) ଭଙ୍ଗ କରିବାରୁ ଭୁବନେଶ୍ୱର ଅଧିକାରୀ, ମାଗୁଣି ପଣ୍ଡା ବୃନ୍ଦାବନ ଶତପଥୀ ପ୍ରମୁଖ ୧୯ଜଣ ସତ୍ୟାଗ୍ରହୀଙ୍କୁ ଶୃଙ୍ଖଳାରକ୍ଷା ଆଇନ ଅନୁସାରେ ଗିରଫ କରାଗଲା । ନନ୍ଦିଘୋରଠାରେ ଗଦାଧର ମହାରଣା ପ୍ରଭୃତି ୧୮ଜଣ ସତ୍ୟାଗ୍ରହୀଙ୍କୁ ନିର୍ମମଭାବରେ ମାଡଦେଇ ଛାଡ଼ ଦିଆଗଲା । ଉମକ୍ଷାଦ୍ଧିଦ କର୍ମୀ ହରିହର ପୃଷ୍ଟି, ଲିଙ୍ଗରାଜ ପ୍ରଧାନ, ମହାଦେବ ଡାକୁଆ ଆଦିଙ୍କୁ ଗିରଫକରି ଜେଲକୁ ନିଆଗଲା । ବେରୁହାଁବାରି ଓ କୁରୁଡାର ବହୁ ସତ୍ୟାଗ୍ରହୀଙ୍କୁ ନିର୍ମମ ମାଡ ଦିଆଗଲା । ପ୍ରଜାମଣ୍ଡଳ ସଭପତି ବାଞ୍ଛାନିଧି ସେନାପତି, ଉପସଭପତି କୁବେର ସାହୁ, ସଂପାଦକ ଭରତ ନାୟକ ଓ ନରସିଂହ ନନ୍ଦ, କାର୍ଯ୍ୟକାରି କମିଟି ସଭ୍ୟ ଶ୍ରୀ ଗୋଦାବରୀଶ ମିଶ୍ରଙ୍କୁ ଗିରିଫକରି ଜେଲକୁ ନିଆଗଲା । ଏସବୁ ସତ୍ତ୍ୱେ ରାଜ୍ୟରେ ସଭ, ଶୋଭଯାତ୍ରା, ବିକ୍ଷୋଭର ଅଭାବ ହେଲନାହିଁ । ଜେଲଭିତରେ ପ୍ରଜାମଣ୍ଡଳ ନେତାମାନଙ୍କୁ ନିର୍ଦ୍ଦୟ ଭାବରେ ମାଡଦିଆଗଲା । ଉପସ୍ଥିତ ପରିସ୍ଥିତି ସଂପର୍କରେ ତା ୨୯-୧୨-୩୮ ଦିନ ପ୍ରଜାମଣ୍ଡଳ କର୍ମୀମାନଙ୍କର ଏକ ବୈଠକ ଓଡଗାଁଠାରେ ଅନୁଷ୍ଠିତ ହୋଇ ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ପର୍କରେ ଆଲୋଚନା ହେଲା ଏବଂ ସତ୍ୟାଗ୍ରହ ପୂର୍ବଭଳି ଚାଲୁ ରଖିବାପାଇଁ ସ୍ଥିର ହେଲା ଏହି ସମୟରେ ସରକାରଙ୍କ ପକ୍ଷରୁ ପ୍ରଚାର ହେଲାଯେ ଜେଲରେଥିବା ନେତାମାନଙ୍କୁ ନୟାଗଡ ବାହାରକୁ ଅନ୍ୟତ୍ର ପଠାଇଦେବାପାଇଁ ରଜା ସ୍ଥିର କରିଛନ୍ତି । ଏହାର ଯେପରି ବହୁଳ ପ୍ରଚାର ହୁଏ, ସେଥିପାଇଁ ରାଜପକ୍ଷ ଲୋକେ ବହୁ ଉଦ୍ୟମ କରିଥିଲେ । ଏହି ପ୍ରଚାର ଶୁଣି ବିଭିନ୍ନ ଅଞ୍ଚଳରୁ ବହୁତ ଲୋକ ଓଡଗାଁ ଆସି ଏହାର ପ୍ରତିକାର ପାଇଁ ବିଚାର ଦାବୀକଲେ । ପ୍ରଜାମଣ୍ଡଳର କର୍ମୀସମ୍ମିଳନୀ ବିଶେଷ ଅଧିବେଶନରେ ଗୃହିତ ପ୍ରସ୍ତାବକୁ ଆଖି ଆଗରେ ରଖି ତା୩୧-୧୨-୩୮ ଦିନ ବନ୍ଦୀମାନଙ୍କୁ ମୁକ୍ତ କରିବା ଉଦ୍ଦେଶ୍ୟରେ ନୟାଗଡର ସମସ୍ତ ପ୍ରଜା ନୟାଗଡ ଟାଉନରେ ଉପସ୍ଥିତ ହେବାପାଇଁ

ନିର୍ଦ୍ଦେଶ ଦେଲେ । ସଙ୍ଗେ ସଙ୍ଗେ ପ୍ରଜାମଣ୍ଡଳର କର୍ମୀମାନେ ଏହି ବାର୍ତ୍ତା ନୟାଗଡ ରାଜ୍ୟରେ ପ୍ରଚାର କରିବା ଫଳରେ ତା ୩୧-୧୨-୩୮ ଦିନ ପ୍ରାୟ ୩୦ହଜାର ଲୋକ ନୟାଗଡ ଟାଉନରେ ଉପସ୍ଥିତ ହୋଇ ରାଜବାଟି କଚେରୀ ଓ ଜେଲର ପ୍ରବେଶ ପଥମାନ ଅବରୋଧ କରି ବସି ପ୍ରଜାମଣ୍ଡଳ ନେତାମାନଙ୍କୁ ମୁକ୍ତି କରିବାପାଇଁ ଦାବି କଲେ । ରାଜା ଓ ରାଜପକ୍ଷ କର୍ମଚାରୀମାନଙ୍କ ଦ୍ୱାରା ନେତାମାନଙ୍କୁ ଅନ୍ୟତ୍ର ନେଇଯିବା କଥା ପ୍ରଚାର କରି ଲୋକଙ୍କୁ ଡରାଇବାର ଯେଉଁ କଳ୍ପନା କରିଥିଲେ, ନୟାଗଡରେ ଏଭଳି ବିରାଟ ଜନସମାଗମ ଦେଖି ରାଜା ଓ ରାଜପକ୍ଷ ଲୋକେ ନିଜର ଭୁଲ ବୁଝିବାପାଇଁ ସେମାନଙ୍କୁ ଅଧିକ ସମୟ ଲାଗିନଥିଲା । ପୋଲିସ୍ ଓ ରାଜକର୍ମଚାରୀମାନେ ବହୁ ତମ୍ବିତୋଫାନ ଦେଖାଇ ଲୋକଙ୍କୁ ଭୟଭୀତ କରାଇବାପାଇଁ ଉଦ୍ୟମ କରି ବିଫଳ ମନୋରଥ ହେଲେ । ନୟାଗଡ ଜନତାଙ୍କ ଦ୍ୱାରା ନୟାଗଡ ସହର ସଂପୂର୍ଣ୍ଣ ଅବରୋଧ ହୋଇଯିବାରୁ ରାଜା ବାଧ୍ୟହୋଇ ରାଜବାଟୀ ସାମନାରେ ଉପସ୍ଥିତ ଥିବା ଜନତାଙ୍କ ନିକଟକୁ ଆସି ସେଠାରେ ଉପସ୍ଥିତ ଥିବା ପ୍ରଜାମଣ୍ଡଳର ମୁଖ୍ୟ କର୍ମୀ ଲକ୍ଷ୍ମଣ ମହାରଣା, ଶ୍ରୀଧର ଦାଶ, କୃଷ୍ଣ ବେହେରା, ଲକ୍ଷ୍ମଣ ସାହୁ ଉଦୟନାଥ ପୃଷ୍ଟି ପ୍ରଭୃତିଙ୍କ ସହିତ ଉପସ୍ଥିତ ପରିସ୍ଥିତି ସମ୍ପର୍କରେ ଆଲୋଚନା କଲେ । ବହୁ ଆଲୋଚନା ପରେ ସ୍ଥିରହେଲା ଯେ ୧-ରାଜା ତା ୩-୧-୩୯ ମଧ୍ୟରେ ସମସ୍ତ ପ୍ରଜାମଣ୍ଡଳ ନେତା ଓ କର୍ମୀମାନଙ୍କୁ ମୁକ୍ତିଦେବେ । ୨-ଶୃଙ୍ଖଳା ଆଇନଭଙ୍ଗରେ ଗିରଫ ହୋଇଥିବା ଓ ଅନ୍ୟାନ୍ୟ ଯେ କୌଣସି ଆଇନାନୁସାରେ ପ୍ରଜାମଣ୍ଡଳ କର୍ମଚାରୀମାନଙ୍କ ନାମରେ ରୁଜୁ ହୋଇଥିବା ସମସ୍ତ ମୋକଦ୍ଦମା ଉଠାଇନେବେ । ଯଥାଶୀଘ୍ର ଲୋକପ୍ରତିନିଧି ଶାସନ ପ୍ରତିଷ୍ଠା କରିବାପାଇଁ ରାଜା ଘୋଷଣା କରିବେ । ପ୍ରଜାମଣ୍ଡଳର ଦାବିମତେ ଜନସାଧାରଣଙ୍କର ସୁବିଧା ହେଲାଭଳି ବ୍ୟବସ୍ଥା କରିବେ ଏବଂ ତା ୯-୧-୩୯ଦିନ ରାଜା ଏକ ଘୋଷଣାପତ୍ର ଜରିଆରେ ଏହା ସର୍ବସାଧାରଣଙ୍କୁ ଜଣାଇଦେବେ । ଏହି ଚୁକ୍ତି ଅନୁସାରେ ରାଜା ସେହିଠାରେ ତା ୯-୧-୩୯ରେ ଏକ ଦରବାରରେ ଏହା ଘୋଷଣା କରିବାକୁ ସ୍ଥିରକରି ଉକ୍ତ ଦରବାରରେ ଯୋଗଦେବା ପାଇଁ ପ୍ରଜାମଣ୍ଡଳକୁ ଅନୁରୋଧ କଲେ । ଜନସାଧାରଣଙ୍କର ଦାବିକ୍ରମେ କେତେଜଣ ପ୍ରଜା ପ୍ରତିନିଧିଙ୍କୁ ଜେଲ୍ ଭିତରକୁ ପଠାଇ ବନ୍ଦୀ ନେତାମାନଙ୍କ ସହିତ ସାକ୍ଷାତ ଆଲୋଚନା କରିବା ପାଇଁ ରାଜା ରାଜି ହେଲେ । ବନ୍ଦୀ ନେତାମାନଙ୍କ ସହିତ ଆଲୋଚନା ପରେ

ପ୍ରଜାମଣ୍ଡଳ ନିର୍ଦ୍ଦେଶକ୍ରମେ ନୟାଗଡ଼ ଜନତା ନୟାଗଡ଼ ଛାଡ଼ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଚୁକ୍ତିମତେ ସମସ୍ତ ବନ୍ଦୀ କର୍ମୀ ଜେଲ୍‌ରୁ ଖଲାସ ହେଲେ ଏବଂ ପ୍ରଜାମଣ୍ଡଳ କର୍ମୀଙ୍କ ନାମରେ ହୋଇଥିବା ମୋକଦ୍ଦମା ପ୍ରତ୍ୟାହୃତ ହେଲା । ରଜାଙ୍କ ସହିତ ହୋଇଥିବା ରାଜିନାମାର ଏକ ବିବରଣୀ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀର ଅବଗତି ନିମନ୍ତେ ସମ୍ପାଦକ ସାରଙ୍ଗଧର ଦାସଙ୍କ ନିକଟକୁ ପଠାଯାଇଥିଲା । ଏହି ଅବସରରେ ଶରଣକୁଳ ଅଞ୍ଚଳର ତ୍ରିଲୋଚନ ଦାଶ, ଦଣ୍ଡପାଣି ମିଶ୍ର ପ୍ରମୁଖ ବହୁ ଯୁବକ ପ୍ରଜାମଣ୍ଡଳ ସଭ୍ୟ ଭାବରେ କାର୍ଯ୍ୟ କରିବାପାଇଁ ଶପଥ ଗ୍ରହଣ କଲେ ।

ରଜାଙ୍କ ସହିତ ହୋଇଥିବା ଚୁକ୍ତିର ବିଷୟବସ୍ତୁ ସମ୍ପାଦକ ସାରଙ୍ଗଧର ଦାସ ପାଇ ତା ୪-୧-୩୯ରେ ପ୍ରଜାମଣ୍ଡଳ ସଭାପତିଙ୍କୁ ଜଣାଇଦେଲେ ଯେ ତା ୯-୧-୩୯ରେ ଘୋଷଣା କରିବେ ବୋଲି ରଜା ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି, ମୋର ମନେହେଉଛି ତାଙ୍କର ମତଲବ ଅନ୍ୟ ପ୍ରକାରର । ଏ ମଧ୍ୟରେ ସୈନ୍ୟ ଓ ପୋଲିସ୍ ଆଣିପାରିବେ । ତା ୯ରିଖରେ ଜଙ୍ଗଲ ଇତ୍ୟାଦିର ସାମାନ୍ୟ ସୁବିଧା କରିଦେବେ । ସେଥିରେ ଆପଣମାନେ ସନ୍ତୁଷ୍ଟ ହେବେନାହିଁ । ସେଠାରୁ ଚାଲିବ ଦମନ । ଅତଏବ ସାବଧାନ ହୁଅନ୍ତୁ । ସଂଗଠନକୁ ଦୃଢ଼ୀଭୂତ କରିବାକୁ ଓ ଲୋକଙ୍କୁ ଜାଗ୍ରତ ରଖିବାକୁ ବ୍ୟବସ୍ଥା କରନ୍ତୁ । ଡାକ ପାଇବା ଓ ଦେବା ସକାଶେ ସମସ୍ତ ରାଜ୍ୟବ୍ୟାପୀ ଗୋଟିଏ ଭିନ୍ନ ବିଭାଗ ଖୋଲନ୍ତୁ । କିଛି ଟଙ୍କା ଆଦାୟ କରି ପଅଣ୍ଟୁତି ଡାକଘରେ ରଖିବାକୁ ହେଲା କରିବେ ନାହିଁ । ଡାକ ବିଭାଗରେ ଯେଉଁ-ମାନେ କାମକରିବେ, ସେମାନଙ୍କର ପ୍ରଜାମଣ୍ଡଳର ଅନ୍ୟ କୌଣସି କାର୍ଯ୍ୟ ସଙ୍ଗେ ସମ୍ପର୍କ ରହିବ ନାହିଁ । ସେମାନେ ସଭା ସମିତିକୁ ଯିବେନାହିଁ । କର୍ମକର୍ତ୍ତାଙ୍କ ସହିତ ପ୍ରତ୍ୟକ୍ଷ ଦେଖା ହେବେନାହିଁ । ଏହିପରି ଗୋଟିଏ ଡାକ ବିଭାଗ ଆନ୍ଦୋଳନ ପାଇଁ ନିତାନ୍ତ ଦରକାର । ନହେଲେ ଦମନ ଆରମ୍ଭ ହେଲେ ଦେଖିବେ ବିଭିନ୍ନ ଅଞ୍ଚଳ ସଙ୍ଗେ ସମ୍ପର୍କ ଏକାବେଳକେ ତୁଟିଯିବ । କେଉଁଠି କ'ଣ ହେଉଛି ଜାଣିପାରିବେ ନାହିଁ । ବର୍ତ୍ତମାନ ସତ୍ୟାଗ୍ରହ କେବଳ ସଭା ଓ ଶୋଭାଯାତ୍ରା କରିବା, ଅହିଂସା ଭେରୀ ବାଣ୍ଟିବା ଏହି ସବୁରେ ରଖନ୍ତୁ । ଖଜଣା ନଦେବା କଥା ମୋଟେ ପକାନ୍ତୁ ନାହିଁ । ସେ ବଡ଼ ବିପଜ୍ଜନକ କଥା । କେତେ ଲୋକ ସେପରି ଡିଆରି

ତିଆରି ହୋଇଛନ୍ତି, ଯେକି ସମତିବାଦର ମମତା ଭୁଲିଯିବେ । ନାଗରିକ ସ୍ୱାଧୀନତା ଓ ଦାର୍ୟିତ୍ୱ ମୂଳକ ଶାସନ ଏ ଦୁଇଟି ଆଗରେ ରଖି କଥାବାର୍ତ୍ତା କରନ୍ତୁ । ସାରଙ୍ଗଧରବାବୁଙ୍କର ଏ ଉପଦେଶ ପ୍ରଜାମଣ୍ଡଳ ପକ୍ଷେ ଅତ୍ୟନ୍ତ ପ୍ରୟୋଜନୀୟ ହୋଇଥିଲା । ତଦନୁସାରେ କେତେକ ଗ୍ରାମ୍ୟ କର୍ମଚାରୀଙ୍କ ମାଧ୍ୟମରେ ପ୍ରଜାମଣ୍ଡଳ ଗୋଟିଏ ଗୁପ୍ତ ଡାକ ବିଭାଗ ସୃଷ୍ଟି କରିଥିଲେ ଓ ଓଡଗାଁ ସର୍ବରକାର ପାଣ୍ଡୁଚରଣ ମହାନ୍ତିଙ୍କ ନିକଟରେ ପ୍ରଜାମଣ୍ଡଳର ସମସ୍ତ ଅର୍ଥ ଜମା ରଖିଥିଲେ ।

ପ୍ରଜାମଣ୍ଡଳ ଦାବିଗୁଡ଼ିକୁ ବହୁ ପରିମାଣରେ ଗ୍ରହଣ କରି ରାଜ୍ୟରେ ଲୋକପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠା କରିବା ପାଇଁ ରାଜାଙ୍କ କଥାବାର୍ତ୍ତାରୁ ବେଶ୍ ଜଣାପଡ଼ୁଥିଲା । ତା ୪-୧-୩୯ ଦିନ ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ୍ ହଠାତ ନୟାଗଡ଼ ଆସି ସମ୍ଭବତଃ ଏ ଦିଗରେ ଅଧିକ ଅଗ୍ରସର ନ ହେବାପାଇଁ ରାଜାଙ୍କୁ ପରାମର୍ଶ ଦେଲେ । ଯାହାକି ରାଜାଙ୍କର ତା ୯-୧-୩୯ ଘୋଷଣାରୁ ପରିଷ୍କାର ଜଣାଗଲା ।



## ରଣପୁରରେ ବେଜଲ୍‌ଗେଟ୍‌ଙ୍କର କୁତକର୍ମର ଫଳଭୋଗ

ରଣପୁର ରାଜା ରଣପୁର ପ୍ରଜାମଣ୍ଡଳର ନେତାମାନଙ୍କୁ ବନ୍ଦୀକରି ରଖିବାରୁ ରଣପୁର ପ୍ରଜାମଣ୍ଡଳ ନିର୍ଦ୍ଦେଶକ୍ରମେ ତା ୫-୧-୩୯ ଦିନ ପ୍ରାୟ ୧୦ହଜାର ଲୋକ ରାଜବାଟୀ ସାମନାରେ ଏକତ୍ରିତହୋଇ ବନ୍ଦୀ ନେତାମାନଙ୍କର ମୁକ୍ତି ଦାବି କରୁଥିଲେ । ମେଜର ବେଜଲଗେଟ୍ ଏହି ପରିପ୍ରେକ୍ଷୀରେ ସମସ୍ତ ପୋଲିସ୍ ବାହିନୀ ସହିତ ସେହିଦିନ ନୟାଗଡ଼ରୁ ରଣପୁର ଅଭିମୁଖେ ଯାତ୍ରାକଲେ । ସାମାନ୍ୟ କାରଣରୁ ଲୋଧାଚୂଆ ଗ୍ରାମବାସୀଙ୍କୁ ଫୌଜଙ୍କ ଦ୍ୱାରା ନିର୍ମମ ଭାବେ ମାଡ ଦିଆଇଲେ । ମାଡଖାଇ ବହୁ ଲୋକ ଭୟଙ୍କର ଭାବେ କ୍ଷତବିକ୍ଷତ ହେଲେ ଏବଂ ଜଣଙ୍କର ଅବସ୍ଥା

ଅତ୍ୟନ୍ତ ସାଂଘାତିକ ହୋଇଗଲା । ମୁମୂର୍ଷୁ ଲୋକଙ୍କର କୌଣସି ବ୍ୟବସ୍ଥା ନକରି ମେଜର ବେଜଲ ଗେଟ ରଣପୁରଗଡକୁ ଚାଲିଯିବା ପରେ ଲୋଧାଚୁଆରେ ଆଘାତ ପାଇଥିବା ବ୍ୟକ୍ତିମାନଙ୍କର ପରିବାରର ଲୋକେ ସେମାନଙ୍କୁ ଚିକିତ୍ସାପାଇଁ ରଣପୁର ଡାକ୍ତରଖାନାକୁ ନେଲେ । ମୁମୂର୍ଷୁ ଲୋକଙ୍କୁ ଦେଖିବାପାଇଁ ବହୁଲୋକ ତାଙ୍କ ପାଖକୁ ଗଲେ । ଲୋଧାଚୁଆ ଲୋକଙ୍କୁ ଅକାରଣରେ ପଲିଟିକାଲ ଏଜେଣ୍ଟ ସାଂଘାତିକ ଭାବେ ମାଡ ମରାଇଥିବାରୁ ଲୋକଙ୍କ ମନରେ ପ୍ରବଳ ଉତ୍ତେଜନା ଦେଖାଦେଲା । ଏହି ପରିପ୍ରେକ୍ଷୀରେ ବେଜଲଗେଟ୍ କୌଣସି ପ୍ରକାର ଚିନ୍ତା ନକରି ଆହତ ବ୍ୟକ୍ତିମାନଙ୍କୁ ଦେଖିବାକୁ ଯାଇ ସମବେତ ଜନତା ଉପରେ ଗୁଳି ଚଳାଇଲେ । ତାଙ୍କ ଗୁଳିଷ୍ଫେଟରେ ଅର୍ଜୁନ ନାୟକ ଚଳିପଡିବାରୁ ଆତ୍ମରକ୍ଷା ପାଇଁ ଉପସ୍ଥିତ ଜନତା ଅନନ୍ୟୋପାୟ ହୋଇ ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ୍‌ଙ୍କୁ ପିଟିପିଟି ମାରିଦେଲେ । ଏହି ପରିପ୍ରେକ୍ଷୀରେ କଂଗ୍ରେସ ନେତା ହରେକୃଷ୍ଣ ମହତାବ ରଣପୁର ଆସୁଥିଲେ । ବାଟରେ ବେଜଲଗେଟ ହତ୍ୟା କଥା ଶୁଣିବା ସତ୍ତ୍ୱେ ସତାସତି ରଣପୁର ଆସି ରଣପୁର ରାଜ୍ୟର ଲୋକମାନେ ଗଡ୍ୟାତ୍ଛାଡ ବାହାରକୁ ଚାଲିଯିବା ପାଇଁ ପରାମର୍ଶ ଦେଲେ । ତାଙ୍କ ପରାମର୍ଶ କ୍ରମେ ରଣପୁର ରାଜ୍ୟର ଆବାଳବୃଦ୍ଧ-ବନିତା ପଡୋଶୀ ରାଜ୍ୟ ନୟାଗଡ ଓ ପୁରୀଜିଲ୍ଲା ବେଗୁନିଆ, ବୋଲଗଡ ଓ ଟାଙ୍ଗୀ ଥାନାମାନଙ୍କୁ ଆଶ୍ରୟ ପାଇଁ ଚାଲିଯାଇଥିଲେ । ଏହି ଦୁର୍ଦ୍ଦିନ ସମୟରେ ନୟାଗଡ ପ୍ରଜାମଣ୍ଡଳ ନୟାଗଡକୁ ଚାଲିଆସିଥିବା ରଣପୁର ଭାଇମାନଙ୍କୁ ସ୍ୱାଗତ କରି ନିଜ ନିଜ ଗୃହରେ ଆଶ୍ରୟ ଦେଇଥିଲେ ।

ଚୁକ୍ତିମତେ ରାଜା ମା ୯-୧-୩୯ଦିନ ଦରବାର କରି ଏକ ଘୋଷଣା କଲେ । ଅବାଧ୍ୟରେ କୃଷିଜାତ ଦ୍ରବ୍ୟ ବିକ୍ରୀପାଇଁ ସୁବିଧା ଦେଲେ । ପାନ ଠିକା ଉଠାଇଦେଲ ଓ ଅନ୍ୟାନ୍ୟ କିଛି ସୁବିଧା ଦେବାପାଇଁ ଘୋଷଣାକଲେ । କିନ୍ତୁ ଲୋକପ୍ରତିନିଧିମାନଙ୍କ ହାତରେ ଶାସନ କ୍ଷମତା ଦେବାପାଇଁ ଯେଉଁ ଚୁକ୍ତି କରିଥିଲେ, ତାହା ଲଙ୍ଘନ କରି ଗୋଟିଏ କ୍ଷମତାହୀନ ପରାମର୍ଶଦାତା କମିଟି ଗଠନ କରିବା ପାଇଁ ଘୋଷଣାକଲେ । ଏତଦ୍ୱାର ରାଜା ନିଜର ଚୁକ୍ତି ଭଙ୍ଗକରିଥିବାରୁ ଉକ୍ତ ଘୋଷଣା ପ୍ରଜାମଣ୍ଡଳକୁ ସନ୍ତୁଷ୍ଟ କରିପାରିଲା ନାହିଁ ।

ପଲିଟିକାଲ ଏଜେଣ୍ଟଙ୍କ ମୃତ୍ୟୁ ସମଗ୍ର ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କଲା । ଏହି ପରିସ୍ଥିତିରେ ଭବିଷ୍ୟତ କର୍ମପନ୍ଥା ଓ ନୟାଗଡ ରଜାଙ୍କର ଘୋଷଣାପତ୍ର ସମ୍ପର୍କରେ ଚର୍ଚ୍ଚା କରିବାପାଇଁ ନୟାଗଡ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ବୈଠକ ତା ୧୦-୨-୩୯ଦିନ ଡକାଯାଇଥିଲା । ଉକ୍ତ ବୈଠକରେ ପ୍ରଜା ସମ୍ମିଳନୀର ସମ୍ପାଦକ ନୟାଗଡ ପ୍ରଜାମଣ୍ଡଳ ସଭାପତିଙ୍କୁ ଦେଇଥିବା ଚିଠି ବିଶଦଭାବରେ ଆଲୋଚିତ ହେଲା । ସେ ଲେଖିଥିଲେ "ରଣପୁରରେ ଯେଉଁ ବିଷମକାଣ୍ଡ ହୋଇଗଲା ସେଥିଯୋଗୁଁ ମୋର ବିନୀତ ଅନୁରୋଧ ଯେ ଆପଣଙ୍କ ଷ୍ଟେଟ୍‌ରେ ବର୍ତ୍ତମାନ ତୁରନ୍ତ ସତ୍ୟାଗ୍ରହ ବନ୍ଦକରନ୍ତୁ ।" ଏ ସମସ୍ତ ସଭାସମିତି କରନ୍ତୁ ନାହିଁ । ତାଙ୍କର ଏ ଚିଠିର ବିଷୟବସ୍ତୁର ବହୁ ଆଲୋଚନା ପରେ କିଛିଦିନପାଇଁ ସତ୍ୟାଗ୍ରହ ବନ୍ଦ କରିବା ପାଇଁ କାର୍ଯ୍ୟକାରୀ କମିଟି ସ୍ଥିରକଲେ ଏବଂ ଗ୍ରାମାଞ୍ଚଳରେ ଗଠନମୂଳକ କାର୍ଯ୍ୟକରିବାପାଇଁ କର୍ମୀମାନଙ୍କୁ ନିର୍ଦ୍ଦେଶଦେଲେ । ବେଜଲଗେଟ୍‌ଙ୍କ ମୃତ୍ୟୁପରେ ନୟାଗଡକୁ ବହୁ ଗୁଳିଗୁଳା ବାରୁଦ ଗଚ୍ଛିତ ରଖିବାପାଇଁ ଅଣାଗଲା ଏବଂ ନୟାଗଡ ପୋଲିସ୍‌ବାହିନୀଙ୍କ ସଂଖ୍ୟା ବହୁଗୁଣ ବଢାଇ ଦିଆଗଲା ଏହାଫଳରେ ସାରଙ୍ଗବାବୁଙ୍କର ଆଶଙ୍କା ସତରେ ପରିଣତ ହେଲା ।

ମେଜର ବେଜଲଗେଟ୍‌ଙ୍କ ହତ୍ୟା ଏବଂ ତାଳଚେରର ଅର୍ଦ୍ଧ ଲକ୍ଷାଧିକ ଲୋକଙ୍କର ରାଜ୍ୟତ୍ୟାଗ ବିଷୟ ବ୍ରିଟିଶ୍ ପାର୍ଲାମେଣ୍ଟରେ ଆଲୋଚିତ ହେବାରୁ ସରକାର ଯେଉଁ ଉତ୍ତର ଦେଲେ, ତାହା ସନ୍ତୋଷଜନକ ନ ହେବାରୁ ପ୍ରକୃତ ସତ୍ୟ ଅନୁସନ୍ଧାନ କରି ବୁଝିବାପାଇଁ ବ୍ରିଟିଶ୍ ପାର୍ଲାମେଣ୍ଟ ସଭ୍ୟା ମିସ୍ ଆଗାଥା ହରିସନ୍ ଓଡ଼ିଶା ଆସି ଶ୍ରୀ ହରେକୃଷ୍ଣ ମହତାବଙ୍କ ସହଯୋଗୀତାରେ ଏ ସବୁର ଅନୁସନ୍ଧାନ କରୁଥିଲେ । ଏହି ପରିପ୍ରେକ୍ଷୀରେ ନୟାଗଡ ପ୍ରଜାମଣ୍ଡଳ ପକ୍ଷରୁ ଶ୍ରୀ ନାରାୟଣ ନନ୍ଦ, ମିସ୍ ଆଗାଥା ହରିସନ୍‌ଙ୍କୁ ଭେଟି ନୟାଗଡ ଆନ୍ଦୋଳନର ବିବରଣୀ ତାଙ୍କୁ ବୁଝାଇଥିଲେ ଏବଂ ନୟାଗଡ ରଜା ଚୁକ୍ତି ଭଙ୍ଗକରି ରାଜ୍ୟର ପୋଲିସ୍‌ବାହିନୀକୁ ଅଧିକ ଶକ୍ତିଶାଳୀ କରି ରାଜ୍ୟ-ବାସୀଙ୍କର କିଭଳି ଅସନ୍ତୋଷର କାରଣ ହୋଇଛନ୍ତି ତାହା ମଧ୍ୟ ବୁଝାଇ ଦେଇଥିଲେ ।



# ପରାମର୍ଶଦାତା କମିଟି ନିର୍ବାଚନ

ରାଜ୍ୟର ଏହି ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ପରାମର୍ଶଦାତା ସଭାର ନିର୍ବାଚନ ପାଇଁ ନିର୍ଘଣ୍ଟ ସ୍ଥିରକରି ରାଜା ଇସ୍ତାହାର ପ୍ରକାଶକଲେ । ଏଭଳି ଏକ ଆଜ୍ଞାବହ କ୍ଷମତାହୀନ ସଭାକୁ ନିର୍ବାଚିତ ହୋଇ, ଯାଇ ଅପଦସ୍ଥ ହେବା ଉଚିତ୍ ମନେନକରି ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ନିର୍ବାଚନ ବର୍ଜନ କଲେ । ରାଜା କୌଣସିମତେ ପ୍ରଜାମଣ୍ଡଳକୁ ସଂପୃକ୍ତ କରି ଅପଦସ୍ଥ କରିବା ପାଇଁ ଇଚ୍ଛା କରିଥିବାରୁ ଏ ସମ୍ପର୍କରେ ଅପୋଷ ଆଲୋଚନା କରିବାପାଇଁ ଶ୍ରୀ ଲିଙ୍ଗରାଜ ମିଶ୍ର ଓ ବ୍ରଜବନ୍ଧୁ ଦାଶଙ୍କୁ ପ୍ରଜାମଣ୍ଡଳ ସଭାପତିଙ୍କ ନିକଟକୁ ପଠାଇଲେ । ନିର୍ବାଚନରେ ପ୍ରଜାମଣ୍ଡଳ ଭାଗ ନେବନାହିଁ ଏହା ସ୍ଥିର ହୋଇଥିବାରୁ ପ୍ରଜାମଣ୍ଡଳ ସଭାପତି ନିର୍ବାଚନରେ ଭାଗ ନେବାପାଇଁ ବା ରାଜାଙ୍କ ସହିତ ଏ ସମ୍ପର୍କରେ ଆଲୋଚନା କରିବାପାଇଁ ମନାକରିଦେଲେ ।

ମେଜର ବେଜଲଗେଟ୍‌ଙ୍କ ହତ୍ୟାପରେ ରଣପୁରକୁ ଆସିଥିବା ସୈନ୍ୟବାହିନୀ ମଧ୍ୟରୁ ୬ଟା ଟ୍ରକ୍‌ରେ ଅନୁମାନ ୩୩ଜଣ ସୈନ୍ୟଙ୍କୁ ସଙ୍ଗରେ ଧରି ଜଣେ ଗୋଇନ୍ଦା ଇଂରେଜ କର୍ମଚାରୀ ନୟାଗଡ ରାଜ୍ୟରେ ପ୍ରବେଶକଲେ । ଏହିଦଳ ରଣପୁରରୁ ଆସି ଗୋଡପଡା ଗ୍ରାମ ଭିତରେ ମାର୍ଚ୍ଚକରି, ଯାଇ ଗୋଡପଡା ଥାନା ଭିତରେ ଅବସ୍ଥାନ କଲେ । କିଛି ସମୟପରେ ଶ୍ରୀଧର ଦାଶଙ୍କୁ ଡକାଇ ନେଇ ତାଙ୍କୁ ନାନାପ୍ରକାର ଭୟ ଦେଖାଇବା ସଙ୍ଗେ ସଙ୍ଗେ ଆନ୍ଦୋଳନର କାରଣ ସମ୍ପର୍କରେ ପଚାରି ବୁଝିଥିଲେ । ତତ୍‌ପରେ ଏହି ପୋଲିସ୍‌ବାହିନୀ ଶରଣକୁଳ, ଓଡଗାଁ, ବାହାଡାଝୋଲା ଗ୍ରାମାଞ୍ଚଳରେ ମଧ୍ୟ ମାର୍ଚ୍ଚକରି ଯାଇଥିଲେ । ଓଡଗାଁ-ଠାରେ ଭରତ ନାୟକ, ଲକ୍ଷ୍ମଣ ମହାରଣା ପ୍ରମୁଖ ଏବଂ ବାହାଡାଝୋଲା-ଠାରେ କୁବେର ସାହୁଙ୍କ ସହିତ ପ୍ରଜାମଣ୍ଡଳ ଦାବି ସମ୍ପର୍କରେ ଉକ୍ତ ଗୋଇନ୍ଦା ଅଫିସର ବହୁ ଆଲୋଚନା କରିଥିଲେ ।

ରାଜାଙ୍କର ଅର୍ଥର ଅନାଟନ ଦେଖାଦେବାରୁ ସର୍ବରକାର ଜାଗିରି ଜମି ସର୍ବରକାରଙ୍କ ଠାରୁ ଉଚ୍ଛେଦକରି ନିଲାମ ଆଦେଶ ଦେଲେ । ଏତଦ୍ୱାରା ବହୁତ ସର୍ବରକାର ସର୍ବସ୍ୱାନ୍ତ ହେଉଥିବାରୁ ରାଜାଙ୍କର ଏଭଳି କାର୍ଯ୍ୟରେ ପ୍ରଜାମଣ୍ଡଳ ତୀବ୍ର ପ୍ରତିବାଦ କରିଥିଲା ଏବଂ ସର୍ବରକାରମାନେ ରାଜାଙ୍କର ଏତାଦୃଶ କାର୍ଯ୍ୟରେ ତୀବ୍ର ଅସନ୍ତୋଷ ପ୍ରକାଶ କରିବାରୁ ସେମାନଙ୍କୁ ଏକ ପଞ୍ଚମାଂଶ ଜମି ଦେବାପାଇଁ ରାଜା ପୁନର୍ବାର ଆଦେଶ ଦେଲେ । ମାତ୍ର ଏହି ଜମିର ପରିମାଣ ପାଞ୍ଚ ଏକରରୁ ଅଧିକ ହେବନାହିଁ ବୋଲି ମଧ୍ୟ ବ୍ୟବସ୍ଥା କରିଥିଲେ । ସର୍ବରକାରମାନେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ରାଜାଙ୍କ ଆଦେଶମତେ କିଛି କିଛି ଜମି ପାଇବା ପରେ ଅବଶିଷ୍ଟ ଯେଉଁ ବିପୁଳ ପରିମାଣର ଜମି ବଳକା ରହିଲା, ରାଜା ତନ୍ମଧ୍ୟରୁ କେତେକ ଜମି ନିଜ ପରିବାର ଲୋକଙ୍କ ନାମରେ ରେକର୍ଡ କରାଇ ଅବଶିଷ୍ଟ ଜମିକୁ ନିଲାମ କରାଇ ଦେଲେ ।

ତା ୯-୧-୩୯ ଘୋଷଣାମତେ ରାଜା ଯେଉଁ ପରାମର୍ଶଦାତା ସଭା ଘୋଷଣା କରିଥିଲେ ପ୍ରଜାମଣ୍ଡଳ ତାହା ଗ୍ରହଣଯୋଗ୍ୟ ନୁହେଁ ବୋଲି ଘୋଷଣା କରିବା ସତ୍ତ୍ୱେ ତା ୫-୩-୩୯ ଦିନ ରାଜା ଏକ ଇସ୍ତାହାର ପ୍ରକାଶ କରି ତା ୧୫-୪-୩୯ରେ ପରାମର୍ଶଦାତା ସଭା ପାଇଁ ଭୋଟ ଗ୍ରହଣ କରିବାକୁ ସାଧାରଣରେ ଜଣାଇଲେ । ନିର୍ବାଚନରେ ପ୍ରଜାମଣ୍ଡଳ ପକ୍ଷରୁ କୌଣସି ଲୋକ ପ୍ରାର୍ଥୀ ନ ହେବାରୁ ରାଜା ତାଙ୍କ ପକ୍ଷର ଲୋକଙ୍କୁ ପ୍ରାର୍ଥୀ କରାଇ ନିର୍ବାଚନ କରାଇନେଲେ । ତା ୩୦-୪-୩୯ ଦିନ ରାଜା ପରାମର୍ଶ-ଦାତା ସଭା ଉଦ୍‌ଘାଟନ କରି ଚରାକରରୁ ବହୁପରିମାଣ ରକ୍ଷୀମାନଙ୍କୁ ରିହାତି ଦେଲେ । ଜଙ୍ଗଲ କଟକଣା କେତେକ ପରିମାଣରେ କୋହଳ କରିଦେଇଥିଲେ । ରୟତ ଜମିରୁ ଏକ ଅଣା ରୋଡ ସେସ୍ ଛାଡ କରିଦେଲେ । ଏତଦ୍ୱାରା ସେ ପ୍ରଜାମଣ୍ଡଳର ନ୍ୟାୟସଙ୍ଗତ ଦାବିକୁ କିୟଦଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ପରୋକ୍ଷ ଭାବେ ପ୍ରଜାମଣ୍ଡଳ ଉପରେ ଗାଳିବର୍ଷଣ କରିଥିଲେ ଏବଂ ଭବିଷ୍ୟତରେ ଆନ୍ଦୋଳନ ହେଲେ ଶକ୍ତି ପ୍ରୟୋଗ କରିବାପାଇଁ ଧମକ ଦେଇଥିଲେ । ପରେ ପରେ ଗ୍ରାମ-ମାନଙ୍କରେ ପଞ୍ଚାୟତ ପ୍ରତିଷ୍ଠା କରିବାପାଇଁ ଘୋଷଣା କରାଯାଇଥିଲା ।

ତା ୨୦-୫-୩୯ ଦିନ ପ୍ରଜାମଣ୍ଡଳର ଏକ ସ୍ୱତନ୍ତ୍ର ଅଧିବେଶନ ଗୋଡପଡାଠାରେ ଅନୁଷ୍ଠିତ ହେଲା । ପ୍ରୋକ୍ତ ଅଧିବେଶନରେ ରଜା ତା ୩୦-୪-୩୯ ଘୋଷଣା ମତେ ରାଜ୍ୟରେ ପଞ୍ଚାୟତ ଗଠନ କରିବାପାଇଁ ଯେଉଁ ନିର୍ଦ୍ଦେଶ ଦେଇଛନ୍ତି, ଗ୍ରାମମାନଙ୍କରେ ପ୍ରଜାମଣ୍ଡଳ ପକ୍ଷରୁ ପଞ୍ଚାୟତ ଥିବାରୁ ରଜାଙ୍କଦ୍ୱାରା ଘୋଷିତ ପଞ୍ଚାୟତ ନିର୍ବାଚନରେ ପ୍ରଜାମଣ୍ଡଳ ଭାଗ ନନେବାପାଇଁ ସ୍ଥିରହେଲା । କୁମ୍ଭାପଡା ଅଧିବେଶନରେ ଗୃହୀତ ସତ୍ୟାଗ୍ରହ କାର୍ଯ୍ୟକ୍ରମକୁ ବିସ୍ତୃତଭାବେ କାର୍ଯ୍ୟକାରୀ କରାଇବା ନିମିତ୍ତ ଏବଂ ଶକ୍ତିମତେ ଚାନ୍ଦା ଆଦାୟ କରିବା ନିମିତ୍ତ ବଡଦେଶ ଦୟାନିଧି ନନ୍ଦ, କାନ୍ତମାଳ ଗୋଦାବରୀଶ ମିଶ୍ର, ଗୋଡପଲ୍ଲୀ କୁବେର ସାହୁ, କୁରୁଡା ସୁଦାମ ଚରଣ ବାରିକ, ଗଣ୍ଡିବେଡ ସାରଙ୍ଗଧର ଆଚାର୍ଯ୍ୟ, ହୁନାମୁହିଁ ନାରାୟଣ ନନ୍ଦ, ପଞ୍ଚପଲ୍ଲୀ ସଦାଶିବ ଷଡଙ୍ଗୀ, ମାଳଅଞ୍ଚଳ ପୁନିଆ ମଲିକଙ୍କ ଉପରେ ନ୍ୟସ୍ତ କରାଗଲା । ସେମାନେ ୧୫ଦିନ ମଧ୍ୟରେ ସମସ୍ତ କାର୍ଯ୍ୟ ଶେଷ କରିବାପାଇଁ ଅନୁରୋଧ କରାଗଲା । ଅନ୍ୟ ଏକ ପ୍ରସ୍ତାବରେ କାର୍ଯ୍ୟକାରୀ କମିଟିକୁ ଅଧିକ ପ୍ରତିନିଧିମୂଳକ କରିବାପାଇଁ ନିମ୍ନଲିଖିତ ସଭ୍ୟମାନଙ୍କୁ କାର୍ଯ୍ୟକାରୀ କମିଟିର ସଭ୍ୟଭାବେ ଗ୍ରହଣ କରାଗଲା । ସଭାପତି ବାଞ୍ଛାନିଧି ସେନାପତି, ସମ୍ପାଦକ ଭରତ ନାୟକ, ସଭ୍ୟମାନେ ହେଲେ, ଶ୍ରୀଧର ଦାଶ, ପଦ୍ମନାଭ ଖଣ୍ଡେଇ, ଶୁକ୍ର ବେହେରା, ସାରଙ୍ଗଧର ଆଚାର୍ଯ୍ୟ, ଭରତ ସାହୁ, ସୁଦାମ ଚରଣ ବାରିକ, ଭିକ୍ଷାକାରୀ ପଣ୍ଡା, କୁବେର ସାହୁ, ସୁଦର୍ଶନ ପୃଷ୍ଟି ଜନାର୍ଦ୍ଦନ ପୁରୁର୍ଷ୍ଣି, ଲକ୍ଷ୍ମଣ ମହାରଣା, ନରସିଂହ ନନ୍ଦ, ରାମକୃଷ୍ଣ ଅଧିକାରୀ, କାଶୀନାଥ ପଣ୍ଡା, ନାରାୟଣ ନନ୍ଦ, ବ୍ରଜବନ୍ଧୁ ଶତପଥୀ, ସଦାଶିବ ଷଡଙ୍ଗୀ, ଗୋଦାବରୀଶ ମିଶ୍ର, ମଦନମୋହନ ସେନା, ତ୍ରିଲୋଚନ ଦାଶ, ଲକ୍ଷ୍ମୁ ବେହେରା, ପୁନିଆ ମଲିକ ଓ ନରୋତ୍ତମ ଜାନି ।

ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଗଠିତ ଓଡ଼ିଶା ଗଡଜାତ ତଦନ୍ତ କମିଟି ତାଙ୍କ ରିପୋର୍ଟ ଏତିକିବେଳେ ଓଡ଼ିଶା ଗଡଜାତ ପ୍ରଜା-ସମ୍ମିଳନୀକୁ ଦେଲେ । ଉକ୍ତ ରିପୋର୍ଟରେ ଗଡଜାତମାନଙ୍କରେ ଘଟୁଥିବା ଅନ୍ୟାୟ ଅତ୍ୟାଚାରର ସଂପୂର୍ଣ୍ଣ ଲୋମହର୍ଷଣକାରୀ ବିବରଣୀ ସହ ଗଡଜାତମାନଙ୍କର ଶାସନତାନ୍ତ୍ରିକ ଚିତ୍ର ନିଖୁଣ ଭାବରେ ପ୍ରକାଶିତ ହୋଇଥିଲା । ଉକ୍ତ ଗଡଜାତମାନଙ୍କର ସ୍ଥିତି, ଆୟ, ଆୟତନ ଦୃଷ୍ଟିରୁ ଏମାନେ ସ୍ୱତନ୍ତ୍ରଭାବେ ଶାସନ ଚଳାଇବା ଯୁକ୍ତିଯୁକ୍ତ ମନେନକରି ପ୍ରୋକ୍ତ

ଗଡଜାତଗୁଡ଼ିକୁ ଜନସାଧାରଣଙ୍କ ହିତଦୃଷ୍ଟିରୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବାପାଇଁ ଏହି କମିଟି ମତପ୍ରକାଶ କରିଥିଲେ । ଏହି ରିପୋର୍ଟ ପ୍ରକାଶ ହେବା ପରେ ପରେ ରଜାମାନଙ୍କର ରୂପ ସର୍ବସାଧାରଣରେ ପ୍ରକାଶ ହୋଇଯାଇଥିଲା । ନୟାଗଡ ପ୍ରଜାମଣ୍ଡଳ ଉକ୍ତ ରିପୋର୍ଟ ବିଷୟବସ୍ତୁକୁ ବହୁ ଆଲୋଚନା କରି ତା ୪-୯-୩୯ଦିନ କାର୍ଯ୍ୟକାରୀ କମିଟିରେ ଏହା ଗ୍ରହଣ କରିଥିଲେ ।

ରଜାଙ୍କଦ୍ୱାରା ଗଠିତ କ୍ଷମତାହୀନ ପରାମର୍ଶଦାତା ସଭାକୁ ପ୍ରଜାମଣ୍ଡଳ ବର୍ଜନ କରିଥିବାରୁ ନିର୍ବାଚନରେ କେତେକ ରାଜପକ୍ଷ ବ୍ୟକ୍ତି ନିର୍ବାଚିତ ହୋଇଥିଲେ ଉକ୍ତ ପରାମର୍ଶଦାତା ସଭାରେ ନିର୍ବାଚିତ ଲୋକଙ୍କ ଅପେକ୍ଷା ମନୋନୀତ ସଭ୍ୟ ଅଧିକ ଥିବାରୁ ଏବଂ ବହୁମତରେ ଗୃହୀତ ପ୍ରସ୍ତାବକୁ ଗ୍ରହଣ କରିବା ନ କରିବା ରଜାଙ୍କ ଇଚ୍ଛାଧୀନ ଥିବାରୁ ପ୍ରଜାମଣ୍ଡଳ ଏହା ଗ୍ରହଣ କରିନଥିଲା । ପ୍ରଜାମଣ୍ଡଳ କଥାନମାନି ଯେଉଁମାନେ ଉକ୍ତ ସଭାର ସଭ୍ୟ ନିର୍ବାଚିତ ହେଲେ, ସେମାନଙ୍କ କୌଣସି କଥା ତ ରକ୍ଷାହେବାର ବାଟନଥିଲା ଏବଂ ଏହି ସଭ୍ୟମାନେ ନିଜ ଆଇନକୁ ଦୃଢ଼ କରିବା ଦୃଷ୍ଟିରୁ ରଜାଙ୍କୁ ସୁହାଇଲା ଭଳି ପ୍ରସ୍ତାବମାନ ଗ୍ରହଣ କରୁଥିଲେ । ବେଠି କରିବାକୁ ନୟାଗଡ ଜନସାଧାରଣ ପ୍ରଜାମଣ୍ଡଳ ନିର୍ଦ୍ଦେଶକ୍ରମେ ସଂପୂର୍ଣ୍ଣ ବାରଣ କରିଥିବା ସତ୍ତ୍ୱେ ଏହି ପରାମର୍ଶଦାତା ସଭା ଜଙ୍ଗଲ ନିଆଁ ଛଡ଼ାଇବା ବେଠି କରିବାପାଇଁ ପ୍ରସ୍ତାବ ଗ୍ରହଣ କରିଥିଲେ । ଲୋକେ ଜଙ୍ଗଲରେ ନିଆଁ ଛଡ଼ାଇବାକୁ ନ ଯିବାରୁ ରଜା ଗାଁ ଗାଁ ବୁଲି ନିଆଁ ଲିଭା ବେଠି କରିବା ପାଇଁ ଲୋକଙ୍କୁ ଅନୁରୋଧ କଲେ । ଲୋକେ ଆଉ ବେଠି କରିବେ ନାହିଁ ବୋଲି ରଜାଙ୍କୁ ମୁହେଁ ମୁହେଁ ମନାକରିଦେଇ ଯଥାଶୀଘ୍ର ପ୍ରଜାମଣ୍ଡଳ ଦାବି ଗ୍ରହଣ କରିନେବା ପାଇଁ କହିଥିଲେ ।

ପାରିପାର୍ଶ୍ୱିକ ପରିସ୍ଥିତି ଦୃଷ୍ଟିରୁ ସାମୟିକ ସତ୍ୟାଗ୍ରହ ବନ୍ଦକରିଦେବା ପାଇଁ ଓଡ଼ିଶା ଗଡଜାତ ପ୍ରଜାସମ୍ମିଳନୀ ଅନୁରୋଧକ୍ରମେ ପ୍ରଜାମଣ୍ଡଳ ସତ୍ୟାଗ୍ରହ ବନ୍ଦକରି ଗଠନମୂଳକ କାର୍ଯ୍ୟରେ ମନୋନିବେଶ କଲେ । କ୍ଷମତାହୀନ ପରାମର୍ଶଦାତା କମିଟିକୁ ପ୍ରଜା ପ୍ରତିନିଧିମୂଳକ ଅନୁଷ୍ଠାନବୋଲି ଢିଣ୍ଡିମ ପିଟି ଏବଂ ତାଙ୍କରି ଜରିଆରେ ନିଜର ଉଦ୍ଦେଶ୍ୟ ସାଧନ କରି ପ୍ରଜାମଣ୍ଡଳ କର୍ମୀମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲେ ।

କର୍ମୀମାନଙ୍କ ନାମରେ ମିଥ୍ୟା ମୋକଦ୍ଦମାମାନ କରାଇଲେ । ବାଟରେ-ଘାଟରେ ଯେଉଁଠି ଦେଖିଲେ ପୋଲିସ୍‌ଙ୍କ ଦ୍ୱାରା ଧରିନେଇ ମାଡ଼ଦେଲେ । ପ୍ରଜାମଣ୍ଡଳର ଜଣେ ମୁଖ୍ୟ ସଭ୍ୟ ଶ୍ରୀଧର ଦାଶ ତାଙ୍କ ନିଜ ଜମିରୁ ଧାନ ଚୋରୀ କରିଥିବା ଏଭଳି ଇଡ଼ାଲା ତାଙ୍କ ଜମି ଭାଗୁଆଳି ଦ୍ୱାରା କରାଇ ତାଙ୍କ ନାମେ ମୋକଦ୍ଦମା କରାଇଲେ । ତାଙ୍କ ଭାଇ ସୁଦର୍ଶନ ଦାଶଙ୍କ ନାମେ ଗୋଟିଏ କାଞ୍ଚନ ଚୋରୀ କେଶ୍ ଓ ଅନ୍ୟ ଭାଇ କୃପାସିନ୍ଧୁ ଦାଶଙ୍କ ନାମେ ଗୋଟିଏ ମିଥ୍ୟା ଫୌଜଦାରୀ କେସ୍ ମଧ୍ୟ ଯୋଡ଼ଲେ । ଶ୍ରୀଧର ଦାଶ ପ୍ରଜାମଣ୍ଡଳ ଛାଡ଼ଲେ ସମସ୍ତ କେସ୍ ଉଠାଇ ଦିଆଯିବ ବୋଲି ଦେଓ୍ୱାନ କହିଥିଲେ । ପରେ ତାଙ୍କରି କୋର୍ଟରେ ସମସ୍ତ ମୋକଦ୍ଦମା ମିଥ୍ୟାବୋଲି ପ୍ରମାଣିତ ହୋଇଥିଲା । ଦିନକୁଦିନ ରାଜାଙ୍କର ଦମନମୂଳକ କାର୍ଯ୍ୟ ବହୁଳ ଭାବେ ଚାଲିବାରୁ ଆବଶ୍ୟକ ହେଲେ ଶାନ୍ତିପୂର୍ଣ୍ଣ ଭାବେ ସତ୍ୟାଗ୍ରହ କରିବା ପାଇଁ ପ୍ରଜାମଣ୍ଡଳ ପ୍ରସ୍ତାବ କଲେ । ଆଦିବାସୀ ନେତାମାନଙ୍କୁ ଡାକି ରାଜା ବହୁ ପ୍ରଲୋଭନ ଦେଖାଇ ଫୁସୁଲାଫସଲି କଲେ ସତ୍ୟ, ମାତ୍ର ଆଦିବାସୀ କର୍ମୀମାନେ ରାଜାଙ୍କ କଥାରେ ରାଜି ନ ହେବାରୁ ଆଦିବାସୀଙ୍କ ଉପରେ ନୂଆକରି ଚରକର ଧାର୍ଯ୍ୟକଲେ । ରାଜାଙ୍କର ଏତାଦୃଶ ଦମନମୂଳକ ପ୍ରଜା ବିରୋଧୀ କାର୍ଯ୍ୟ ଅଧିକରୁ ଅଧିକ ହେବାରୁ ଜନତା ମନରେ ପ୍ରତିରୋଧ-ମୂଳକଭାବ ଜାଗ୍ରତ ହେଲା । ଗ୍ରାମମାନଙ୍କରେ ବାସକରୁଥିବା ସରକାରୀ କର୍ମଚାରୀମାନଙ୍କୁ ପଞ୍ଚାୟତମାନେ କୌଣସି ପ୍ରକାର ସାହାଯ୍ୟ ନକରି ସମସ୍ତ ସମ୍ପର୍କ ତୁଟାଇଦେଲେ । ରାଜାଙ୍କ ଆଦେଶରେ ଆଗମକାଳରୁ ଚଳି ଆସୁଥିବା ତୁମ୍ବ, ଅଡ଼ା, ବୋଡ଼ା, ବିଶା ପ୍ରଭୃତି ମାପ ଓ ଓଜନ ଯନ୍ତ୍ରପାତିମାନ ଠିକ୍ ନାହିଁ କହି ପ୍ରଜାମଣ୍ଡଳକୁ ସମର୍ଥନ କରୁଥିବା କେତେକ ଚାଷୀ ଓ ବ୍ୟବସାୟୀମାନଙ୍କ ନାମରେ ପୋଲିସ୍ ମୋକଦ୍ଦମା ସୃଷ୍ଟି କଲେ । ଯେଉଁ ପ୍ରଜାମଣ୍ଡଳ କର୍ମୀଙ୍କର ଭାଇ ଓ ବନ୍ଧୁ ସରକାରୀ ଚାକିରି କରୁଥିଲେ, ସେହି କର୍ମୀ ପ୍ରଜାମଣ୍ଡଳ ତ୍ୟାଗନକଲେ, ତାଙ୍କୁ ଚାକିରିରୁ ଅନ୍ତର କରିଦେବାର ଧମକ ଦିଆଗଲା । ବାହାଡ଼ାଝୋଲା ଅଞ୍ଚଳର କେତେକ କର୍ମୀଙ୍କୁ ଅଯଥା ମାଡ଼ଦେଇ ଜେଲ୍‌କୁ ପଠାଇଦିଆଗଲା । ଏହି ପରିପ୍ରେକ୍ଷୀରେ ସତ୍ୟାଗ୍ରହ କରିବାପାଇଁ ପ୍ରଜାମଣ୍ଡଳ ଯେଉଁ ନୀତି ଠିକ୍ କରିଥିଲା, ସେ ସମ୍ପର୍କରେ ପ୍ରଜାସମ୍ମିଳନୀର ଏବଂ ହରେକୃଷ୍ଣ ମହତାବଙ୍କ ମତାମତ ରହିବାରୁ ଉଭୟପକ୍ଷରୁ ବର୍ତ୍ତମାନ ଭଳି ଦୁର୍ଦ୍ଦିନରେ ଧୈର୍ଯ୍ୟଧରି ସମସ୍ୟାର ସମ୍ମୁଖୀନ ହେବାପାଇଁ ପରାମର୍ଶ ମିଳିବାରୁ ପ୍ରଜାମଣ୍ଡଳ ତାଙ୍କରି ପରାମର୍ଶକ୍ରମେ କାର୍ଯ୍ୟକଲେ ।

●

# ଦ୍ୱିତୀୟ ବିଶ୍ୱଯୁଦ୍ଧ

ନୟାଗଡ ରାଜ୍ୟରେ ଏହିଭଳି ଜଟିଳ ପରିସ୍ଥିତି ଘଟିଥିବା ସମୟରେ ୧୯୩୯ ମସିହା ସେପ୍‌ଟେମ୍ବର ମାସରେ ୨ୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବାରୁ ଇଂରେଜ ସରକାର ଚୁକ୍ତି ଭଙ୍ଗକରି ଭାରତ ଜନମତକୁ ଭ୍ରୂକ୍ଷେପ ନକରି ଯୁଦ୍ଧ ଘୋଷଣା କରିଦେଲେ । କଂଗ୍ରେସ ଇଂରେଜ ସରକାରଙ୍କର ଏଭଳି ମନମୁଖି ଅଗଣତାନ୍ତ୍ରିକ କାର୍ଯ୍ୟର ତୀବ୍ର ପ୍ରତିବାଦ କରି କଂଗ୍ରେସ ଶାସିତ ପ୍ରଦେଶମାନଙ୍କରୁ ସରକାରରୁ ଓହରି ଆସିବାପାଇଁ ମନ୍ତ୍ରୀମଣ୍ଡଳମାନଙ୍କୁ ନିର୍ଦ୍ଦେଶଦେଲେ । ମୁସ୍‌ଲିମ୍‌ଲିଗ୍‌ ଦ୍ୱାରା ପରିଚାଳିତ ଚାରିଗୋଟି ପ୍ରଦେଶ ଛଡା ଅନ୍ୟ ସମସ୍ତ ରାଜ୍ୟରେ ଗଭର୍ଣ୍ଣରମାନେ ଶାସନ ଚଳାଇଲେ । ଗଡଜାତମାନଙ୍କରେ ହେଉଥିବା ଆନ୍ଦୋଳନ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବାପାଇଁ ଭାରତ ସରକାର ଆସିଷ୍ଟାଣ୍ଟ ପଲିଟିକାଲ୍‌ ଏଜେଣ୍ଟ ବୋଷ୍ଟେଟ୍‌ ସାହେବଙ୍କୁ ନିର୍ଦ୍ଦେଶଦେଲେ । ବୋଷ୍ଟେଟ୍‌ ସାହେବ ନୟାଗଡ ଆସି ପ୍ରଜାମଣ୍ଡଳ ସଭାପତିଙ୍କ ଅନୁରୋଧ ସତ୍ତ୍ୱେ ପ୍ରଜାମଣ୍ଡଳର ମତାମତ ଗ୍ରହଣ କଲେନାହିଁ । ଏଣୁ ତା ୨୪-୧୨-୩୯ଦିନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ବୈଠକ ବସି ବୋଷ୍ଟେଟ୍‌ ସାହେବଙ୍କର କାର୍ଯ୍ୟର ନିନ୍ଦା କରିବା ସଙ୍ଗେ ସଙ୍ଗେ ନୟାଗଡ ରାଜାଙ୍କ ଦ୍ୱାରା ଘଟୁଥିବା ଅନ୍ୟାୟ ଅତ୍ୟାଚାରର ଏକ ବିସ୍ତୃତ ବିବରଣୀ ପ୍ରସ୍ତୁତ କରି ବୋଷ୍ଟେଟ୍‌ ସାହେବଙ୍କ ନିକଟକୁ ପଠାଇଦେଇଥିଲେ ଏବଂ ରାଜାଙ୍କର କାର୍ଯ୍ୟ ପ୍ରତି ସତର୍କ ରହିବା ପାଇଁ ଜନସାଧାରଣଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଯୁଦ୍ଧକାଳୀନ ପରିସ୍ଥିତିର ସୁଯୋଗନେଇ ରାଜା ଦମନ ଚଳାଇବାର ଏକ ସୁବର୍ଣ୍ଣ ସୁଯୋଗ ପାଇଗଲେ ଏବଂ ଅନେକଙ୍କୁ ଜେଲ୍‌ ହାଜତକୁ ପଠାଇଦେଲେ । ଦୁଃଖର ବିଷୟ ନିଜକୁ ଲୋକପ୍ରତିନିଧି ବୋଲାଉଥିବା ପରାମର୍ଶଦାତା ସଭ ନିରବ ଦର୍ଶକଭାବେ ସବୁ ଦେଖୁଥିଲା ଅଥଚ ଏହିମାନଙ୍କ ଲୋକପ୍ରତିନିଧି ଭାବେ ରାଜା ଦୁନିଆଁ ଦରବାରରେ ଚିହ୍ନିତ

କରଉଥିଲେ । ଏହି ପରିପ୍ରେକ୍ଷୀରେ ପ୍ରଜାମଣ୍ଡଳ ଉପରେ ଦାଉସାଧିବା ରାଜକର୍ମଚାରୀଙ୍କ ପକ୍ଷେ ଏକ ସୁଯୋଗ ହୋଇଥିଲା । ତେଣୁ ଗାନ୍ଧିଜୀଙ୍କ ପ୍ରଦର୍ଶିତ ଗଠନମୂଳକ କାର୍ଯ୍ୟରେ ଲିପ୍ତରହି ଭବିଷ୍ୟତ ଆନ୍ଦୋଳନ ପାଇଁ ଲୋକଙ୍କୁ ସଂଗଠିତ କରିବା ଉଦ୍ଦେଶ୍ୟରେ ପ୍ରଜାମଣ୍ଡଳ ବ୍ୟବସ୍ଥା ଗ୍ରହଣକଲେ ।

ଭାରତ ଜାତୀୟ କଂଗ୍ରେସର ଗୋଟିଏ ପ୍ରାଇମେରୀ କମିଟି ନୟାଗଡରେ ଗଠନ କରିବାପାଇଁ ପୁରୀ ଜିଲ୍ଲା କଂଗ୍ରେସ କମିଟିଙ୍କ ଅନୁରୋଧକ୍ରମେ ନୟାଗଡରେ କଂଗ୍ରେସ ସଭ୍ୟ ସଂଗ୍ରହ କରାଯାଇ ନୟାଗଡ ପ୍ରାଥମିକ କଂଗ୍ରେସ କମିଟି ଗଠନ କରାଗଲା । ପ୍ରଜାମଣ୍ଡଳ ନିର୍ଦ୍ଦେଶକ୍ରମେ ରାଜ୍ୟସାରା ସୂତାକଟା, ଅସ୍ପୃଶ୍ୟତା ନିବାରଣ ଇତ୍ୟାଦି ଗଠନମୂଳକ କାର୍ଯ୍ୟ ଚାଲିବା ସଙ୍ଗେ ସଙ୍ଗେ ଗ୍ରାମପଞ୍ଚାୟତମାନେ ଗାଁର ସମସ୍ତ ମାଲିମୋକଦ୍ଦମା ଗାଁରେ ନିଷ୍ପତ୍ତିକଲେ । ଗାଁର ଦାଣ୍ଡ, ବାଟ, ରାସ୍ତା, ପୁଷ୍କରିଣୀ ଲୋକଙ୍କ ଦ୍ୱାରା ପରିଷ୍କୃତ ଓ ସଂରକ୍ଷିତ ହେଲା । ରାଜକର୍ମଚାରୀମାନଙ୍କ ଉପରେ ଗ୍ରାମବାସୀ ଆଉ ନିର୍ଭର କଲେନାହିଁ । ପ୍ରଜାମଣ୍ଡଳ ପକ୍ଷରୁ ଗାଁମାନଙ୍କରେ ସଭାସମିତି ହୋଇ ସଂଗଠନକୁ ଦୃଢୀଭୂତ କରାଗଲା । ଏହାଫଳରେ ଜନସାଧାରଣଙ୍କ ମନରେ ଯେଉଁ ବିପୁଳ ଉତ୍ସାହ ଓ ଉନ୍ମାଦନା ଦେଖାଦେଲା, ଏହା ନୟାଗଡ ରାଜାଙ୍କର ଗାତ୍ରଦାହ କଲା । ତେଣୁ ରାଜା ଏକ ଆଦେଶନାମା ଜାରିକରି ପ୍ରଜାମଣ୍ଡଳ ନାମ ନଧଇଲେ ମଧ୍ୟ କେହି ଏଭଳି ଅନୁଷ୍ଠାନକୁ ଚନ୍ଦାଭେଦା ନଦେବା ପାଇଁ ନିର୍ଦ୍ଦେଶଦେଲେ । କୌଣସି ବ୍ୟକ୍ତି ଚନ୍ଦାଦେଲେ କିମ୍ବା ପ୍ରଜାମଣ୍ଡଳକୁ ସାହାଯ୍ୟ କଲେ କିମ୍ବା ଚନ୍ଦା ଆଦାୟ କରିବାରେ ସାହାଯ୍ୟ କଲେ ସେହି ବ୍ୟକ୍ତିଙ୍କୁ ଭାରତୀୟ ଦଣ୍ଡବିଧି ଆଇନ ଅନୁସାରେ ଦଣ୍ଡ ଦେବାପାଇଁ ହୁକୁମଦେଲେ । ରଜା ଏଭଳି ନିର୍ଦ୍ଦେଶଦେବା ସତ୍ତ୍ୱେ ତାଙ୍କର ଏ ଆଦେଶ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ବରଂ କେତେକ କ୍ଷେତ୍ରରେ ଉକ୍ତ ଆଦେଶପତ୍ର ବଣ୍ଟନ କରୁଥିବା କର୍ମଚାରୀମାନେ ହାସ୍ୟାସ୍ପଦ ପରିସ୍ଥିତିର ସମ୍ମୁଖୀନ ହେଲେ ।

ଭାରତବର୍ଷର ଜନମତକୁ ଭ୍ରୂକ୍ଷେପ ନକରି ଇଂରେଜ ସରକାର ଭାରତ ପକ୍ଷରୁ ଯୁଦ୍ଧ ଘୋଷଣା କରିଦେଇ ବିଶ୍ୱ ଜନମତକୁ ବିଭ୍ରାନ୍ତ କରିବାକୁ ଚେଷ୍ଟା କରିବାରୁ ଅହିଂସାର ପୂଜାରୀ ମହାତ୍ମାଗାନ୍ଧୀ ଏହାର ପ୍ରତିବାଦ କରିବାପାଇଁ କଂଗ୍ରେସକୁ ଅନୁରୋଧ କଲେ । ଭାରତୀୟ ଜାତୀୟ କଂଗ୍ରେସ ଏହି ସମୟରେ ଭାରତ ଯୁଦ୍ଧର ବିରୋଧୀ ଏହା ବିଶ୍ୱ ଜନମତକୁ ଜଣାଇଦେବା ଉଦ୍ଦେଶ୍ୟରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଦେଶ-ସାରା ଯୁଦ୍ଧ ବିରୋଧୀ ସତ୍ୟାଗ୍ରହ ଚଳାଇଥିଲେ । ନୟାଗଡ ପ୍ରଜାମଣ୍ଡଳର କେତେକ କର୍ମୀ ସତ୍ୟାଗ୍ରହ କରିବାପାଇଁ ଆବେଦନ କରିଥିଲେ । ମାତ୍ର କାହାରିକୁ ଅନୁମତି ନ ମିଳିବାରୁ ପ୍ରଜାମଣ୍ଡଳ ଗଠନମୂଳକ କାର୍ଯ୍ୟକୁ ଅଗ୍ରାଧିକାର ଭିତ୍ତିରେ ଚଳାଇବା ପାଇଁ ନିଷ୍ପତ୍ତି କରିବା ସଙ୍ଗେ ସଙ୍ଗେ ଜରୁରୀ ସମୟ ଉପସ୍ଥିତ ହେଲେ ସମସ୍ତ କାର୍ଯ୍ୟ ଚଳାଇବା ପାଇଁ ପ୍ରଜାମଣ୍ଡଳର ସଭାପତିଙ୍କ ଅଧ୍ୟକ୍ଷତାରେ ଭରତ ନାୟକ, ଲକ୍ଷ୍ମଣ ମହାରଣା, ନାରାୟଣ ନନ୍ଦ, କୁବେର ସାହୁ ଓ ଶ୍ରୀଧର ଦାଶ ପ୍ରମୁଖ ସଭ୍ୟମାନଙ୍କୁ ନେଇ ଏକ ସଂଗ୍ରାମ କମିଟି ଗଠନ କଲେ ।



# ରାଜାଙ୍କର ଭେଦନୀତି

ବାରମ୍ବାର ଦମନ ଚଳାଇ ରାଜା ସଫଳକାମ ନ ହେବାରୁ ପ୍ରଜାମଣ୍ଡଳ କର୍ମୀମାନଙ୍କ ମଧ୍ୟରେ ଭେଦନୀତି ପ୍ରୟୋଗ କଲେ । ପ୍ରଜାମଣ୍ଡଳର ସଂପାଦକ ଶ୍ରୀ ଭରତ ନାୟକଙ୍କୁ ଏବଂ ତାଙ୍କ ପରିବାରକୁ ଏଭଳି ଅବସ୍ଥାରେ ପକାଇଲେ ଯାହାଫଳରେ ଶ୍ରୀ ଭରତ ନାୟକ ବାଧ୍ୟ ହୋଇ ଦରିଦ୍ରତାର କଷାଘାତରେ ଉତ୍ପୀଡ଼ିତ ହୋଇ ପ୍ରଜାମଣ୍ଡଳରୁ ଇସ୍ତଫାଦେଇ ସରକାରୀ ଚାକିରି କଲେ । ସାରଙ୍ଗଧର ଆଚାର୍ଯ୍ୟ, ସୂର୍ଯ୍ୟମଣି ମହାପାତ୍ର ପ୍ରମୁଖ ପ୍ରଲୋଭନରେ ପଡ଼ି ପ୍ରଜାମଣ୍ଡଳ ଛାଡ଼ି ଚାକିରି କଲେ । ଉପରୋକ୍ତ ଦଳତ୍ୟାଗୀ ବ୍ୟକ୍ତିମାନଙ୍କ ସହିତ ଆହୁରି ସାମାନ୍ୟ କେତେଜଣ ମଧ୍ୟ ଦଳତ୍ୟାଗ କରିଥିଲେ । ରାଜା କେତେଜଣଙ୍କୁ ଚାକିରି ଦେବାପରେ ଅନ୍ୟ ପ୍ରଜାମଣ୍ଡଳର ନେତା ତଥା କର୍ମୀମାନଙ୍କୁ ବହୁ ଭାବରେ ପ୍ରଲୋଭିତ କଲେ । ମାତ୍ର ଅନ୍ୟ କୌଣସି କର୍ମୀ ବା ନେତା ରାଜାଙ୍କ ପ୍ରଲୋଭନରେ ନପଡ଼ି ପ୍ରଜାମଣ୍ଡଳ ପ୍ରତି ଅନୁରକ୍ତ ରହିଲେ । ଭରତ ନାୟକ ସମ୍ପାଦକରୁ ଯିବାପରେ ତାଙ୍କ ସ୍ଥାନରେ ରାମକୃଷ୍ଣ ଅଧିକାରୀ ସମ୍ପାଦକ ହେଲେ । ସେ ମଧ୍ୟ ସମ୍ପାଦକରୁ ଇସ୍ତଫା ଦେବାରୁ ଲକ୍ଷ୍ମଣ ମହାରଣା ପ୍ରଜାମଣ୍ଡଳ ସମ୍ପାଦକ ରୂପେ ନିର୍ବାଚିତ ହେଲେ ।

ପ୍ରଜାମଣ୍ଡଳରେ କେତେକ କର୍ମୀଙ୍କୁ ଦଳତ୍ୟାଗ କରାଇ ଅନ୍ୟମାନଙ୍କୁ ଆୟତ୍ତ କରିନପାରିବାରୁ ଭରତ ରକ୍ଷା ଆଇନବଳରେ ବାଞ୍ଛାନିଧି ସେନାପତି, ଲକ୍ଷ୍ମଣ ମହାରଣା, ନାରାୟଣ ନନ୍ଦ, ଶ୍ରୀଧର ଦାଶ, ନରସିଂହ ନନ୍ଦ ଓ କୁବେର ସାହୁ ପ୍ରମୁଖ ନେତୃବର୍ଗଙ୍କୁ ତା ୮-୧-୪୦ ପରେ ପରେ ନିଜ ଗ୍ରାମରେ ଗୃହବନ୍ଦୀ ହିସାବରେ ରହିବାକୁ ଆଦେଶ ଦେଲେ ଏବଂ ଅନ୍ୟାନ୍ୟ କର୍ମୀ ତଥା ସହଯୋଗୀମାନଙ୍କୁ ମାଡ଼ଦେଇ ଦବାଇଦେବାର ଉଦ୍ୟମ ଚାଲିଲା । ବହୁ କର୍ମୀଙ୍କୁ ଅନ୍ୟାୟ ଭାବରେ ନିଷ୍ଠୁର ମାଡ଼ ଦିଆ-ଗଲା । ପ୍ରଜାମଣ୍ଡଳର ଅନ୍ୟତମ ନେତା ଶୁକ୍ର ବେହେରା ଓଳଗାଁରୁ ତାଙ୍କ

ଗ୍ରାମକୁ ଫେରୁଥିବା ସମୟରେ ଓଡଗାଁ ପୋଲିସ୍ ତାଙ୍କୁ ବାଟରୁ ଧରିନେଇ ଭୟଙ୍କର ମାଡଦେବା ପରେ ଶରଣକୁଳ ଥାନାରେ ଛାଡଦେଇ ଆସିଲେ । ଶରଣକୁଳ ଥାନା ପୋଲିସ୍ ଶ୍ରୀଯୁକ୍ତ ବେହେରଙ୍କୁ ଉତ୍ତମ ମଧ୍ୟମ ପ୍ରକାର ପ୍ରହାର କରି ରାତି ୯ଘଣ୍ଟା ସମୟରେ ତାଙ୍କୁ ଗୋଡପଡା ଥାନାରେ ଛାଡ ଦେଇଗଲେ । ସେହି ସମୟକୁ ଅସ୍ତନକ ବର୍ଷା ହେବାରୁ ବେହେରଙ୍କ ଆଗମନ ଗୋଡପଡାବାସୀ ଜାଣିପାରିଲେ ନାହିଁ । ଏହି ପରିସ୍ଥିତିରେ ଗୋଡପଡା ପୋଲିସ୍ ଶ୍ରୀ ବେହେରଙ୍କ ଉପରେ ଅକଥନୀୟ ଅତ୍ୟାଚାରର ତାଣ୍ଡବଲୀଳା ଚଳାଇଲେ । ପ୍ରଥମେ ତାଙ୍କୁ କ୍ଷମାପ୍ରାର୍ଥନା ପତ୍ର ମଗାଗଲା । ସେ ଏଥିପାଇଁ ଅସମ୍ମତ ହେବାରୁ ତାଙ୍କ ପାଟିରେ ଚୌକିଦାର ପ୍ରସ୍ରାବ କଲେ । ଏହାସତ୍ତ୍ୱେ ଶ୍ରୀଯୁକ୍ତ ବେହେର ଅଟଳ ରହିବାରୁ ତାଙ୍କ ଉପରେ ଚାଲିଲା ନିର୍ମମ ମାଡ । ମାଡ ଖାଇଖାଇ ସେ ଅଚେତ ହୋଇଯିବାରୁ ମରିଗଲା ଭାବି ପୋଲିସ୍ ଅଧ'ରାତ୍ର ସମୟରେ ତାଙ୍କୁ ଟେକିନେଇ ଥାନାଠାରୁ ଏକମାଇଲ୍ ଦୂର କଇଁଫୁଲିଆନାଳ ଜାମୁବଣରେ ପକାଇଦେଇ ଆସିଲେ । କୌଣସି କଥା ଲୁଚି ରହେନାହିଁ ଏହା ସଙ୍ଗେ ସଙ୍ଗେ ଜଣାପଡିବାରୁ ଗୋଡପଡା ଓ ଭଲିଆଡିହିର କର୍ମୀମାନେ ଅନୁସନ୍ଧାନ କରି ରାତ୍ର ୨ଟା ବେଳେ ନାଳକାଛରୁ ତାଙ୍କୁ ଭଲିଆଡିହି ତାଙ୍କ ଘରକୁ ନେଇଗଲେ । ତା' ପରଦିନ କ୍ଷତବିକ୍ଷତ ବେହେରଙ୍କୁ ଚିକିତ୍ସାପାଇଁ ନୟାଗଡ ଡ କ୍ତରଖାନାକୁ ନିଆଗଲା । ଡାକ୍ତର ଚିକିତ୍ସା କରିବାକୁ ମନା କରିଦେବାରୁ ତାଙ୍କୁ ରଜାଙ୍କ ନିକଟକୁ ନେଇ ଚିକିତ୍ସାର ସୁବିଧା କରିଦେବା ପାଇଁ ଆବେଦନ କରାଗଲା । ରଜା ଚିକିତ୍ସାର ସୁବିଧା କରିବା ପରିବର୍ତ୍ତେ ଶ୍ରୀଯୁକ୍ତ ବେହେର ଏବଂ ତାଙ୍କୁ ସବାରୀରେ ବୋହିନେଇଥିବା ସମସ୍ତ ଲୋକଙ୍କୁ ପୋଲିସ୍ ହସ୍ତରେ ଅର୍ପଣ କରିଦେଇ ହାଜତକୁ ପଠାଇଦେଲେ । ଏ ସମସ୍ତ ବିଷୟ ହରେକୃଷ୍ଣ ମହତାବ, ସାରଙ୍ଗଧର ଦାସ ଓ ସର୍ବୋପରି ମହାତ୍ମାଗାନ୍ଧୀଙ୍କୁ ମଧ୍ୟ ଜଣାଇ ଦିଆଯାଇଥିଲା । ଧୈର୍ଯ୍ୟଧରି ରହିବାପାଇଁ ସମସ୍ତେ ପରାମର୍ଶ ଦେଇଥିଲେ । ପଲିଟିକାଲ୍ ଏଜେଣ୍ଟଙ୍କୁ ଉକ୍ତ ଘଟଣା ଜଣାଇ ଦିଆଯାଇଥିଲେ ମଧ୍ୟ ପ୍ରତିକାର କରିବା ଦୂରେଥାଉ ତାଙ୍କଠାରୁ କୌଣସି ଉତ୍ତର ମିଳିନଥିଲା । ଶ୍ରୀ ବେହେର ସମେତ ତାଙ୍କ ସାଙ୍ଗରେ ଯାଇଥିବା ଲୋକ-ମାନଙ୍କ ନାମରେ ପୋଲିସ୍ ମୋକଦମା ରୁଜୁକରି ମାଜିଷ୍ଟ୍ରେଟ୍‌ଙ୍କ ବିଚାର ପାଇଁ ଦେଇଥିଲେ । ମାସାଧିକକାଳ ଜେଲ୍‌ରେ ରଖିବାପରେ ଶ୍ରୀଯୁକ୍ତ ବେହେର ଓ ତାଙ୍କ ସାଥୀମାନଙ୍କୁ ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟକୁ ନିଆଗଲା ।

ମାଜିଷ୍ଟ୍ରେଟ୍ ଆଇନ ମୁତାବକ କୌଣସି ବିଧିବିଧାନ ଗ୍ରହଣ ନକରି ହୁକୁମ ଦେଲେ ଭବିଷ୍ୟତରେ ଏଭଳି କାର୍ଯ୍ୟ ଆଉ କରିବ ନାହିଁ । ତୁମ୍ଭମାନଙ୍କୁ ଖଲାସ କରି ଦିଆଗଲା । ଏହାହିଁ ଗଡଜାତ ଶାସନର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଏହିଥିରୁ ନୟାଗଡ ରାଜାଙ୍କର ଶାସନର ନମୁନା ଉତ୍ତମଭାବେ ଜଣାପଡେ ।

ତା ୩-୧-୪୧ ଦିନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ଭଲିଆଡ଼ିହି ବୈଠକରେ ଭରତ ନାୟକ ପ୍ରଭୃତି କେତେଜଣ ପ୍ରଜାମଣ୍ଡଳ ତ୍ୟାଗକରି ରୁକିବି କରିବାପରେ କର୍ମୀମାନଙ୍କ ଉପରେ ରାଜାଙ୍କ ପକ୍ଷରୁ ଯେଉଁ ଦମନ ମୂଳକ କାର୍ଯ୍ୟ ହେଉଛି ଏବଂ ତାରମ୍ଭାର ରାଜାଙ୍କୁ ଆପତ୍ତି କଲେ ମଧ୍ୟ ଏହାର ପ୍ରତିକାର ହେଉନି, ବରଂ ଯୁଦ୍ଧକାଳୀନ ପରିସ୍ଥିତିର ସୁଯୋଗ ନେଇ ଯାବତୀୟ ଅତ୍ୟାଚାର ଚଳାଇଲେ । ଏହି ସମ୍ପର୍କରେ ବିସ୍ତର ଆଲୋଚନା ପାଇଁ ତା ୨୬-୧-୪୧ଦିନ କୁମ୍ଭାପଡା ଆଶ୍ରମରେ ସ୍ୱାଧୀନତା ଦିବସ ପାଳନ ସହିତ ପ୍ରଜାମଣ୍ଡଳର ବିଶେଷ ଅଧିବେଶନ ତଥା କର୍ମୀ ତାଲିମ ଶିବିର ଖୋଲିବା ପାଇଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ରାଜା ଏହାର ସୂଚନା ପାଇ ତା ୨୬-୧ ୪୧ ପୂର୍ବରୁ ପ୍ରଜାମଣ୍ଡଳର ମୁଖ୍ୟ ନେତାମାନଙ୍କୁ ଗୃହବନ୍ଦୀ କରିବା ସତ୍ତ୍ୱେ ତା ୨୬-୧-୫୦ଦିନ କୁମ୍ଭାପଡା ଆଶ୍ରମରେ ପାଞ୍ଚଶହ ପ୍ରଜାମଣ୍ଡଳ କର୍ମୀଙ୍କ ଉପସ୍ଥିତିରେ ବିଶେଷ ଅଧିବେଶନ ଅନୁଷ୍ଠିତ ହେଲା । ଶ୍ରୀ ଅରକ୍ଷିତ ସାହୁଙ୍କୁ ଉକ୍ତ ଅଧିବେଶନରେ ଅସ୍ଥାୟୀଭାବେ ସଭାପତି ନିର୍ବାଚନ କରାଗଲା । ଦଳ ତ୍ୟାଗକରି ରୁକିବି କରିଥିବା ବ୍ୟକ୍ତିମାନଙ୍କ କାର୍ଯ୍ୟର ନିନ୍ଦାବାଦ କରାଯାଇଥିଲା ଏବଂ କର୍ମୀମାନଙ୍କୁ ତାଲିମ୍ ଦିଆଯାଇ ସ୍ୱ ସ୍ୱ କର୍ମକ୍ଷେତ୍ରକୁ ପ୍ରେରଣ କରାଯାଇଥିଲା ।

୧୯୪୨ ବେଳକୁ ଜାପାନ, ମାଲୟ, ସିଙ୍ଗାପୁର, ବର୍ମା ପ୍ରଭୃତି ଦଖଲ କରିନେବାରୁ ଇଂରେଜ ସରକାର ଆତଂକିତ ହୋଇ ବଙ୍ଗୋପସାଗର ଉପକୂଳ ପ୍ରଦେଶ ସମୂହର ସରକାରଙ୍କୁ ସତର୍କ କରାଇବାପାଇଁ ଆଦେଶଦେବା ସଙ୍ଗେ ସଙ୍ଗେ ଉପକୂଳ ଅଞ୍ଚଳରେ ଥିବା ଖାଦ୍ୟଶସ୍ୟ ଯେପରି ଶତ୍ରୁ ହାତରେ ନପଡେ ତା'ର ବ୍ୟବସ୍ଥା ପାଇଁ ନିର୍ଦ୍ଦେଶଦେଲେ । ଏଣୁ ଓଡିଶା ସରକାର ବିହିତ ବ୍ୟବସ୍ଥା ପାଇଁ ହୁକୁମ ଜଣାଇଲେ । ଓଡିଶା ସରକାର ଲୋକଙ୍କ ସୁବିଧା ଅସୁବିଧା ପ୍ରତି ଦୃଷ୍ଟି ନଦେଇ ଖାଦ୍ୟଶସ୍ୟ ଲୋକ ଅଞ୍ଚଳମାନଙ୍କରୁ ବୋହିନେଲେ । ଶତ୍ରୁପକ୍ଷ ହାତରେ ନପଡ଼ିବା

ପାଇଁ ସମସ୍ତ ଛୋଟବଡ ନୌକା, ସାଇକେଲ୍ ଅନ୍ୟାନ୍ୟ ଯାନବାହାନ ସବୁ ଲୋକଙ୍କଠାରୁ କାଢ଼ିନେଲେ । ଓଡ଼ିଶାର ରାଜଧାନୀ କଟକରୁ ସମ୍ବଲପୁର ସ୍ଥାନାନ୍ତରିତ ହୋଇଗଲା । ଏହି ପରିସ୍ଥିତିରେ ନୟାଗଡ଼ରୁ ବହୁ ଖାଦ୍ୟଶସ୍ୟ ଲୋକଙ୍କଠାରୁ କାଢ଼ିନିଆଗଲା । ସାଇକେଲ, ଡଙ୍ଗା ପ୍ରଭୃତି ଜବରଦସ୍ତ ଛଡ଼ାଇ ନିଆଗଲା । ୧୯୪୨ରେ ଭଲ ଫସଲ ନହେବାରୁ ଲୋକେ ଖାଦ୍ୟ ବିନା ଚରମ ଦୁର୍ବିପାକର ସମ୍ମୁଖୀନ ହେଲେ । କେତେକ ଖାଦ୍ୟନପାଇ ପ୍ରାଣ ହରାଇଲେ । ତାଙ୍କର ତାଲିକା କେହି ରଖିଲେନାହିଁ । ପ୍ରଜାମଣ୍ଡଳ ନେତା ଏବଂ ଗୃହବନ୍ଦୀମାନଙ୍କୁ ବାହାରକୁ ଛଡ଼ାଯାଉନାହିଁ । ଲୋକେ ଦୁଃଖ ଭୋଗୁଛନ୍ତି, ଏହାର ପ୍ରତିବାଦ କରିବାରୁ ପ୍ରଜାମଣ୍ଡଳର ଦୁର୍ଦ୍ଧର୍ଷ କର୍ମୀ ନାରାୟଣ ବେହେରାଙ୍କୁ ଭାରତରକ୍ଷା ଆଇନରେ ଗିରଫକରି ବର୍ଷେ ଜେଲ୍ ଦଣ୍ଡ ଦିଆଗଲା । ପ୍ରହଲାଦ ସ୍ୱାଇଁ ଓ ରାମ ସାହୁଙ୍କୁ ମଧ୍ୟ ଗିରଫକରି ଜେଲ୍ ଦଣ୍ଡ ଦିଆଗଲା ।

ଦୀର୍ଘଦିନ ପ୍ରଜାମଣ୍ଡଳ ନେତାମାନଙ୍କୁ ଗୃହବନ୍ଦୀ ରଖିବାପରେ ୧୯୪୨ ଜୁଲାଇ ମାସର ପ୍ରଥମ ସପ୍ତାହରେ ରାଜା ପ୍ରଜାମଣ୍ଡଳ ନେତାମାନଙ୍କ ଉପରୁ ପ୍ରୋକ୍ତ ଆଇନ ପ୍ରତ୍ୟାହାର କଲେ । ଶାସନ ସଂସ୍କାର ଓ ଯୁଦ୍ଧରେ ଇଂରେଜ ସରକାରଙ୍କୁ ସହଯୋଗ କରିବା ପାଇଁ ଇଂରେଜ ସରକାର ଓ କଂଗ୍ରେସ ମଧ୍ୟରେ ଆଲୋଚନା ପରେ କିଛି ଫଳ ନହେବାରୁ ଦେଶକୁ ଯୁଦ୍ଧ ଏବଂ ସାମ୍ରାଜ୍ୟବାଦୀଙ୍କ ହାତରୁ ରକ୍ଷାକରିବା ପାଇଁ, କଂଗ୍ରେସ ତଥା ମହାତ୍ମାଗାନ୍ଧୀଙ୍କ ଭାରତଛାଡ଼ ଆନ୍ଦୋଳନ ଡାକରାଦେଲେ । ଅବସ୍ଥା ବଡ଼ ତରଳ, କେତେବେଳେ କ'ଣ ହେବ କିଛି ଜଣାପଡୁନଥାଏ । ଦେଶ ଏକ ବିସ୍ଫୋରକ ଅବସ୍ଥାରେ ଗତିକରୁଥାଏ ଓ ନୟାଗଡ଼ରେ ପ୍ରଜାମଣ୍ଡଳ କର୍ମୀମାନଙ୍କ ଉପରେ ପୋଲିସ ଅତ୍ୟାଚାର ଚଳାଇଥା'ନ୍ତି । ଏଭଳି ସଙ୍କଟ ସମୟରେ ପ୍ରଜାମଣ୍ଡଳ ନେତାମାନେ ଖଲାସ ହୋଇ ଏହାର ସମୀକ୍ଷା ପାଇଁ ତା ୧-୭-୪୨ଦିନ କାର୍ଯ୍ୟକାରୀ କମିଟି ବୈଠକରେ ମିଳିତ ହେଲେ । ବାହାଡ଼ାଝୋଲାଠାରେ କମିଟି ବୈଠକରେ ମହାତ୍ମାଗାନ୍ଧୀଙ୍କ ଡାକରାମତେ ଭବିଷ୍ୟତ ପାଇଁ ଆଜଠୁଁ ରାଜ୍ୟବାସୀଙ୍କୁ ପ୍ରସ୍ତୁତ କରିବାଲାଗି ନିଷ୍ପତ୍ତି ଗ୍ରହଣ କରାଗଲା ।

●

# ନୟାଗଡରେ ଐତିହାସିକ ୧୯୪୨ ଆନ୍ଦୋଳନ ଆରମ୍ଭ

ମୁକ୍ତ ନେତାମାନଙ୍କୁ ସମ୍ବର୍ଦ୍ଧନା ଜଣାଇବାପାଇଁ ଓଡଗାଁ ଥାନା ପ୍ରଜାମଣ୍ଡଳ କମିଟିଙ୍କ ଆହ୍ୱାନକ୍ରମେ ତା ୧୩-୭-୪୨ଦିନ ନନ୍ଦଘୋରଠାରେ ଏକ ସାଧାରଣସଭା ଅନୁଷ୍ଠିତ ହେଲା । ସମ୍ବର୍ଦ୍ଧନାର ଉତ୍ତରଦେଇ ଶ୍ରୀଧର ଦାଶ, ଶୁକ ବେହେରା ଏବଂ ଲକ୍ଷ୍ମଣ ମହାରଣା ଭାଷଣ ଦେଇ ନିକଟ ଭବିଷ୍ୟତରେ ଆସୁଥିବା ଆନ୍ଦୋଳନ ପାଇଁ ପ୍ରସ୍ତୁତ ରହିବାକୁ ଲୋକଙ୍କୁ ଆହ୍ୱାନ ଜଣାଇଥିଲେ ଏବଂ ରାଜାଙ୍କର ସ୍ଥିତି ସମ୍ପର୍କରେ ମଧ୍ୟ ବୁଝାଇଥିଲେ । ଏହା ଫଳରେ ତା ୧୭-୭-୪୨ ଦିନ ଭାରତରକ୍ଷା ଆଇନବଳରେ ଉପରୋକ୍ତ ୩ଜଣ ନେତାଙ୍କୁ ଗିରଫକରି ଜେଲକୁ ପଠାଇ ଦିଆଗଲା । ଭାରତଛାଡ ଆନ୍ଦୋଳନ ସମ୍ପର୍କରେ ଦେଶସାରା ସଭାସମିତି ମାଧ୍ୟମରେ ଆଲୋଚନା ଚାଲିଥାଏ, ମାତ୍ର ନୟାଗଡ ରାଜା ଅସହିଷ୍ଣୁ ହୋଇ ପ୍ରଜାମଣ୍ଡଳ ନେତାମାନଙ୍କୁ ଗିରଫ କରିବାରୁ ରାଜ୍ୟସାରା ଅସନ୍ତୋଷ ସୃଷ୍ଟି ହେଲା । ସର୍ବତ୍ର ସଭାସମିତି କରି ରାଜାଙ୍କ କାର୍ଯ୍ୟର ନିନ୍ଦାବାଦ କରାଗଲା । ଜୁଲାଇ ୩ୟ ସପ୍ତାହରେ ପ୍ରଜାମଣ୍ଡଳର ସଭାପତି ବାଞ୍ଛାନିଧି ସେନାପତି ଏକ ସାଧାରଣ ସଭାରେ ବକ୍ତୃତା ଦେଉଥିବାରୁ ତାଙ୍କୁ ମଧ୍ୟ ଭାରତ ରକ୍ଷା ଆଇନ ବଳରେ ଗିରଫ କରାଗଲା । ନାରାୟଣ ନନ୍ଦ ଓ କୁବେର ସାହୁଙ୍କୁ ଗିରଫକରି ଅଟକବନ୍ଦୀ ଭାବେ ରଖାଗଲା । କର୍ମୀ ରାମଚନ୍ଦ୍ର ମହାନ୍ତି ଓ ଅରକ୍ଷିତ ସାହୁ ଏକ ଶୋଭାଯାତ୍ରାର ନେତୃତ୍ୱ ନେଇଥିବାରୁ ସେମାନେ ମଧ୍ୟ ଗିରଫ ହେଲେ । ତା ୬-୮-୪୨ ଦିନ ନରସିଂହ ନନ୍ଦ ବିରାଟ ଶୋଭାଯାତ୍ରାର ନେତୃତ୍ୱ ନେଇ ନୟାଗଡ ଟାଉନରେ ପ୍ରବେଶ କରିବା ମାତ୍ରେ ସେ ଗିରଫ ହେଲେ । ଶ୍ରୀଯୁକ୍ତ ନନ୍ଦଙ୍କୁ ନୟାଗଡ ଥାନାଠାରୁ ଜେଲ ପର୍ଯ୍ୟନ୍ତ ସଡକରେ ଘୋଷାରି ଘୋଷାରି ନେଇ ରକ୍ତାକ୍ତ ଅବସ୍ଥାରେ ଜେଲଭିତରେ ଭର୍ତ୍ତି କରାଯାଇଥିଲା । ଶ୍ୟାମସୁନ୍ଦର ସାହୁ ଲାଠିପଡା ସଭାରେ ବକ୍ତୃତା ଦେଇଥିବା ହେତୁ ସେ ମଧ୍ୟ ଗିରଫ ହୋଇ ଜେଲ୍‌କୁ ଗଲେ ।

# କଂଗ୍ରେସ ବେଆଇନ୍ ଘୋଷିତ ହେଲା

ନୟାଗଡ଼ରେ ସଭ, ଶୋଭଯାତ୍ରା, ବିକ୍ଷୋଭ ଏବଂ ଗିରଫଦାରୀ ଚାଲିଥିବା ସମୟରେ ତା ୮-୮-୪୨ ଦିନ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ ଅଧିବେଶନ ଗାନ୍ଧିଜୀଙ୍କ କଳ୍ପିତ ଭାରତଛାଡ଼ ଆନ୍ଦୋଳନକୁ ବହୁ ଆଲୋଚନା ପରେ ସର୍ବସମ୍ମତିକ୍ରମେ କାର୍ଯ୍ୟପନ୍ଥା ଗ୍ରହଣ କରିବା ପାଇଁ ମହାତ୍ମାଗାନ୍ଧିଙ୍କ ଉପରେ ପୂର୍ଣ୍ଣ ଦାୟିତ୍ୱ ଅର୍ପଣ କଲେ। ମହାତ୍ମାଗାନ୍ଧି କୌଣସି କାର୍ଯ୍ୟକ୍ରମ ଗ୍ରହଣ କରିବା ପୂର୍ବରୁ ଇଂରେଜ ସରକାର ଆତଂକିତ ହୋଇ ତା ୯-୮-୪୨ରିଖ ଭୋରରୁ ମହାତ୍ମାଗାନ୍ଧି ସମେତ ସମଗ୍ର ଭାରତବର୍ଷର ସମସ୍ତ ଜଣାଶୁଣା କଂଗ୍ରେସ ତଥା ପ୍ରଜା-ମଣ୍ଡଳ ନେତାମାନଙ୍କୁ ଗିରଫ କରିବା ଫଳରେ ଦେଶରେ ବିଦ୍ରୋହର ନିଆଁ ଛାଏଁ ଛାଏଁ ଜଳିଉଠିଲା। ଆନ୍ଦୋଳନକୁ ନିର୍ଦ୍ଦିଷ୍ଟ ପନ୍ଥାରେ ଚଳାଇବାପାଇଁ ବାହାରେ କୌଣସି ନେତା ନରହିବାରୁ ଯିଏ ଯେଭଳି ବିଚାର କଲେ ସେ ସେଭଳି ପନ୍ଥାରେ ଆନ୍ଦୋଳନ କଲେ । ଏଠାରେ ହିଂସା ଅହିଂସାର ପ୍ରଶ୍ନ ରହିଲା ନାହିଁ । ଏହି ପରିପ୍ରେକ୍ଷୀରେ ନୟାଗଡ଼ ଜନତା ମଧ୍ୟ ମାତି ଉଠିଥିଲେ। କଂଗ୍ରେସକୁ ଇଂରେଜ'ସରକାର ବେଆଇନ ଘୋଷଣା କରିବା ସଙ୍ଗେ ସଙ୍ଗେ ନୟାଗଡ଼ ରାଜା ନୟାଗଡ଼ ପ୍ରଜାମଣ୍ଡଳକୁ ବେଆଇନ ଘୋଷଣା କଲେ, ବାହାରେଥିବା ନୟାଗଡ଼ ପ୍ରଜାମଣ୍ଡଳର କର୍ମୀମାନେ ଭାରତଛାଡ଼ ଆନ୍ଦୋଳନ ସହିତ ତାଳ ପକାଇ କାର୍ଯ୍ୟ ଆରମ୍ଭ କରିଦେଲେ। ଆଗରୁ ସଭସମିତି ଶୋଭଯାତ୍ରା ମଧ୍ୟରେ ବିକ୍ଷୋଭ ପ୍ରକାଶିତ ହୋଇଥିଲା ବର୍ତ୍ତମାନ ତାହା ବିରାଟ ଆକାର ଧାରଣ କଲା । ତା ୧୭-୮-୪୨ ଦିନ ରାଜ୍ୟସାରା ହରତାଳ ପାଳନ ପାଇଁ ପ୍ରଜାମଣ୍ଡଳ ପକ୍ଷରୁ ଆହ୍ୱାନ କରାଗଲା । ତା ୧୪ ୮-୪୨ ଦିନ ପଡ଼ିଆ ସାମିଲି ମଲ୍ଲୁଲିଆ ମହାଦେବଙ୍କ ପ୍ରାଙ୍ଗଣରେ ଏକ ସାଧାରଣସଭ ହେବାର ସ୍ଥିର ହୋଇଥିଲା । ରାଜା ଏହା ଜାଣିବା ପରେ ଦଶପଲ୍ଲା ୧୯୧୪ ବିଦ୍ରୋହରେ ଲୋକଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିଥିବା ସିପାହି ନାଜର ମହମ୍ମଦଙ୍କ ନେତୃତ୍ୱରେ ୫୦ଜଣ

ପୋଲିସ୍ ଫୋର୍ସ ମହୁଲିଆ ସଭା ଭାଙ୍ଗିବାକୁ ଯାଇ ଲୋକଙ୍କ ଉପରେ ଅତ୍ୟାଚାର ଚଳାଇଲେ । ଏହି ପୋଲିସ୍ ଦଳ କୌଣସି ଭଲ ମନ୍ଦ ବିଚାର ନ କରି ଯେଉଁଠି ଯାହାକୁ ଦେଖିଲେ ତାକୁ ନିର୍ମମଭାବେ ମାଡ଼ ଦେଲେ । ଏହା ଫଳରେ ପ୍ରଜାମଣ୍ଡଳ କର୍ମୀ ଲଡୁକେଶ୍ୱର ମିଶ୍ର ଓ ଭୁବନେଶ୍ୱର ଭୂୟାଁ, ରାମଚନ୍ଦ୍ର ବିଶ୍ୱାଳ, ରାମ ବେହେରା ପ୍ରମୁଖ ପୋଲିସ୍‌ଙ୍କ ବନ୍ଧୁକ କୁନ୍ଦା ଓ ବାଇଓନଟ୍ ଆଘାତରେ କ୍ଷତବିକ୍ଷତ ହୋଇ ଗିରଫ ହେଲେ । ଠିକଣା ସମୟରେ ମହୁଲିଆ ସଭାରେ ହଜାର ହଜାର ଲୋକ ଉପସ୍ଥିତ ହେଲେ । ଉଦ୍ୟନାଥ ପୃଷ୍ଟିଙ୍କ ସଭାପତିତ୍ୱରେ ସଭାକାର୍ଯ୍ୟ ଚାଲିଲା । କର୍ମୀ ଭରତ ସାହୁ, ବିନାୟକ ମିଶ୍ର ଓ ବିଦ୍ୟାଧର ମନ୍ତ୍ରୀ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେବା ପାଇଁ ଅନୁରୋଧ କରିଥିଲେ । ତା'ପରେ ସଭାପତି ଭାରତ-ଛାଡ଼ ଆନ୍ଦୋଳନର ଗୁରୁତ୍ୱ ବୁଝାଉଥିବାବେଳେ ପୋଲିସ୍‌ମାନେ କର୍ମୀମାନଙ୍କୁ ମାଡ଼ଦେଇ ଗିରଫ କରି ସଭାସ୍ଥଳରୁ ଆଣିଥିଲେ । ସେମାନଙ୍କ ଦେହରୁ ଧାର ଧାର ରକ୍ତ ବୋହି ଯାଉଥିବାର ଦେଖି ରକ୍ତର ପରିଶୋଧ ରକ୍ତରେ ନେବାକୁ ଲୋକେ ଉଦ୍ୟତଥିବାରୁ ଏଭଳି କାର୍ଯ୍ୟ ନ କରିବା ପାଇଁ ଉଦୟନାଥ ପୃଷ୍ଟି ଅନୁରୋଧ କରି ଜନତାଙ୍କୁ ଶାନ୍ତ କରାଇଲେ । ଉଦୟନାଥ ପୃଷ୍ଟି ସମେତ ୧୬ଜଣଙ୍କୁ ଗିରଫ କରି ଗୋଡ଼ପଡା ଆଉଟ୍ ପୋଷ୍ଟକୁ ନିଆଗଲା । ମାତ୍ର ଉଦୟନାଥ ପୃଷ୍ଟି, ଭରତ ସାହୁ, ବିନାୟକ ମିଶ୍ର ଓ ବିଦ୍ୟାଧର ମନ୍ତ୍ରୀମାନଙ୍କୁ ଜେଲ ହାଜତକୁ ପଠାଇଦେଇ ଅନ୍ୟମାନଙ୍କୁ ଛାଡ଼ ଦିଆଗଲା । ମାଳଝଅଳର କର୍ମୀ କୁଣିଆ ପ୍ରଧାନ, ଭଗବତ ଜାନି, ଲକ୍ଷ୍ମୀଧର ପ୍ରଧାନ, ମୂଳି ପ୍ରଧାନ ପ୍ରମୁଖ ଗାଁ ଗାଁ ବୁଲି ଭାରତଛାଡ଼ ଆନ୍ଦୋଳନରେ ଯୋଗଦେବା ପାଇଁ ଲୋକଙ୍କୁ ସଙ୍ଗଠିତ କରୁଥିବାରୁ ସେମାନେ ମଧ୍ୟ ଗିରଫ ହେଲେ । ଏହି ପରିପ୍ରେକ୍ଷୀରେ ତା୧୨-୮-୪୨ ଦିନ ସମଗ୍ର ନୟାଗଡ଼ରେ ହରତାଳ ପାଳନ କରିବା ପାଇଁ ପ୍ରଜାମଣ୍ଡଳ ଆହ୍ୱାନ ଦେବାରୁ ରଡ୍ୟଯାର ସେଦିନ ଲୋକେ ପୂର୍ଣ୍ଣ ହରତାଳ ପାଳନ କରିଥିଲେ । ଓଡଗାଁ ଆନ୍ଦୋଳନର କେନ୍ଦ୍ରସ୍ଥଳ ଥିବାରୁ ଏହି ଗ୍ରାମକୁ ସମ୍ପୂର୍ଣ୍ଣ ତଚନଚ କରିଦେଲେ ଆନ୍ଦୋଳନ ବନ୍ଦ ହୋଇଯିବ, ସମ୍ଭବତଃ ଏହି ଉଦ୍ଦେଶ୍ୟ ରଖି ତା ୧୬-୮-୪୨ ରିଖ ଅର୍ଦ୍ଧରାତ୍ର ସମୟରେ ସ୍ଥାନୀୟ ପୋଲିସ୍, ଚୌକିଦାରମାନଙ୍କ ସହିତ ୩୦୦ ଶିଖ୍ ସୈନ୍ୟ, ଆସିଷ୍ଟାଣ୍ଟ ଦେଓ୍ୱାନ ଚୌଧୁରୀ ବଳଭଦ୍ର ପ୍ରସାଦ ଦାସଙ୍କ ନେତୃତ୍ୱରେ ଓଡଗାଁ ଘେରାଉକଲେ ।

ଦେଓ୍ୟାନ ଜନାର୍ଦ୍ଦନ ନନ୍ଦ ଆନ୍ଦୋଳନ ଧ୍ୱଂସ କରିବାର ସର୍ବୋଚ୍ଚ ଦାୟିତ୍ୱରେ ଥିବାରୁ ସେ ଓଡଗାଁ ଡାକବଙ୍ଗଳାରେ ଅବସ୍ଥାନ କରୁଥା'ନ୍ତି । ତା ୧୬-୮-୪୨ଦିନ ନିଦ୍ରା ତ୍ୟାଗକରି ଲୋକେ ଦେଖନ୍ତତ ସୈନ୍ୟବାହିନୀ ଦଳ ଦଳ ହୋଇ ଓଡଗାଁର ସମସ୍ତ ପ୍ରବେଶପଥ ଜଗି ବନ୍ଦକରି ଦେଇଛନ୍ତି । ବାହାରର କୌଣସି ଲୋକକୁ ଓଡଗାଁ ଭିତରକୁ ବା ଓଡଗାଁର କୌଣସି ଲୋକକୁ ଗାଁ ବାହାରକୁ ଛାଡ ଦିଆଯାଉନାହିଁ । ବୀରଭୂଇଁ ଓଡଗାଁର ଲୋକେ ସବୁଦିନଭଳି ସ୍ୱାଭବିକ ଭବେ ନିଜର ନିତ୍ୟନୈମିତିକ କାର୍ଯ୍ୟ ଶେଷ କରିନପାରି ଘରଭିତରେ ରହିଲେ । ଦୋକାନ ବଜାର, ହୋଟେଲ ସବୁ ବନ୍ଦ । ସଶସ୍ତ୍ର ସୈନ୍ୟବାହିନୀ ସହିତ କ୍ଷମତାପ୍ରାପ୍ତ ମାଜିଷ୍ଟ୍ରେଟ୍ ଓଡଗାଁ ଭିତରେ ପଶି ଦୋକାନ, ବଜାର, ହୋଟେଲ ବନ୍ଦଥିବାର ଦେଖି ସ୍ଥାନୀୟ ପୋଲିସ୍ ସବ୍ଇନ୍ସପେକ୍ଟର ବିନାୟକ ଆଚାର୍ଯ୍ୟଙ୍କ ଚିହ୍ନଟକ୍ରମେ ଦୋକାନମାନଙ୍କର ତାଲା ଭାଙ୍ଗି ମସଲା ଦୋକାନରୁ ମସଲା, ଲୁଗା ଦୋକାନରୁ ଲୁଗା, ପାନ ଦୋକାନରୁ ପାନ ଇତ୍ୟାଦି ଲୁଟ୍କଲେ । ଯେଉଁଠି ଯାହାକୁ ଦେଖିଲେ ତାକୁ ବେପରୁଆ ଭବେ ମାଡଦେଲେ । ଘର ଘର ପଶି ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସୈନ୍ୟବାହିନୀ ଜୁଲୁମ ଚଳାଇଲେ । ସୈନ୍ୟମାନଙ୍କର ଏଭଳି ଅନ୍ୟାୟ କାର୍ଯ୍ୟର ପ୍ରତିବାଦ କରିବାରୁ ପ୍ରଜାମଣ୍ଡଳର ୯୦ବର୍ଷିୟାନ ବୃଦ୍ଧ କର୍ମୀ ଶ୍ରୀ ଭୁବନେଶ୍ୱର ରାଇଗୁରୁଙ୍କୁ ସୈନ୍ୟମାନେ ଭିଡଆଣି ଦାଣ୍ଡରେ ପକାଇଦେଇ ଦଳିଚକଟି ଅଚେତକରି ପକାଇଦେଲେ । କର୍ମୀ ନିତ୍ୟାନନ୍ଦ ଦାଶ, ଲିଙ୍ଗରାଜ ବେହେରା, ଜଗନ୍ନାଥ ସାହୁ, ବାସୁ ପରିଡା ଓ କେଳି ଚୌଧୁରୀ ଏହି ଅତ୍ୟାଚାରର ପ୍ରତିବାଦ କରିବାରୁ ସେମାନଙ୍କୁ ଗିରଫ କରି ଜେଲ୍କୁ ପଠାଇଦେଲେ । ଦିନସାରା ସୈନ୍ୟବାହିନୀ ଓଡଗାଁ ଲୁଟ୍କରି ଲକ୍ଷ ଲକ୍ଷ ଟଙ୍କାର ଦ୍ରବ୍ୟ ବୋହି ନେଇଗଲେ । ପୋଲିସ୍ଙ୍କ ହାବୁଡରେ ପୋଷା ଖସି ମଧ୍ୟ ବାଦ୍ ଗଲେନାହିଁ । ଏହାଫଳରେ ଓଡଗାଁବାସୀଙ୍କର ଯେଉଁ କ୍ଷତି ହେଲା, ତାହା ସେମାନେ ବହୁଦିନ ପର୍ଯ୍ୟନ୍ତ ପୂରଣ କରି ପାରିନଥିଲେ । ବିଶେଷ ଉଲ୍ଲେଖଯୋଗ୍ୟ ଏହି ଯେ ଲୁଟ୍ରେ ଭଗବାନ ଚୌଧୁରୀଙ୍କର ତତ୍କାଳୀନ ମୂଲ୍ୟାନୁଯାୟୀ ପ୍ରାୟ ୨୦ହଜାର ଟଙ୍କାର ଦୋକାନଟି ଲୁଟ୍ ହୋଇଯାଇଥିଲା ।

ଓଡଗାଁ ଲୁଟ୍‌ତରାଜ ପରେ ନୟାଗଡରେ କିଛିଦିନ ପାଇଁ ଆନ୍ଦୋଳନ ଥିମେଇଗଲା ଭଳି ଜଣାପଡିଲା ସତ୍ୟ, ମାତ୍ର ଭିତରେ ଭିତରେ ଖୁବ୍ ଜୋର୍‌ରେ ପୁନର୍ବାର ଆନ୍ଦୋଳନ ପାଇଁ କର୍ମୀମାନେ ଗ୍ରାମ ସଙ୍ଗଠନ କଲେ । କର୍ମୀ ଆନନ୍ଦ ଚନ୍ଦ୍ର ସ୍ୱାଇଁ, ସଦାଶିବ ଷଡଙ୍ଗୀ, ଲକ୍ଷ୍ମଣ ସାହୁ, ନାରାୟଣ ଉପାଧ୍ୟାୟ ପ୍ରମୁଖ କୁମ୍ଭାପଡାଠାରେ ଏକତ୍ରିତ ହୋଇ ଉପସ୍ଥିତ ଆନ୍ଦୋଳନ ସମ୍ପର୍କରେ ଆଲୋଚନା କରି ନୟାଗଡ ରାଜ୍ୟର ସମସ୍ତ ସରକାରୀ କାର୍ଯ୍ୟାଳୟ ଦଖଲ କରିବାପାଇଁ ସ୍ଥିରକଲେ । କେତେକ ଅସୁବିଧା ହେତୁ ଏହା ଯେତେ ଶୀଘ୍ର ହେବାକଥା, ତାହା ହୋଇପାରିଲା ନାହିଁ । ତା ୮-୧୦-୪୨ଦିନ ବାହାଡାଝୋଲା ନିକଟବର୍ତ୍ତୀ ଜଙ୍ଗଲ ମଧ୍ୟସ୍ଥ ମଧୁଆଖଳି ପଡଆରେ ଶତାଧିକ ପ୍ରଜାମଣ୍ଡଳ କର୍ମୀ ଓ ପ୍ରେମୀ ବ୍ୟକ୍ତିଙ୍କର ଏକ ବୈଠକ ହୋଇ ସ୍ଥିରହେଲା ଯେ ନୟାଗଡର ସମସ୍ତ ସରକାରୀ କାର୍ଯ୍ୟାଳୟ ଦଖଲ କରିବାପାଇଁ ୫ଟି ସମରବାହିନୀ ଗଠନ କରାଯିବ ଏବଂ ଉକ୍ତ ବାହିନୀ ୯ତାରିଖ ଦିନ ଏକା ସମୟରେ କାର୍ଯ୍ୟ ଆରମ୍ଭ କରିବେ । ପ୍ରଥମ ଦଳ ଆନନ୍ଦଚନ୍ଦ୍ର ସ୍ୱାଇଁ, ଓ ପୂର୍ଣ୍ଣଚନ୍ଦ୍ର ମଲ୍ଲିକଙ୍କ ନେତୃତ୍ୱରେ ବରକୋଳାଠାରୁ ନୂଆଗାଁ ଦେଇ ନୟାଗଡ, ୨ୟ ଦଳ ବାହାଡାଝୋଲାଠାରୁ ବାହାରି ଲକ୍ଷ୍ମଣ ସାହୁ ଓ ସୁଦର୍ଶନ ପୃଷ୍ଟିଙ୍କ ନେତୃତ୍ୱରେ ମହିପୁର ଦେଇ ନୟାଗଡ, ୩ୟ ଦଳ ନାରାୟଣ ଉପାଧ୍ୟାୟଙ୍କ ନେତୃତ୍ୱରେ ଓଡଗାଁରୁ ବାହାରି ଶରଣକୁଳ ଦେଇ ନୟାଗଡ ୪ର୍ଥ ଦଳ ସଦାଶିବ ଷଡଙ୍ଗୀଙ୍କ ନେତୃତ୍ୱରେ ଗୋଡିପଡାରୁ ବାହାରି ଇଟାମାଟି ଦେଇ ନୟାଗଡ ଏବଂ ୫ମ ଦଳ ଜଗନ୍ନାଥ ପରିଡା ଓ ସୁଦର୍ଶନ ସ୍ୱାଇଁଙ୍କ ନେତୃତ୍ୱରେ ମହିପୁରଠାରୁ ବାହାରି ମାଳିସାହି, ବାଲୁଗାଁ ଦେଇ ନୟାଗଡ ଯିବେ । ସମସ୍ତେ ଏକତ୍ରିତ ହେବାପରେ ନୟାଗଡ ଟାଉନ୍ ଅବରୋଧ କରାଯିବ । ସମର ବାହିନୀ ଯିବା ସମୟରେ ବାଟରେ ଯେତେ ସରକାରୀ କାର୍ଯ୍ୟାଳୟ ପଡିବ, ସେଠାରେ ଥିବା ସରକାରୀ କର୍ମଚାରୀଙ୍କଠାରୁ ପ୍ରଜାମଣ୍ଡଳ ପ୍ରତି ଅନୁରକ୍ତପତ୍ର ଲେଖାଇଦେବେ ଏବଂ ଉକ୍ତ ସରକାରୀ କାର୍ଯ୍ୟାଳୟ ନିଜ ଦଖଲରେ ରଖିନେବେ । ଏହି କାର୍ଯ୍ୟକ୍ରମ ତା ୯।୧୦।୪୨ ରାତ୍ର ୯ଘଣ୍ଟା ସମୟରେ ସମସ୍ତ କେନ୍ଦ୍ରରୁ ଆରମ୍ଭ ହେବ । ପ୍ରସ୍ତାବ ମୁତାବକ ଠିକ୍ ସମୟରେ ୧ମ, ୨ୟ ଓ ୫ମଦଳ ନିଜ ନିଜର କାର୍ଯ୍ୟ ଆରମ୍ଭ କଲେ । ୩ୟ ଓ ୪ର୍ଥଦଳର ନେତା ନାରାୟଣ ଉପାଧ୍ୟାୟ ଏବଂ ସଦାଶିବ ଷଡଙ୍ଗୀ ଠିକ୍ ସମୟରେ ତାଙ୍କ କେନ୍ଦ୍ରମାନଙ୍କରେ ପହଞ୍ଚି

ନ ପାରିବାରୁ ଓଡଗାଁ ଏବଂ ଗୋଡ଼ପଡ଼ାର କାର୍ଯ୍ୟ ହୋଇପାରିଲାନାହିଁ । ୧ମ ବାହିନୀ ପୂର୍ଣ୍ଣଚନ୍ଦ୍ର ମଲ୍ଲିକ ଏବଂ ଆନନ୍ଦଚନ୍ଦ୍ର ସ୍ୱାଇଁଙ୍କ ନେତୃତ୍ୱରେ ବରକୋଳାଠାରେ ସହସ୍ରାଧିକ ବିପ୍ଳବୀଙ୍କ ଗହଣରେ କାର୍ଯ୍ୟ ଆରମ୍ଭ କରିଥିଲେ । ଆନ୍ଦୋଳନକୁ ଦବାଇବା ପାଇଁ ଜଣେ ଏ. ଏସ୍. ଆଇ, ଚାରିଜଣ ବନ୍ଧୁକଧାରୀ କନେଷ୍ଟବଲଙ୍କ ସହିତ ବରକୋଳା ବଙ୍ଗଳାରେ ଅବସ୍ଥାନ କରୁଥିଲେ । ବିପ୍ଳବୀ ବାହିନୀ ଏହା ଜାଣିପାରି ଆଶ୍ରୟ ନେଇଥିବା ଉକ୍ତ କର୍ମଚାରୀମାନଙ୍କୁ ଯଥାଶୀଘ୍ର ଆନୁଗତ୍ୟ ସ୍ୱୀକାରପତ୍ର ସ୍ୱାକ୍ଷର କରିବାପାଇଁ ନିର୍ଦ୍ଦେଶ ଦେବାରୁ ବଙ୍ଗଳା ଭିତରେ ଆଶ୍ରୟ ନେଇଥିବା ସମସ୍ତ ପୋଲିସ୍‌ମାନେ ବଙ୍ଗଳା ଭିତରୁ ବାହାରିଆସି ବିପ୍ଳବୀଙ୍କ ନିକଟରେ ସମସ୍ତ ଅସ୍ତ୍ରଶସ୍ତ୍ର ସମର୍ପଣ କରି ଆନୁଗତ୍ୟପତ୍ରରେ ସ୍ୱାକ୍ଷର କଲେ । ବିପ୍ଳବୀମାନେ ୪ଟି ବନ୍ଧୁକ ପୋଲିସ୍‌ଙ୍କଠାରୁ ପାଇ ଡାକବଙ୍ଗଳାରେ ଅଗ୍ନିସଂଯୋଗ କରି ପାଇଥିବା ୪ଟି ବନ୍ଧୁକକୁ ନିଆଁ ଭିତରକୁ ଫିଙ୍ଗିଦେଲେ । ବରକୋଳାଠାରୁ ନୂଆଗାଁ ଯିବା ବାଟରେ ଯେତେଗୁଡ଼ିଏ ସରକାରୀ ଅନୁଷ୍ଠାନ ଥିଲା, ବିପ୍ଳବୀମାନେ ସେ ସମସ୍ତ ପୋଡ଼ିଦେଇଥିଲେ । ନୂଆଗାଁ ଥାନା ଆଗରୁ ସମନ୍ୱିତ ପୋଲିସ୍ ବାହିନୀ ଆନ୍ଦୋଳନ ଦମନ କରିବା ପାଇଁ ରଖା ମୁତୟନ କରିଥା'ନ୍ତି । ଏହା ବିପ୍ଳବୀ ବାହିନୀଙ୍କର ଅଗୋଚର ଥିଲା । ସେମାନେ ନୂଆଗାଁ ଥାନା ଦଖଲ କରିବା ପାଇଁ ଅଗ୍ରସର ହୁଅନ୍ତେ, ଥାନା ଭିତରୁ ସୁସଜ୍ଜିତ ପୋଲିସ୍ ବାହିନୀ କୌଣସି ସଂକେତ ନଦେଇ ନିର୍ମମ ଭାବେ ଗୁଳି ଚଳାଇଲେ । ଗୁଳି ଆଘାତରେ ଶତାଧିକ ଲୋକ କ୍ଷତବିକ୍ଷତ ହେବା ସଙ୍ଗେ ସଙ୍ଗେ ଶହୀଦ୍ କୃଷ୍ଣ ଡାକୁଆ ଗୁଳିଗ୍ରେଟରେ ତା ୧୦।୧୦।୪୨ ଦିନ ପ୍ରାଣ ହରାଇଲେ ଏବଂ ବିପ୍ଳବୀଦଳ ଛତ୍ରଭଙ୍ଗ ଦେଲେ । ୨ୟ ବାହିନୀ ସୁଦର୍ଶନ ପୃଷ୍ଟି, ଅଭିମନ୍ୟୁ ସେନାପତି ଓ ଚନ୍ଦ୍ରମଣି ସାହୁଙ୍କ ଦ୍ୱାରା ପରିଚାଳିତ ହୋଇ ବାହାଡ଼ାଝୋଲାଠାରୁ ଅଭିଯାନ ଆରମ୍ଭ କଲେ । ମହିପୁର ଯିବା ବାଟରେ ଯେଉଁ ସବୁ ସରକାରୀ କାର୍ଯ୍ୟାଳୟ ଦେଖିଲେ, ସେସବୁ ପୋଡ଼ିଦେଲେ । ଏହା ଜାଣିପାରି ବାହାଡ଼ାଝୋଲ ଫାଣ୍ଡିରେ ରହିଥିବା ସୈନ୍ୟଦଳ ଅଚାନକଭାବେ ବିପ୍ଳବୀମାନଙ୍କର ସମ୍ମୁଖୀନ ହୋଇ ନିର୍ମମ ଭାବେ ଅତ୍ୟାଚାର ଚଳାଇବାରୁ ବିପ୍ଳବୀଦଳ ଛିନ୍ନଛତ୍ର ହୋଇଗଲେ । ପୁନର୍ବାର ଏହି ଦଳ ସଂଗଠିତ ହୋଇ ଆନ୍ଦୋଳନ ପାଇଁ ଆଗେଇ ଆସୁଥିବା ସମୟରେ ବହୁସଂଖ୍ୟକ ସୈନ୍ୟ ଆସି ଘଟଣାସ୍ଥଳରେ ପହଞ୍ଚିବାରୁ ଆନ୍ଦୋଳନକାରୀମାନେ ଅଧିକ

ଅଗ୍ରସର ହୋଇପାରିଲେ ନାହିଁ । କସ୍ତୁରୀ ପରିଡା ଓ ସୁଦର୍ଶନ ସ୍ୱାଇଁଙ୍କ ନେତୃତ୍ୱରେ ପରିଚାଳିତ ବାହିନୀ ମହିପୁର ଅଞ୍ଚଳର ସରକାରୀ କାର୍ଯ୍ୟାଳୟମାନ ପୋଡ଼ି ଏବଂ ରାଜକର୍ମଚାରୀମାନଙ୍କଠାରୁ ଆନୁଗତ୍ୟପତ୍ର ଲେଖାଇ ନେଇ ମାଳିସାହି ଅଭିମୁଖେ ଅଗ୍ରସର ହେଉଥିବା ବେଳେ ସୈନ୍ୟବାହିନୀର ଆକ୍ରମଣ ଫଳରେ ଏହି ଦଳ ମଧ୍ୟ ଛତ୍ରଭଙ୍ଗ ଦେଲେ । ଗୋଦାବରୀଶ ବିଦ୍ୟାପୀଠର ଛାତ୍ର ବିନାୟକ ମିଶ୍ର ଗୋଡ଼ପଡ଼ାରେ ପହଞ୍ଚି ପାଣ୍ଡୁଚରଣ ସାହୁ, ବିଷ୍ଣୁ ଭୂୟାଁ, ଲଡୁକେଶ୍ୱର ମିଶ୍ର ପ୍ରମୁଖ କର୍ମୀମାନଙ୍କ ସହିତ ୧୦ ତାରିଖ ଦିନ ଗୋଡ଼ପଡ଼ାକୁ ଆସିଥିବା ଟେଲିଫୋନ୍ ଲାଇନ୍ କାଟିଦେଇ ନୟାଗଡ଼ ଅଭିମୁଖେ ଅଗ୍ରସର ହେଉଥିବା ବେଳେ ଅନ୍ୟତ୍ର ଆନ୍ଦୋଳନ ବନ୍ଦ ହୋଇଯିବା ସମ୍ବାଦ ପାଇ ଅଗ୍ରସର ହୋଇନଥିଲେ । ଛାତ୍ର ନେତା ବିନାୟକ ମିଶ୍ର, କର୍ମୀ ରାମଚନ୍ଦ୍ର ବିଶ୍ୱାଳ କେତେକ ଲୋକଙ୍କୁ ସଙ୍ଗରେ ନେଇ ପଣ୍ଡୁସର ପୋଲ ଭାଙ୍ଗି ନୟାଗଡ଼ ସହିତ ବାହ୍ୟ ଜଗତର ଯାତାୟତ ସମ୍ପର୍କ ଛିନ୍ନକରି ଆନ୍ଦୋଳନ ଚଳାଇବା ପାଇଁ ଚେଷ୍ଟା କରିଥିଲେ । କିନ୍ତୁ ପଣ୍ଡୁସର ପୋଲ ଭାଙ୍ଗି ନ ପାରିବାରୁ ଆଉ ଆନ୍ଦୋଳନ ହୋଇପାରିଲା ନାହିଁ । କର୍ମୀ ଭଗବାନ ମହାନ୍ତ, ନାରାୟଣ କର, ବିଶ୍ୱନାଥ ଡାକୁଆ ଓ ଲଡୁ ଡାକୁଆ ବଡ଼ପଣ୍ଡୁସର ଡାକବଙ୍ଗଳା ଓ ହରେକୃଷ୍ଣପୁର ସ୍କୁଲଗୃହ ପୋଡ଼ିଦେଲେ । ବିଶ୍ୱନାଥ ଡାକୁଆ ଓ ଲଡୁ ଡାକୁଆ ଗିରଫ ହୋଇ ବର୍ଷାଧିକ କାଳ ଜେଲ୍ ହାଜତରେ ରହିଥିଲେ ।

ତିନୋଟିଦିନ ପ୍ରଜାମଣ୍ଡଳର କର୍ମୀମାନେ ରାଜ୍ୟରେ ବିପ୍ଳବର ନିଆଁ ଜାଳିଦେଇ ସଶସ୍ତ୍ର ସୈନ୍ୟବାହିନୀର ଆକ୍ରମଣ ଫଳରେ ଛତ୍ରଭଙ୍ଗ ଦେଲେ ସତ୍ୟ, ମାତ୍ର ଅନ୍ୟ ଏକ ଆନ୍ଦୋଳନ କରିବା ପାଇଁ କେତେକ କର୍ମୀ ଆତ୍ମଗୋପନ କଲେ । ଏହି ଆନ୍ଦୋଳନକୁ ଦମନ କରିବାପାଇଁ ପଲିଟିକାଲ୍ ଏଜେଣ୍ଟ ନୟାଗଡ଼ରେ ଉପସ୍ଥିତ ରହି ସହସ୍ରାଧିକ ସୈନ୍ୟଙ୍କର ପରିଚାଳନା କରୁଥିଲେ । ଆନ୍ଦୋଳନ ଦମନ କରିସାରିବା ପରେ ପଲିଟିକାଲ୍ ଏଜେଣ୍ଟ ସୈନ୍ୟମାନଙ୍କ ସହିତ ଗାଁମାନଙ୍କରେ ପଶି ନାଦିର୍ ଶାହାଙ୍କ ପରି ଲୁଣ୍ଠନ କାର୍ଯ୍ୟ ଚଳାଇଲେ । ଏହାଫଳରେ ଓଡ଼ଗାଁ ଏବଂ ନୂଆଗାଁ ଥାନାର ହଜାର ହଜାର ଲୋକ ସର୍ବସ୍ୱାନ୍ତ ହୋଇଗଲେ । ଏହି ଲୁଣ୍ଠନ

କାର୍ଯ୍ୟ ସପ୍ତାହବ୍ୟାପୀ ଚାଲିଥିଲା । ପଲିଟିକାଲ୍ ଏଜେଣ୍ଟ ଲୁଣ୍ଠନ ଉଦ୍ଦେଶ୍ୟରେ ସୈନ୍ୟବାହିନୀକୁ ନେଇ ସର୍ବପ୍ରଥମେ ବାହାଡାଝୋଲା ଗ୍ରାମକୁ ଆକ୍ରମଣ କଲେ । ଘର ଲୁଟ୍ କରିବା ସଙ୍ଗେ ସଙ୍ଗେ ଯେଉଁଠି ଯାହାକୁ ଦେଖିଲେ ତାକୁ ନିର୍ମମ ମାଡ଼ଦେଲେ । ବୃଦ୍ଧ କର୍ମୀ ଜନାର୍ଦ୍ଦନ ସୁବୁଦ୍ଧି ଏହାର ପ୍ରତିବାଦ କରିବାରୁ ତାଙ୍କ ପୁତ୍ର ପ୍ରଫୁଲ୍ଲ କୁମାର ସୁବୁଦ୍ଧି, ଲକ୍ଷ୍ମଣ ସାହୁ, ଦୟାନିଧି ମହାପାତ୍ର, ମାଧବ ସେଠୀଙ୍କ ସହିତ ତାଙ୍କୁ ସାଧାରଣ ରାସ୍ତା ଉପରେ ଶୁଆଇଦେଇ ୨୦ବେତ ଲେଖାଏଁ ପ୍ରହାର କଲେ । ଏହିଭଳି ବାହାଡାଝୋଲା ଅଞ୍ଚଳରେ ୩ଦିନକାଳ ଲୁଣ୍ଠନ କାର୍ଯ୍ୟ ଚଳାଇ ଲୁଣ୍ଠନକାରୀ ଦଳ ନୂଆଗାଁ ଅଞ୍ଚଳକୁ ଗଲେ । ନୂଆଗାଁ ଏବଂ ମହିପୁର ଅଞ୍ଚଳ ଲୁଟ୍ ସମୟରେ ଧନଦ୍ରବ୍ୟ ଲୁଟ୍‌କରିବା ସହିତ ସ୍ତ୍ରୀ, ପୁରୁଷ, ବାଳକ, ବାଳିକା ନିର୍ବିଶେଷରେ ସମସ୍ତଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳାଇଲେ । ଯାହାଘରେ ଯାହାଥିଲା, ସମସ୍ତ ଦ୍ରବ୍ୟ ଲୁଣ୍ଠନକାରୀମାନେ ଲୁଣ୍ଠନ କରିନେଲେ । ଥୁଆବାରୀ ଗ୍ରାମବାସୀ ଆନ୍ଦୋଳନର ନେତୃତ୍ୱ ନେଇ-ଥିବାରୁ ଉକ୍ତ ଗ୍ରାମର ଗୃହପାଳିତ ପଶୁ ସମେତ ସମସ୍ତ ସମ୍ପତ୍ତି ଲୁଟ୍ କରାଯାଇଥିଲା ଏବଂ ଗ୍ରାମର ସମସ୍ତ ପୁରୁଷ ଲୋକଙ୍କୁ ଗିରଫକରି ଜେଲକୁ ପଠାଗଲା । ଲୁଣ୍ଠନ କାର୍ଯ୍ୟ ସହିତ ସହସ୍ରାଧିକ ଲୋକଙ୍କୁ ଗିରଫକରି ନୟାଗଡ଼ ଅଣାଯାଇଥିଲା । ଏତେ ଅଧିକ ଲୋକ ରଖିବାପାଇଁ ଜେଲ୍‌ରେ ସ୍ଥାନାଭାବରୁ କେବଳ ୨୦୦ ଲୋକଙ୍କୁ ଜେଲ୍‌ରେ ରଖି ଅନ୍ୟମାନଙ୍କୁ ସରକାରୀ କୋଠା-ବାଡ଼ିମାନଙ୍କରେ ରଖାଯାଇଥିଲା । ୮୦ଖଣ୍ଡ ଗ୍ରାମରୁ ହଜାର ହଜାର ଟଙ୍କା ସମୂହ ଜୋରିମନା ଆଦାୟ କରାଯାଇଥିଲା । ବେସରକାରୀ ହିସାବରୁ ଜଣାଯାଏ ୧୯୪୨ ମସିହା ମୂଲ୍ୟ ଅନୁସାରେ ପ୍ରାୟ ୨୦ଲକ୍ଷ ଟଙ୍କାର ସମ୍ପତ୍ତି ସରକାର ଲୋକଙ୍କଠାରୁ ଲୁଟ୍‌କରି ନେଇଥିଲେ । ସେ ଧନ କୁଆଡ଼େଗଲା, ତା'ର ହିସାବ କେହି ରଖିଲେ ନାହିଁ । କର୍ମୀ ଖତି ସାହୁ ନୂଆଗାଁ ଗୁଳିକାଣ୍ଡବେଳେ ସେଠାରେ ଉପସ୍ଥିତ ଥିଲେ । ତାଙ୍କର ମୃତ-ଦେହ କେହି ଦେଖିନଥିଲେ ମଧ୍ୟ ସେ ଗୁଳିଚେଟରେ ମଲେ କି କୁଆଡ଼େ ଗଲେ, ତାହା ଅଦ୍ୟାବଧି ଜଣାପଡ଼େ ନାହିଁ ।

ଜେଲ୍ ଭିତରେ ମୋଟ୍ ୫୦ଜଣ ରହିବା ପାଇଁ ସ୍ଥାନଥିଲେ ମଧ୍ୟ ଜେଲ୍ ଭିତରେ ୨୦୦ରୁ ଅଧିକ ଲୋକଙ୍କୁ ଅବରୁଦ୍ଧକରି ସେମାନଙ୍କର ଖାଇବା, ପିନ୍ଧିବା, ଶୋଇବାର ବ୍ୟବସ୍ଥା କରାଗଲା ନାହିଁ । ସିଏ ଯେଉଁ

ଅବସ୍ଥାରେ ଯେଉଁଭଳି ଶିଥିଳ ହୋଇ ଆସିଥିଲେ ଏହି ବର୍ଷାକାଳରେ ସେହିଭଳି ଅବସ୍ଥାରେ କାଳାତିପାତ କରିବାକୁ ପଡ଼ିଲା । ଖାଇବା ବାସନ ଅଭାବରୁ ଅନନ୍ତକାଳରୁ ପଡ଼ିରହିଥିବା ଲୁହାବାଟିରେ ସେମାନଙ୍କୁ ଖାଇବାକୁ ଦିଆଗଲା । ଉକ୍ତ ଲୁହାବାଟିରେ ଭାତ ପକାଇଲା ମାତ୍ରେ ତାହା ସଙ୍ଗେ ସଙ୍ଗେ କଳାପଡ଼ି ଅଖାଦ୍ୟରେ ପରିଣତ ହୋଇଯାଉଥିବାରୁ ବିପ୍ଳବୀଦଳ ତାହା ଖାଇପାରୁନଥିଲେ । ତେଣୁ ସେମାନେ ଅଧାଁହାରରେ କାଳାତିପାତ କରୁଥିଲେ । ଏତ ଗଳା ଶୃଙ୍ଖଳିତ ଜେଲ୍ ଭିତର କଥା । ମାତ୍ର ବାହାରେ ବିଭିନ୍ନ ଛାଉଣୀରେ ଆବଦ୍ଧ ହୋଇ ରହିଥିବା ବିପ୍ଳବୀମାନଙ୍କ ଅବସ୍ଥା ଆହୁରି ଶୋଚନୀୟ । ଛାଉଣୀ ଭିତରେ ଝାଡ଼ା, ପ୍ରସା ବା ଗାଧୋଇବାର ବ୍ୟବସ୍ଥା ନଥିବାରୁ କାହାରିକୁ ଝାଡ଼ା, ପ୍ରସା ଦେଖାଇଲେ, ଏକାଥରକେ ଦଶପନ୍ଦର ଜଣଙ୍କୁ ଦଉଡ଼ରେ ବାନ୍ଧି ବାହାରକୁ ଝାଡ଼ା କିମ୍ବା ପ୍ରସା କରିବାକୁ ନିଆଯାଉଥିଲା । ବନ୍ଧା ଅବସ୍ଥାରେ ଲୋକେ ଝାଡ଼ା ଏବଂ ପ୍ରସା କରୁଥିଲେ । ଦିନକେ ଥରେ ମଧ୍ୟ ପେଟପୁରା ଖାଦ୍ୟ ସେମାନଙ୍କୁ ଦିଆଯାଉନଥିଲା । ଆନ୍ଦୋଳନ ଦମନ କଲାପରେ ଏବଂ ବିପ୍ଳବୀମାନଙ୍କୁ ନିର୍ଯ୍ୟାତନାର ସମ୍ମୁଖୀନକରାଇ ରାଜା ସେମାନଙ୍କର ଦୁରବସ୍ଥା ଦେଖିବାପାଇଁ ପଲିଟିକାଲ ଏଜେଣ୍ଟଙ୍କ ସହିତ ଜେଲ୍ ପରିଦର୍ଶନ କଲେ । ରାଜନୈତିକ ବନ୍ଦୀମାନେ ସେମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ନ କରିବାରୁ ଜେଲ୍ ଭିତରେ ତାଙ୍କ ଉପରେ ଅତ୍ୟାଚାର ଆରମ୍ଭ ହୋଇଗଲା । ମାଡ଼ତ ସାଧାରଣ କଥା । ଜେଲ୍ ନିୟମାନୁଯାୟୀ ଖାଦ୍ୟ ମଧ୍ୟ ଖାଇବାକୁ ଦିଆଗଲା ନାହିଁ । ନିୟମ ଲଙ୍ଘନ କରି ହାଜତରେ ରଖିଥିବା କର୍ମୀମାନଙ୍କୁ କଠିନ ପରିଶ୍ରମ କରିବାକୁ ବାଧ୍ୟ କରାଯାଉଥିଲା । ଏହାଫଳରେ କର୍ମୀମାନଙ୍କ ମଧ୍ୟରେ ଭୀଷଣ ପ୍ରତିକ୍ରିୟା ଦେଖାଦେଲା । ଏହି ପ୍ରତିକ୍ରିୟାକୁ ଦମନ କରିବା ଉଦ୍ଦେଶ୍ୟରେ କର୍ମୀ ନାରାୟଣ ବେହେରା, ନିତ୍ୟାନନ୍ଦ ଦାଶ ପ୍ରମୁଖଙ୍କୁ ୨୦ବେତ ଲେଖାଏଁ ବେତସଜା ଦିଆଗଲା । ସେମାନଙ୍କର ପିଠି ଫାଟି ଧାର ଧାର ରକ୍ତବୋହି ଯାଉଥିଲେ ମଧ୍ୟ ଆୟୋଡିନ୍ ଓ ବେଞ୍ଜିନ୍ ଦେଇ ବେତ୍ରସଜା ଦିଆ-ଯାଉଥିଲା । ଭରତ ସାହୁ, ଉଦୟନାଥ ପୃଷ୍ଟି, ଜଗନ୍ନାଥ ସାହୁ, ଶୁକ୍ର ବେହେରା, ଅରକ୍ଷିତ ସାହୁ, ରମଚନ୍ଦ୍ର ମହାନ୍ତ ପ୍ରମୁଖଙ୍କୁ ମାଣ୍ଡୁସଜା ଦିଆଗଲା ଅର୍ଥାତ୍ (ଉଘୁନା ଘଉଳକୁ ଘୋରଣାରେ ଗୁଣ୍ଡକରି ସିଝାଇ ଖାଇବାକୁ ଦିଆଯାଏ । )ଏଭଳି ଖାଦ୍ୟ ଗାଁର ଚଷୀ ତା ବଳଦକୁ ଖାଇବାକୁ ଦିଏ । ଏହା ସହିତ ସେ ଲୁଣଟିକିଏ ମଧ୍ୟ ବଳଦକୁ ଦେଇଥାଏ । ମାତ୍ର ନୟାଗଡ଼

ରଜାଙ୍କ ଆଇନ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଏଭଳି ଖାଦ୍ୟଦେବାକୁ କୁଣ୍ଠାବୋଧ କରୁନଥିଲା । ମାଣ୍ଡୁସର୍ଣ୍ଣା ଭୋଗକରୁଥିବା କର୍ମୀମାନେ ଏଭଳି ଅଖାଦ୍ୟକୁ ଖାଇନପାରି ୭ଦିନ ଉପାସରେ କାଳାତିପାତ କରିଥିଲେ । ଏସବୁ ସତ୍ତ୍ୱେ ସେମାନଙ୍କୁ କଠିନ ପରିଶ୍ରମ କରିବାକୁ ବାଧ୍ୟ କରଯାଉଥିଲା । ରୋଗଶଯ୍ୟାରେ ଶାୟିତ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମାଟିବୁହା, କାଠହଣା, ଧାନକୁଟା, ତେଲପେଡା ସର୍ବୋପରି ରଜାଙ୍କର ବ୍ୟକ୍ତିଗତ କାର୍ଯ୍ୟ କରିବାପାଇଁ ପଠାଯାଉଥିଲା । ଯେଉଁ କର୍ମୀମାନେ କୌଣସିକାଳେ ଶାରୀରିକ ଶ୍ରମ କରିନଥିଲେ, ଏତଦ୍ୱାରା ସେମାନଙ୍କ ମଧ୍ୟରୁ ଅନେକେ ନାନା ରୋଗରେ ଆକ୍ରାନ୍ତ ହେଲେ । ରଜାଙ୍କୁ ଉକ୍ତ ବିଷୟ ଜଣାଇବାରୁ ଆଇନ୍ ତା'ର ବାଟଧରି ଚାଲୁବୋଲି ରଜା ଜବାବ୍ ଦେଲେ । ରଜାଙ୍କଠାରୁ ଏଭଳି ଜବାବ୍ ପାଇଲାପରେ ସଂଗ୍ରାମୀଗଣ ଶେଷ ରକ୍ତବିନ୍ଦୁ ଦେଇ ଜେଲ୍ ଭିତରେ ଘଟୁଥିବା ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାକୁ ଜଣାଇ ଦେବାରୁ କ୍ରମେ ସାମାନ୍ୟ ସୁବିଧା ସେମାନଙ୍କୁ ଦିଆଗଲା । ସମସ୍ତଙ୍କୁ କମଳ ଓ ଚାଦର ମିଳିଲା । ଲୁହାବାଟି ପରିବର୍ତ୍ତେ ଆଲୁମିନିୟମ୍ ଓ ପିତ୍ତଳ ବାସନ ଦିଆଗଲା । କିନ୍ତୁ ଖାଦ୍ୟର କିଛି ପରିବର୍ତ୍ତନ ହେଲାନାହିଁ । ଜେଲ୍ ଭିତରେ ରଜାଙ୍କ ଜଣାଶୁଣାରେ ଜେଲ କର୍ମଚାରୀମାନେ ବହୁ ବେଆଇନ କାର୍ଯ୍ୟ କରୁଥିଲେ ମଧ୍ୟ ତାହା କେହି ଜାଣୁନଥିଲେ । ମାତ୍ର ରାଜନୈତିକ ବନ୍ଦୀଙ୍କ ବେଳକୁ ରଜା ଆଇନର ବାଟ ଦେଖାଉଥିଲେ । ବର୍ଷ ବର୍ଷ ଧରି ରାଜନୈତିକ କାରଣରୁ ରାଜ୍ୟର ବହୁ ପ୍ରତିଷ୍ଠିତ ଲୋକଙ୍କୁ ଜେଲ୍ ଭିତରେ ଆବଦ୍ଧ କରି ସୁସଭ୍ୟ ଇଂରେଜ ସରକାରଙ୍କର ପ୍ରତିନିଧି ବୋଲାଉଥିବା ନୟାଗଡର ରଜା ଜେଲ୍ କାଳ ମଧ୍ୟରେ ରାଜନୈତିକ ବନ୍ଦୀମାନଙ୍କର ସ୍ୱାସ୍ଥ୍ୟରକ୍ଷା ପାଇଁ ଯେଉଁସବୁ ଦ୍ରବ୍ୟ ନିତ୍ୟାନ୍ତ ଆବଶ୍ୟକ , ତାହା ସେମାନଙ୍କୁ ଦେଉନଥିଲେ । ଖାଦ୍ୟପେୟ ଯାହାଥିଲା, ଚାଉଳରେ ଗୋଡ଼ ଏବଂ ଧାନ, ବଜାରର ପଚାସଢ଼ା ପରିବା ଖାଇବାକୁ ଦିଆଯାଉଥିଲା । ମାଶାଦାଉରେ ଅନେକେ ମେଲେରିଆରେ ଆକ୍ରାନ୍ତହୋଇଥିଲେ । ତେଲଟିକିଏ ଲଗାଇବାକୁ ମିଳୁନଥିଲା । କ୍ଷୌର ହେବାପାଇଁ କୌଣସି ବ୍ୟବସ୍ଥା କରଯାଉନଥିଲା । ଏହାଫଳରେ ପ୍ରତିବାଦ କରି ସଂଗ୍ରାମୀମାନେ ନିଶଦାଢ଼ି ରଖିବାରୁ ତାହା କାଟିଦେବା ପାଇଁ କତୁରୀ ଦିଆଗଲା । ଅନେକ କତୁରୀରେ ବାଳନକାଟି ଦାଢ଼ିନିଶ ରଖିବାରୁ ତାହା କାଟିବା ପାଇଁ ବାଧ୍ୟ କରଗଲା । ଶେଷରେ ଇଞ୍ଚିଏ ଦାଢ଼ିରଖି ଅଧିକ ଦାଢ଼ି କାଟିଦେବା ପାଇଁ ଜେଲ୍ କର୍ତ୍ତୃପକ୍ଷ

ହୁକୁମଦେଲେ । ତାହା ମଧ୍ୟ କାର୍ଯ୍ୟକାରୀ ହେଲନାହିଁ । ସାଧାରଣ ମୁଣ୍ଡ କୁଣ୍ଡାଇବା ପାଇଁ ପାନିଆଁ ଖଣ୍ଡିଏ ମଧ୍ୟ ଦିଆଯାଇନଥିଲା । ଅଥଚ ଜେଲ୍ କର୍ମଚାରୀମାନଙ୍କର ଜ୍ଞାତସାରରେ ବିଭିନ୍ନ ନୈତିକ ଅପରାଧରେ ଦଣ୍ଡ ଭୋଗୁଥିବା ବନ୍ଦୀମାନଙ୍କ ପାଖରେ ଗଣ୍ଡାଗଣ୍ଡା ଛୁରିଥିଲା । ଗୁଲି, ଅଫିମ ଓ ବିଡ଼ି ହାଓ୍ୱାରେ ଜେଲ୍ ଓ୍ୱାର୍ଡ ମହକି ଉଠୁଥିଲା । ଜେଲ୍ କର୍ମଚାରୀମାନେ ଖୁଣୀ ଆସାମୀଙ୍କ ସହିତ ମଳସୂତୁଘ ହୋଇ ରାଜନୈତିକ ବନ୍ଦୀମାନଙ୍କୁ ଯେଉଳି ନିର୍ଯ୍ୟାତନା ଦେଉଥିଲେ, ତାହା ଅବର୍ଣ୍ଣନୀୟ । ଜେଲ୍ ଓ୍ୱାର୍ଡ-ମାନଙ୍କରେ ୩୦ଜଣ ରହିବା ଜାଗାରେ ୮୦ଜଣ ରଖି ନିର୍ଯ୍ୟାତନା ଦିଆଯାଉଥିବା ସ୍ଥଳେ ବନ୍ଦୀମାନଙ୍କ ମଧ୍ୟରୁ ଜଣେ ରାତ୍ରି ଅନିଦ୍ରା ରହି ୮୦ଜଣଙ୍କ ଖବର 'ଅଚ୍ଛାହେ' ବୋଲି କହୁଥିଲା । ରାଜବନ୍ଦୀମାନେ ଏହାର ପ୍ରତିବାଦ କରିବାରୁ ଏହା ଉଠିଗଲା ।

ଆତ୍ମଗୋପନକାରୀ ସଂଗ୍ରାମୀ ଆନନ୍ଦଚନ୍ଦ୍ର ସ୍ୱାଇଁ, ପୂର୍ଣ୍ଣଚନ୍ଦ୍ର ମଳିକ, ନାରାୟଣ ଉପାଧ୍ୟାୟ, ସୁଦର୍ଶନ ସ୍ୱାଇଁ ପ୍ରମୁଖ ଲୁଚିଛପି କାର୍ଯ୍ୟ କରୁଥିବା ଅବସ୍ଥାରେ ଗଞ୍ଜାମ ପୋଲିସ୍‌ଙ୍କ ଦ୍ୱାରା ଗିରଫ ହୋଇ ଆସିବା ପରେ ଆଗରୁ ଗିରଫ କରି ରଖିଥିବା ସଂଗ୍ରାମୀମାନଙ୍କ ସହିତ ଏମାନଙ୍କୁ ପୋଲିସ୍ ବିଭିନ୍ନ ମୋକଦ୍ଦମାରେ ଅଭିଯୁକ୍ତ କରି ଚାର୍ଜସିଟ୍ ଦେଲେ । ଶହ ଶହ ମୋକଦ୍ଦମାର ବିଚାର ପାଇଁ ନୟାଗଡ଼ରେ ବିଚାରକ ଅଭାବ ପଡ଼ୁଥିବାରୁ ଖଣ୍ଡପଡ଼ା ରାଜ୍ୟରୁ ମାଜିଷ୍ଟ୍ରେଟ୍ ଗୋପୀନାଥ ପଟ୍ଟନାୟକ ସ୍ୱତନ୍ତ୍ର ଅଧିକାର ପାଇ ନୟାଗଡ଼କୁ ଆନ୍ଦୋଳନ ସଂକ୍ରାନ୍ତୀୟ ମୋକଦ୍ଦମାର ବିଚାରକରିବାପାଇଁ ଆସିଲେ । ବିପ୍ଳବୀମାନେ ମୋକଦ୍ଦମାର ନିଜପକ୍ଷ ସମର୍ଥନ କରି କୋର୍ଟରେ କିଛି କହିବାକୁ ମନାକରିଦେବାରୁ ପୋଲିସ୍‌ଙ୍କ ସାକ୍ଷ ଜମାନବନ୍ଦୀ ଉପରେ ମାଜିଷ୍ଟ୍ରେଟ୍‌ମାନେ ଖୁବ୍ ଅଳ୍ପଦିନ ମଧ୍ୟରେ ସମସ୍ତ ମୋକଦ୍ଦମା ଫଇସଲା କରିଦେଲେ । ଏହାଫଳରେ ବହୁତ ସଂଗ୍ରାମୀ ଜେଲ୍‌କୁ ଗଲେ ଏବଂ ବହୁଦିନ ହାଜତରେ ରହିବାପରେ ଅନେକ ନାଲପଟା ଭୋଗକରି ଘରକୁ ଗଲେ । କର୍ମୀ ସଦାଶିବ ଷଡ଼ଙ୍ଗୀ ଦୀର୍ଘ ୮ମାସକାଳ ଆତ୍ମଗୋପନ କରି ଭୀଷଣ ରୋଗାକ୍ରାନ୍ତ ହେବାପରେ ମରମର ଅବସ୍ଥାରେ ନୟାଗଡ଼ ରାଜାଙ୍କ ପାଖରେ ଆତ୍ମସମର୍ପଣ କରି ଜାମିନ୍‌ରେ ଘରକୁ ଗଲେ ସତ୍ୟ, ମାତ୍ର ତାଙ୍କ ବିରୁଦ୍ଧରେ ହୋଇଥିବା ମୋକଦ୍ଦମାର ବିଚାର ପୂର୍ବରୁ ସେ ଇହଧାମ ତ୍ୟାଗକଲେ । ଆନ୍ଦୋଳନରେ ମୁଖ୍ୟ ଅଂଶଗ୍ରହଣ କରିଥିବା

କେତେକ କର୍ମୀଙ୍କର ଘରଦ୍ୱାର ଭଙ୍ଗି ଦିଆଯିବା ସଙ୍ଗେ ସଙ୍ଗେ ସେମାନଙ୍କର ଜମିବାଡ଼ ମଧ୍ୟ ବାଜ୍ୟାପ୍ତ କରଯାଇ ସେମାନଙ୍କୁ ଚିରଦିନ ପାଇଁ କାଙ୍ଗାଳ କରି ଦିଆଗଲା । ଅନେକ ଝିଅ ବୋହୂଙ୍କର ମାନମହତ ଉପରେ ଆଘାତ ଦେବାରୁ କେତୋଟି ଝିଅ ବିବାହିତ ଜୀବନଯାପନ କରିବାର ସୁଯୋଗ ପାଇଲେ ନାହିଁ । ଅନେକ ସଂଗ୍ରାମୀଙ୍କର ଛୁଆପିଲା ଖେକଉପାସରେ ଜୀବନ ହରାଇଲେ ।

ନୟାଗଡ଼ ରଜା ଇଂରେଜ ସରକାରଙ୍କ ସାହାଯ୍ୟରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ପୂର୍ଣ୍ଣ ଦମନ କଲାପରେ ନିଜର ପ୍ରତିଷ୍ଠା ପୁନଃ ପ୍ରତିଷ୍ଠିତ କରିବାପାଇଁ ତାଙ୍କ କର୍ମଚାରୀ ଏବଂ ତାଙ୍କୁ ସମର୍ଥନ କରୁଥିବା ଲୋକମାନଙ୍କୁ ଏହି କାର୍ଯ୍ୟପାଇଁ ନିଯୁକ୍ତିକଲେ । ଜ୍ୟୋତିଷମାନେ କହିବୁଲିଲେ, ଚିତାଲାଗି ଅମାବାସ୍ୟା ଦିନ ବିରଟ ଦୁର୍ଘଟଣା ଘଟିବ । ତେଣୁ ଆଜଠୁଁ ଦାନ, ଧର୍ମ, ଯଜ୍ଞ ଇତ୍ୟାଦି କରାଇ ଗ୍ରହଶାନ୍ତି କଲେ ଦୁର୍ଘଟଣା ଘଟିବନାହିଁ । ମୃତ୍ୟୁକୁ ବା ଭୟନାହିଁ କାହାର ? ଏହି ସୁବର୍ଣ୍ଣ ସୁଯୋଗରେ ରାଜପକ୍ଷ ଲୋକେ ଏହାର ସୁଯୋଗ ନେଇ ରଜାଙ୍କୁ ବିଷ୍ଣୁ ଅବତାର କହି ବିଭିନ୍ନ ଜାଗାରେ ଯଜ୍ଞାନୁଷ୍ଠାନମାନ କରାଇଲେ । ରଜାଙ୍କୁ ପୂର୍ଣ୍ଣାହୁତି ଦେବାପାଇଁ ଯଜ୍ଞକୁ ନିମନ୍ତ୍ରଣ କରାଯାଉଥିଲା । ରଜା ନିମନ୍ତ୍ରଣ ରକ୍ଷାକରି ପୂର୍ଣ୍ଣାହୁତି ଦେବାପାଇଁ ଯଜ୍ଞସ୍ଥଳକୁ ଆସୁଥିଲେ । କର୍ମୀ ପାଣ୍ଡୁଚରଣ ସାହୁଙ୍କର ପ୍ରତିବାଦ ଏବଂ ଦମ୍ଭୋକ୍ତି ଶୁଣି ରଜା ଗୋଡ଼ପଡ଼ା ଯଜ୍ଞରେ ପୂର୍ଣ୍ଣାହୁତି ଦେବାକୁ ଆସିଲେ ନାହିଁ ।

ପ୍ରଜାମଣ୍ଡଳ ଆନ୍ଦୋଳନକୁ ଦମନ କରି ଦବାଇଦେବାର କିଛି କାଳପରେ ରଜା ରାଜ୍ୟରେ ନିଜର ବଡ଼ିମା ଦେଖାଇବା ଉଦ୍ଦେଶ୍ୟରେ ତା ୨୧।୮।୪୩ଦିନ ରାଜ୍ୟର ସମସ୍ତ ସର୍ବରାକାର, ସରକାରୀ କର୍ମଚାରୀ ତାଙ୍କୁ ସମର୍ଥନ କରୁଥିବା ଲୋକ, ଆନ୍ଦୋଳନକୁ ଧ୍ୱଂସ କରିବାପାଇଁ ନିଯୁକ୍ତ କର୍ମଚାରୀ ଓ ରାଜ୍ୟର କେତେକ ଲୋକଙ୍କୁ ବିଭିନ୍ନ ପଦପଦବୀରେ ମଣ୍ଡିତ କରିବାପାଇଁ ଏକ ଦରବାର କଲେ । ପ୍ରଜାମଣ୍ଡଳ ନେତାମାନଙ୍କୁ ଦରବାରରେ ଯୋଗଦେବା ନିମିତ୍ତ ନାନା ପ୍ରଲୋଭନ ତଥା ଧମକ ମଧ୍ୟ ଜେଲ୍ ଭିତରେ ଦିଆଗଲା । ପ୍ରଜାମଣ୍ଡଳ ନେତାମାନେ ରଜାଙ୍କର ଏଭଳି ଦରବାରରେ ଯୋଗଦେବା ପାଇଁ ପୂର୍ଣ୍ଣ ମନା କରିଦେଲେ । କିନ୍ତୁ

ରାଜା ନିଜର ଉଦାରତା ଦେଖାଇବା ବାହାନାରେ କର୍ମୀ ବିନାୟକ ମିଶ୍ରଙ୍କୁ ଜେଲ୍‌ମୁକ୍ତ କରିଦେଲେ । ଏହି ଦରବାରରେ କର୍ଣ୍ଣି ଡାକୁଆଙ୍କୁ ଗୁଳିକରି ମାରିଥିବା ସବ୍‌ଇନ୍‌ସପେକ୍ଟର ବେଣୁଧର ପଟ୍ଟନାୟକଙ୍କୁ ରାଜା ବୀରବର ଉପାଧିରେ ମଣ୍ଡିତ କଲେ । କେତେଜଣ କନେଷ୍ଟବଳ ଓ ଫରେଷ୍ଟଗାର୍ଡ ଉକ୍ତ ହତ୍ୟା କାର୍ଯ୍ୟରେ ସାହାଯ୍ୟ କରିଥିବାରୁ ବିଭିନ୍ନ ଉପାଧିରେ ଭୂଷିତ ହୋଇଥିଲେ । କେତେଜଣ ରାଜଭକ୍ତ ପ୍ରଜା ମଧ୍ୟ ପଦପଦବୀରେ ଭୂଷିତ ହେଲେ । ରାଜାଙ୍କ ଜନ୍ମୋତ୍ସବରେ ରାଜା ଦଣ୍ଡୁ ସାହୁଙ୍କୁ ମଧ୍ୟ ଜେଲ୍‌ରୁ ମୁକ୍ତ କରିଦେଇଥିଲେ ।

ରାଜନୈତିକ ବନ୍ଦୀମାନଙ୍କୁ ଜେଲ୍‌ଭିତରେ ନାନା ଭବରେ ଯନ୍ତ୍ରଣା ଦିଆଯାଉଥିବା କଥା ଆଗରୁ କୁହାଯାଇଛି । ଯନ୍ତ୍ରଣା ଫଳରେ ବହୁକର୍ମୀ ରୋଗାକ୍ରାନ୍ତ ହେବାକଥା ମଧ୍ୟ ଆଗରୁ କୁହାଯାଇଛି । କର୍ମୀମାନଙ୍କୁ ବେମାରହେଲେ ଉପଯୁକ୍ତ ଚିକିତ୍ସା କରାଯାଉନଥିଲା । ଏତଦ୍ୱାରା ୮୦ବର୍ଷର ବୃଦ୍ଧ କର୍ମୀ କସ୍ତୁରୀ ପରିଡା ଅତ୍ୟାଚାର ସହିନପାରି ମୃତ୍ୟୁମୁଖରେ ପଡ଼ିଲେ । କସ୍ତୁରୀ ପରିଡାଙ୍କର ଆମାଶୟ ଓ ନାଳଶୂଳାଝାଡା ହେବାରୁ ଓ ଚିକିତ୍ସା ଅଭାବରୁ ସେ ପରିଶ୍ରମ କରିବାକୁ ଅକ୍ଷମ ନୁହନ୍ତ ବୋଲି କହି ମାଟିବୁହା କାମ କରିବାପାଇଁ ଅକ୍ଷମତା ପ୍ରକାଶ କରିବାରୁ ତାଙ୍କୁ ହେଡ୍‌ଷ୍ଟ- ମାଷ୍ଟର ମୁଣ୍ଡଫଟା ଖରାରେ ଗୋଟିଏ ତତଲା ପଥର ଉପରେ ଜବରଦସ୍ତି ବସାଇ ଦିଆଗଲା । ସେହିଦିନଠାରୁ ତାଙ୍କର ଆମାଶୟ ରୋଗ ଅତିମାତ୍ରାରେ ବଢ଼ିଲା । ସେ ଶଯ୍ୟାଶାୟୀ ହୋଇପଡ଼ିଲେ ମଧ୍ୟ ଜେଲ୍ କର୍ତ୍ତୃପକ୍ଷ ତାଙ୍କର ଚିକିତ୍ସା କଲେନାହିଁ । ଏହିଭଳି ମାଡେକାଳ ରୋଗରେପଡ଼ ଚିକିତ୍ସା ଅଭାବରୁ କସ୍ତୁରୀ ପରିଡା ମଲେ । ମରିବା ପୂର୍ବରୁ କହିଗଲେ, 'ମୋପାଇଁ କେହି ଦୁଃଖ କରିବ ନାହିଁ । ମାତ୍ର ମୋର ଏତିକି ଦୁଃଖ ମୁଁ ସ୍ୱରାଜ ଦେଖିପାରିଲି ନାହିଁ । ମୋର ଅନୁରୋଧ ଆପଣମାନେ ସ୍ୱାଧୀନତା ଆନ୍ଦୋଳନରୁ ଟିକେ ହେଲେ ପଛଘୁଞ୍ଚା ଦେବେ ନାହିଁ ।'

୧୯୪୩ ମସିହା ମଧ୍ୟଭାଗରେ ପ୍ରଜାମଣ୍ଡଳର ସଭାପତି ଓ ତାଙ୍କ ପରେ ପରେ ୪୩ ମସିହା ଶେଷସୁଦ୍ଧା ନୟାଗଡ ପ୍ରଜାମଣ୍ଡଳର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଜେଲ୍‌ରୁ ମୁକ୍ତହେଲେ । ମାତ୍ର ପ୍ରଜାମଣ୍ଡଳର ସମ୍ପାଦକ ନୃସିଂହ ମହାରଣାଙ୍କ ସମେତ ବହୁକର୍ମୀ ଜେଲ୍‌ରେ ରହିଲେ । ପୁଣି ଜେଲ ରେ

ସଡ଼ିରେ ଉଠିଯାଉଥିବା ପଦର ସବୁ କରଗଲ । ଖାଦ୍ୟପେୟ ଠିକ୍ ମତେ ଦିଆଗଲା ନାହିଁ । ଜେଲ୍ କର୍ମଚାରୀମାନେ ବନ୍ଦୀମାନଙ୍କୁ ଦିଆଯାଉଥିବା ଖାଦ୍ୟ ଆତ୍ମସାତ୍ କରିବା ସଙ୍ଗେ ସଙ୍ଗେ ସରକାରୀ ସମ୍ପଦ ଲୁଣ୍ଠନ କରିବାରେ ଲାଗିଲେ । ସଂଗ୍ରାମୀ କର୍ମୀବୃନ୍ଦ ଜେଲ୍ କର୍ତ୍ତୃପକ୍ଷଙ୍କର ଏଭଳି ଅନ୍ୟାୟମୂଳକ କାର୍ଯ୍ୟର ପ୍ରତିବାଦ କରିବାରୁ କର୍ମୀ ବାଞ୍ଛା ସାହୁ, ବାବାଜି ସାହୁ, ଲକ୍ଷ୍ମଣ ଭୂୟାଁ, ଜନାର୍ଦ୍ଦନ ସାହୁ ପ୍ରଭୃତିଙ୍କୁ ଜେଲ୍ ସୁପରିଣ୍ଟେଣ୍ଡେଣ୍ଟ ୨୪ବେତ ଲେଖାଏଁ ବେତ୍ରାଘାତ ଦଣ୍ଡରେ ଦଣ୍ଡିତ କଲେ । ବେତ୍ରାଘାତ ପରଠାରୁ ସେମାନେ ଦୁଇମାସକାଳ ଶଯ୍ୟାଶାୟୀ ହୋଇରହିଲେ । ଜେଲ୍ ସମ୍ପଦ ତୋଷରପାତ ହେଉଥିବା କଥା କର୍ତ୍ତୃପକ୍ଷଙ୍କ ନଜରକୁ ବନ୍ଦୀମାନେ କୌଣସିମତେ ଆଣିପାରିବାରୁ ଏହାର ବିଚାର ହେଲା । ଜେଲ୍ କର୍ମଚାରୀମାନଙ୍କ ବିରୁଦ୍ଧରେ ଆସିଥିବା ଅଭିଯୋଗର ବିଚାର ହେବାରୁ ଜେଲ୍ କର୍ମଚାରୀମାନେ ବନ୍ଦୀମାନଙ୍କ ଉପରେ ଅତ୍ୟାଚାର କଲେ । କର୍ମୀ ବୁଦ୍ଧି ପରିଡ଼ାଙ୍କୁ ଜଙ୍ଗଲକୁ ନେଇ ଜଣେ ଓ୍ୱାର୍ଡର ତାଙ୍କ ନିଜପାଇଁ ୨ଗୋଟି ଅଖକାଠ ଆଣିବାକୁ କହିଲେ । ମାତ୍ର ସେ ଗୋଟିଏ ଅଖ ଆଣିବାରୁ ଉକ୍ତ ଓ୍ୱାର୍ଡର ବନ୍ଧୁକ କୁନ୍ଦାରେ ବୁଦ୍ଧି ପରିଡ଼ାଙ୍କ ଛାତିକୁ ନିଷ୍ଠୁର ମାଡ଼ଦେଲେ । ସେହିଦିନୁ ବୁଦ୍ଧି ପରିଡ଼ା ନିଜର ଖାଦ୍ୟ ମଧ୍ୟ ଖାଇପାରିଲେ ନାହିଁ । ଜେଲ କର୍ତ୍ତୃପକ୍ଷଙ୍କୁ ଏହା କୁହାଯିବାରେ ସେ ପରିଡ଼ାଙ୍କର ଚିକିତ୍ସାର ବ୍ୟବସ୍ଥା କଲେନାହିଁ ବା ତାଙ୍କ ଅଭିଯୋଗର ବିଚାର କଲେନାହିଁ । ୪ଦିନ ଶଯ୍ୟାଶାୟୀ ହେବାପରେ ବୁଦ୍ଧି ପରିଡ଼ା ଜେଲ୍ ଭିତରେ ପ୍ରାଣତ୍ୟାଗ କଲେ । କର୍ମୀ ଦୟା ବେହେରା ଜେଲ୍ କର୍ମଚାରୀଙ୍କ ଅତ୍ୟାଚାର ହେତୁ ଜେଲ୍ ଭିତରେ ମଲେ । ଚିକିତ୍ସା ଅଭାବରୁ କର୍ମୀ ଲିଙ୍ଗା ବେହେରା ସବୁଦିନ ପାଇଁ ଚକ୍ଷୁହରାଇ ଅନ୍ଧ ହୋଇଗଲେ । ତଦନ୍ତପରେ ଜେଲ୍ କର୍ମଚାରୀମାନଙ୍କର ତୋଷରପାତ କଥା ଜଣାପଡ଼ିବାରୁ ରାଜା କେତେଜଣ କର୍ମଚାରୀଙ୍କ ନାମରେ ମୋକଦ୍ଦମା କରିଥିଲେ । ଏହି ମୋକଦ୍ଦମାରେ ଜେଲ୍ ସୁପରିଣ୍ଟେଣ୍ଡେଣ୍ଟ ଡଃ ରମାକାନ୍ତ ମିଶ୍ର ଅଭିଯୁକ୍ତ ହୋଇଥିଲେ । ତାଙ୍କୁ ନୟାଗଡ଼ରେ କେହି ଜାମିନ୍ ନ ନେବାରୁ ସେ ଜେଲ୍ କୁ ଯାଉଥା'ନ୍ତେ । ମାତ୍ର ସେ ଶେଷରେ ପ୍ରଜାମଣ୍ଡଳର ଜଣେ ବିଶିଷ୍ଟ କର୍ମୀ ମୁନ୍ସି ସାହେବ୍ ଖାଁଙ୍କ ଆଶ୍ରୟ ନେବାରୁ ଶ୍ରୀଯୁକ୍ତ ସାହେବ୍ ଖାଁ ତାଙ୍କୁ ଜାମିନ୍ ରେ ଆଣିଲେ ।

୧୯୪୪ ମଧ୍ୟଭାଗ ବେଳକୁ ପ୍ରଜାମଣ୍ଡଳ ଉପରେ ଲାଗିହୋଇଥିବା କଟକଣା ଉଠିନଥାଏ । ସଭା, ସମିତି, ଶୋଭାଯାତ୍ରା ଉପରେ କଟକଣା ଥାଏ । ଏହି ପରିପ୍ରେକ୍ଷୀରେ ପ୍ରଜାମଣ୍ଡଳର ସମସ୍ତ କାର୍ଯ୍ୟକାରୀ କମିଟି ସଭ୍ୟ ମୁକ୍ତିଲାଭ କଲେ ଓ କର୍ମପନ୍ଥା ସ୍ଥିର କରିବାପାଇଁ ଏକତ୍ରିତ ହୋଇ ବ୍ୟକ୍ତିଗତ ଭାବେ ଗାଁ ଗାଁ ଭ୍ରମଣକରି ଗ୍ରାମମାନଙ୍କର ଅବସ୍ଥା ପ୍ରତ୍ୟକ୍ଷ ଭାବରେ ଅନୁସନ୍ଧାନ କରିବାକୁ ସ୍ଥିରକଲି ତଦନୁସାରେ କାର୍ଯ୍ୟକଲେ । ସେତେବେଳକୁ ଗାଁମାନଙ୍କରେ ସଂପୂର୍ଣ୍ଣ ବିଷାଦଭାବ ପୁଣି ରହିଥାଏ । ଲୋକେ ନେତୃତ୍ୱ ଅଭାବରୁ ସକଳକଷ୍ଟ ଭୋଗକରି ଗାଁମାନଙ୍କରେ ଭୟଭୀତ ହୋଇପଡ଼ିଥା'ନ୍ତି । ସରକାର ଧାନବସ୍ତା ପାଞ୍ଚଟଙ୍କାରେ ଲୋକଙ୍କଠାରୁ ଜବରଦସ୍ତି କିଣୁଥା'ନ୍ତି । ଅଥଚ ଗାଁର ଖାଉଟି ଧାନବସ୍ତା ତେରଟଙ୍କାରେ କିଣି ଖାଉଥାଏ । ଏହା ମଧ୍ୟ ଆବଶ୍ୟକ ପରିମାଣରେ ମିଳୁନଥାଏ । ଗୁଡ଼ ଗହମ, ଚିନି, ମୁଗ ନୟାଗଡ଼ ବାହାରେ ବିକିବାପାଇଁ ରାଜାଙ୍କର ଅନୁମତି ଦରକାର ହେଉଥାଏ । ଏଥିପାଇଁ ପ୍ରଜା ମହଣପିଛା ଦେଢ଼ଟଙ୍କା ଫିସ୍ ଦେଇ ବାହାରକୁ ଗୁଡ଼, ଗହମ, ମୁଗ, ଚିନି ବିକ୍ରୀ କରିବାକୁ ନିଅନ୍ତି । ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଲାଇସେନ୍ସ ଫିସ୍ ମହଣକେ ଦେଢ଼ଟଂକା ଦେଇ କର୍ତ୍ତୃପକ୍ଷଂକଠାରୁ ଆଠଅଣାର ରସିଦ୍ ପାଆନ୍ତି । ଏହାର ପ୍ରତିବାଦ କରିବାପାଇଁ କାହାରି ଶକ୍ତିନଥାଏ । ଚିନି, କିରୋସିନି, ଲୁଗା ପ୍ରଭୃତି କଣ୍ଟ୍ରୋଲଦ୍ରବ୍ୟ ଜନସାଧାରଣଙ୍କୁ ମିଳୁନଥାଏ । ଅଥଚ ରାଜକର୍ମଚାରୀମାନେ ପ୍ରଚୁର ପରିମାଣରେ ପାଇ ଚୋରାବଜାର ଚଳାଇଥା'ନ୍ତି । ଏହି କଣ୍ଟ୍ରୋଲଦ୍ରବ୍ୟ ମଧ୍ୟରୁ ଅଧିକାଂଶ ବାହାରେ ଅଧିକ ମୂଲ୍ୟରେ ସରକାରୀ କର୍ମକର୍ତ୍ତାମାନେ ବିକ୍ରୀ କରୁଥିବାରୁ ଲୋକଙ୍କୁ କଣ୍ଟ୍ରୋଲ ଜିନିଷ ମିଳୁନଥିଲା । ଏସବୁ ଅନୁସନ୍ଧାନ ପରେ ଜଣାପଡ଼ିବାରୁ ପ୍ରଜାମଣ୍ଡଳର ନେତାମାନେ ତତ୍କାଳୀନ ରାଜ୍ୟର ମୁଖ୍ୟ କର୍ତ୍ତା ଏକ୍‌ଜିକ୍ୟୁଟିଭ୍ ଅଫିସର ଜୟକୃଷ୍ଣ ମିଶ୍ର (ପରେ ସେ ହାଇକୋର୍ଟରେ ମାନ୍ୟବର ଜଜ୍ ହୋଇଥିଲେ) ଙ୍କ ଦୃଷ୍ଟିକୁ ଆଣିବାରୁ ଶ୍ରୀଯୁକ୍ତ ମିଶ୍ର ଏଥିପାଇଁ ଦୁଃଖପ୍ରକାଶ କରିବା ସଙ୍ଗେ ସଙ୍ଗେ ନିଜେ କିଛି କରିପାରିବେ ନାହିଁ ବୋଲି ନିଜର ଅକ୍ଷମତା ପ୍ରକାଶ କରିଥିଲେ ।

ଲୋକଙ୍କର ଦୁଃଖ ଦୁର୍ଦ୍ଦଶାର ପ୍ରତିକାର ଉଦ୍ଦେଶ୍ୟରେ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ବ୍ୟକ୍ତିଗତ ସତ୍ୟାଗ୍ରହ କାର୍ଯ୍ୟକ୍ରମର ପରିସରକୁ ବଢ଼ାଇ

ଦଳଦଳ ହୋଇ କର୍ମୀ ଗାଁ ଗଣ୍ଡା ଗସ୍ତକରି ଲୋକଙ୍କର ଭୟ ଏବଂ ଅପବାଦ ଦୂର କରିବାପାଇଁ ଚେଷ୍ଟାକଲେ । ଗାଁ ମାନଙ୍କରେ ଛୋଟ ଛୋଟ ଗ୍ରାମ୍ୟ ବୈଠକମାନ ହେଲା । ଏହାଫଳରେ ଲୋକଙ୍କ ମଧ୍ୟରେ ଦେଖାଦେଉଥିବା ଅପବାଦ ଉଭେଇଗଲା । ଲୋକେ ପୂର୍ବଠାରୁ ଅଧିକ ଉତ୍ସାହିତ ହୋଇ ନିଜପକ୍ଷରୁ ପ୍ରଜାମଣ୍ଡଳ ନେତାମାନଙ୍କୁ ଡାକି ବିପୁଳ ଅଭ୍ୟର୍ଥନା କଲେ । ଏହି ପରିପ୍ରେକ୍ଷୀରେ ରାଜ୍ୟ ମଧ୍ୟରେ କିଭଳି କାର୍ଯ୍ୟ କରାଯିବ, ତା'ର ଚର୍ଚ୍ଚା କରିବାପାଇଁ ତା ୨୮।୧୦।୪୫ଦିନ ଇଟାମାଟିଠାରେ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ବୈଠକ ଅନୁଷ୍ଠିତ ହେଲା । ବହୁ ଆଲୋଚନା ପରେ ରାଜାଙ୍କଦ୍ୱାରା ଘଟିଥିବା ବେଆଇନ କାର୍ଯ୍ୟମାନଙ୍କର ସଭାସମିତି ମାଧ୍ୟମରେ ପ୍ରତିବାଦ କରିବାର ସ୍ଥିର କରାଗଲା ଏବଂ ୧୯୪୨ ମସିହା ଆନ୍ଦୋଳନରେ ହୋଇଥିବା ଦମନମୂଳକ କାର୍ଯ୍ୟର ବିବରଣୀ ସଂଗ୍ରହ କରିବାପାଇଁ ଶ୍ରୀ ଲକ୍ଷ୍ମଣ ମହାରଣାଙ୍କ ନେତୃତ୍ୱରେ ଏକ ସବ କମିଟି ଗଠନ କରାଗଲା । ଆବଶ୍ୟକ ପରିମାଣର କଣ୍ଟ୍ରୋଲ ଦ୍ରବ୍ୟ ଲୋକଙ୍କୁ ଯୋଗାଇବାପାଇଁ ଦରବାରଙ୍କୁ ଦାବିକରି ଏକ ପତ୍ର ଲେଖାଯିବାର ସ୍ଥିରହେଲା । ଏହା ପରେ ପରେ ରାଜ୍ୟସାରା ସଭାସମିତି ମାଧ୍ୟମରେ ଲୋକଙ୍କର ଅବସ୍ଥା ଦରବାରଙ୍କୁ ଜଣାଇ ପ୍ରତିକାର ଲୋଡାଯାଇଥିଲା । ଯୁଦ୍ଧକାଳୀନ ପରିସ୍ଥିତିର ସୁଯୋଗ ନେଇ ବହୁ ରାଜକର୍ମଚାରୀ ବିପୁଳ ସମ୍ପତ୍ତିର ମାଲିକ ହୋଇଥିବାରୁ ଏସବୁର ତଦନ୍ତ ମଧ୍ୟ ଦାବି କରାଯାଇଥିଲା । ମାତ୍ର ରାଜା ସବୁ ଜାଣିଶୁଣି ମଧ୍ୟ କୌଣସି ଜବାବ ନଦେଇ ମଉନ ରହୁଥିଲେ । ଫଳରେ ପ୍ରଜାମଣ୍ଡଳ ଦିନୁଦିନ ଅଧିକ ଶକ୍ତିଶାଳୀ ହେବାରେ ଲାଗିଲା ।



# ଇଂଲଣ୍ଡରେ ଶ୍ରମିକ ଦଳର ସରକାର ଗଠନ ଓ ଭାରତ ସ୍ୱାଧୀନତା ସମ୍ପର୍କରେ ଏହାର ତଥା ସ୍ୱାଧୀନତା ଆନ୍ଦୋଳନରେ ତା'ର ପ୍ରଭାବ

ବିଶ୍ୱଯୁଦ୍ଧ ଶେଷ ପରେ ୧୯୪୫ ମସିହାରେ ଇଂଲଣ୍ଡରେ ଶ୍ରମିକଦଳ ସରକାର ଗଠନ କରି ଭାରତର ସ୍ୱାଧୀନତା ସମ୍ପର୍କରେ ପର୍ଯ୍ୟାଲୋଚନା କରି ରାଜନୈତିକ ପରିବର୍ତ୍ତନ ପାଇଁ ଗଭର୍ଣ୍ଣର ଜେନେରାଲ ଲର୍ଡ ଓ୍ୱାଭେଲଙ୍କ ମାଧ୍ୟମରେ ସୂତ୍ରପାତ କଲେ । ଏହା ଭାରତରେ ସର୍ବତ୍ର ଆଲୋଚିତ ହେଲା । ନିଖିଳଭାରତ ରାଜ୍ୟଜାତ ପ୍ରଜାସମ୍ମିଳନୀ ଭବିଷ୍ୟତ ପରିସ୍ଥିତି ପାଇଁ ପ୍ରସ୍ତୁତ ରହିବାକୁ ନିର୍ଦ୍ଦେଶ ଦେଇ ପ୍ରଜାସମ୍ମିଳନୀର ଉଦୟପୁର ପ୍ରସ୍ତାବ ଉପରେ ଦୃଢ଼ ରହିବାକୁ ନିର୍ଦ୍ଦେଶ ଦେବାରୁ ତା ୩୦।୧୨।୪୫ଦିନ ନୟାଗଡ଼ ପ୍ରଜାମଣ୍ଡଳର ଏକ ବୈଠକ ହୋଇ ଉଦୟପୁର ପ୍ରସ୍ତାବକୁ କାର୍ଯ୍ୟକାରୀ କରାଇବା ଉଦ୍ଦେଶ୍ୟରେ ସଂକଳ୍ପବଦ୍ଧ ହୋଇ ସେହିଦିଗରେ କାର୍ଯ୍ୟ କରିବା ପାଇଁ ଆହ୍ୱାନ ଦେଲେ ।

୧୯୪୬ ମସିହା ପ୍ରାରମ୍ଭରେ ଓଡ଼ିଶା ବିଧାନସଭା ନିର୍ବାଚନରେ ସହଯୋଗ କରିବାକୁ ପ୍ରାଦେଶିକ କଂଗ୍ରେସ କମିଟି ସଭାନେତ୍ରୀ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ଅନୁରୋଧକ୍ରମେ କେତେକ ପ୍ରଜାମଣ୍ଡଳ କର୍ମୀ ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ ପୁରୀ ଏବଂ ଗଞ୍ଜାମ ଜିଲ୍ଲାକୁ ଗଲେ । ରାଜ୍ୟ ଭିତରେ ରହି କାର୍ଯ୍ୟ କରିବାପାଇଁ ମଧ୍ୟ କେତେକ କର୍ମୀ ରହିଲେ । ତା ୧୬।୧।୪୬ଦିନ ନୟାଗଡ଼ ପ୍ରଜାମଣ୍ଡଳର ଅତ୍ୟାଚାରିତ କର୍ମୀମାନଙ୍କୁ ଶୁଣ୍ଡିକିବା ଉଦ୍ଦେଶ୍ୟରେ ଶ୍ରୀମତୀ ମାଳତୀ ଚୌଧୁରୀ ନୟାଗଡ଼ ଆସିଲେ । ତାଙ୍କ ସହିତ ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକ ଏବଂ ଶ୍ରୀଯୁକ୍ତ ଗୌରଙ୍ଗଚରଣ ଦାସ ମଧ୍ୟ ଆସିଥିଲେ । ମାଳତୀ ଦେବୀଙ୍କର ଆଗମନ ନୟାଗଡ଼ବାସୀଙ୍କ ମନରେ ବିପୁଳ ଉତ୍ସାହ ଉନ୍ମାଦନା ସୃଷ୍ଟି କଲା । ଛଟାମାଟି ଥାନାଠାରୁ ବିପୁଳ ସମ୍ବର୍ଦ୍ଧନାର ସହିତ ଶ୍ରୀମତୀ ମାଳତୀ ଦେବୀ ପ୍ରମୁଖଙ୍କୁ ଗୋଡ଼ପଡ଼ା ଯିବା ବାଟରେ ଇଟାମାଟି, ଲାଠିପଡ଼ା, ଆଡ଼ଚେର, ହରିପୁର ଓ ଡମିଶର ଗ୍ରାମମାନଙ୍କରେ ଭବ୍ୟ ସମ୍ବର୍ଦ୍ଧନା କରାଯାଇଥିଲା । ରାତ୍ର ୧୦ଘଣ୍ଟା ସମୟରେ

ଗୋଡ଼ପଡ଼ାଠାରେ ଏକ ବିରାଟ ସାଧାରଣସଭାରେ ମାଳତୀ ଦେବୀଙ୍କୁ ଅଭିନନ୍ଦନ କରାଯାଇଥିଲା । ସେ ନିଜ ନିର୍ଦ୍ଦେଶମତେ ନୟାଗଡ଼ରେ ଦୁଇଦିନ ରହିକରି ଅନ୍ଦୋଳନରେ ଅତ୍ୟାଚରିତ ଓ କ୍ଷତିଗ୍ରସ୍ତ ହୋଇଥିବା ଗ୍ରାମ ଏବଂ ବ୍ୟକ୍ତିମାନଙ୍କୁ ଶଙ୍ଖୁଳି ଫେରିବାପରେ ନୟାଗଡ଼ରେ ବଡ଼ ବଡ଼ ସଭମାନ କରିବାରେ କୌଣସି ଅସୁବିଧା ହେଲନାହିଁ । ଉତ୍ସାହ ଯେପରି ଦେଖାଗଲା ତାହାକୁ ଠିକ ଭାବରେ ସଂଗଠିତ ନକଲେ ଏହା ଅବାଟରେ ଯିବାର ସମ୍ଭାବନା ଦେଖି କର୍ମପନ୍ଥା ନିର୍ଦ୍ଧାରଣ ପାଇଁ ତା ୨୫।୧।୪୬ଦିନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ପ୍ରତିଥାନାପାଇଁ ଗୋଟିଏ ଗୋଟିଏ ଆଡ଼ହକ ପ୍ରଜାମଣ୍ଡଳ ଥାନାକମିଟି ଗଠନକଲେ ଏବଂ ଦଶହଜାର ପ୍ରଜାମଣ୍ଡଳ ସଭ୍ୟ ସଂଗ୍ରହ କରିବାପାଇଁ ସ୍ଥିରକଲେ ।

ମାଳତୀ ଦେବୀଙ୍କ ନୟାଗଡ଼ ପରିଦର୍ଶନ ପରେ ପରେ ରାଜ୍ୟରେ ଯେଉଁ ଜନଜାଗରଣ ଦେଖାଦେଲା ଏବଂ ଇଂରେଜ ସରକାର ଶାସନ ପରିବର୍ତ୍ତନ ଉଦ୍ଦେଶ୍ୟରେ ଯେଉଁ କଥାବାର୍ତ୍ତା ଚଳାଇଲେ, ତା'ଫଳରେ ନୟାଗଡ଼ ରଜା ରାଜ୍ୟରେ ଶାସନତାନ୍ତ୍ରିକ ପରିବର୍ତ୍ତନ ପାଇଁ ନୟାଗଡ଼ରେ ଗୋଟିଏ ଆସେମ୍ବ୍ଲି ପ୍ରତିଷ୍ଠା କରିବାକୁ ତା୧୬।୨।୪୬ରେ ଘୋଷଣାକଲେ । ଏହି ଆସେମ୍ବ୍ଲିର ସ୍ପିକରଙ୍କୁ ମିଶାଇ ୧୫ଜଣ ସଭ୍ୟଙ୍କ ମଧ୍ୟରୁ, ସ୍ପିକରଙ୍କୁ ମିଶାଇ ସାତଜଣ ରଜା ମନୋନୀତ କରିବେ ଏବଂ ବିଭିନ୍ନ ସ୍ୱାର୍ଥର ଆଠଜଣ ଲୋକ, ଲୋକଙ୍କଦ୍ୱାରା ନିର୍ବାଚିତ ହେବେ ଏବଂ ମନୋନୀତ ସଭ୍ୟଙ୍କ ମଧ୍ୟରୁ ୨ଜଣ ମନ୍ତ୍ରୀ ରହିବେ । ଏଭଳି ଏକ କ୍ଷମତାହୀନ ଆସେମ୍ବ୍ଲି ପୂର୍ବପରାମର୍ଶଦାତା କମିଟିପରି ଅପଦସ୍ଥ ହେବା ଭାବି ପ୍ରଜାମଣ୍ଡଳ ଏହା ଗ୍ରହଣ ନକରି ପ୍ରତ୍ୟାଖ୍ୟାନ କରିଦେଲେ । ଏହା ପରେ ପରେ ରଜା ନୟାଗଡ଼ ପାଇଁ ଗୋଟିଏ ପବ୍ଲିକ୍ ସର୍ଭିସ କମିଶନ (କିରାଣୀ ଏବଂ ପିଅନ ନିଯୁକ୍ତି ପାଇଁ ସୁପାରିଶ କରିବାକୁ) ନିଯୁକ୍ତି କଲେ ଏବଂ ସେଥିରେ ଜଣେ ବେସରକାରୀ ଲୋକ ରଖିବାର ବ୍ୟବସ୍ଥା କଲେ । ପ୍ରଜାମଣ୍ଡଳ କର୍ମୀ ଶ୍ରୀ ନାରାୟଣ ନନ୍ଦଙ୍କୁ ବେସରକାରୀ ସଭ୍ୟଭାବେ ଗ୍ରହଣ କରି ତାଙ୍କୁ ନୋଟିସ୍ ଦେବାରୁ ଉକ୍ତ ପଦଗ୍ରହଣ ନକରିବା ପାଇଁ ପ୍ରଜାମଣ୍ଡଳ ନାରାୟଣ ନନ୍ଦଙ୍କୁ ନିର୍ଦ୍ଦେଶ ଦେଲା । ନାରାୟଣ ନନ୍ଦ ପ୍ରଜା-ମଣ୍ଡଳ ନିର୍ଦ୍ଦେଶକୁ ଅମାନ୍ୟ କରିବାରୁ ତାଙ୍କୁ ପ୍ରଜାମଣ୍ଡଳରୁ ବାହାର କରି ଦିଆଗଲା । ମାତ୍ର କିଛିଦିନପରେ ନାରାୟଣ ନନ୍ଦ ପବ୍ଲିକ୍ ସର୍ଭିସ କମିଶନର ଅସାରତା ଉପଲବ୍ଧି କରି ସେଥି ଇସ୍ତଫାଦେଇ ପୁଣି ପ୍ରଜାମଣ୍ଡଳରେ ଯୋଗଦେଲେ ।

ଦେଶର ଏହି ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ରାଜାଙ୍କର ଆସେମ୍ବ୍ଲି ଗଠନର ଘୋଷଣା ଏବଂ ପ୍ରଜାମଣ୍ଡଳ ତାହାକୁ ପ୍ରତ୍ୟାଖ୍ୟାନ କରିବା ଇତ୍ୟାଦିକୁ କେନ୍ଦ୍ରକରି ପ୍ରଜାମଣ୍ଡଳ ପକ୍ଷରୁ ରାଜ୍ୟସାରା ବଡ ବଡ ସଭମାନ କରାଯାଇ ରାଜାଙ୍କ ଶାସନର ନିନ୍ଦା କରିବା ସଙ୍ଗେ ସଙ୍ଗେ ପ୍ରଜାମଣ୍ଡଳର ସଭ୍ୟ ସଂଗ୍ରହ କାର୍ଯ୍ୟ ଜୋର୍ ସୋର୍ ରେ ଚାଲିଲା। ଏହା ଦରବାରଙ୍କ ପକ୍ଷେ ଗାତ୍ରଦାହ ହେବାରୁ ତା ୨୮।୩।୪୬ଦିନ ଦଣ୍ଡବିଧି ଆଇନର ୧୪୪ଧାରା ଶ୍ରୀଧର ଦାଶଙ୍କ ଉପରେ ଜାରିହେଲା । ରାଜାଙ୍କର ଏତାଦୃଶ କାର୍ଯ୍ୟରେ ପ୍ରଜାମଣ୍ଡଳ କର୍ମୀ ତଥା ଜନସାଧାରଣଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି କଲା। ରାଜ୍ୟସାରା ଜନବିକ୍ଷୋଭ ଦେଖାଦେଲା । କର୍ମୀମାନଙ୍କ ଦ୍ୱାରା ବଡ ବଡ ସଭମାନଙ୍କରେ ରାଜାଙ୍କର ଉକ୍ତ କାର୍ଯ୍ୟର ନିନ୍ଦାବାଦ କରିବା ସଙ୍ଗେ ସଙ୍ଗେ ସଭା ଓ ଶୋଭାଯାତ୍ରା ମାଧ୍ୟମରେ ବିକ୍ଷୋଭ ପ୍ରଦର୍ଶନ କରାଯିବାରୁ ନୟାଗଡର ଚିଫ୍ ମିନିଷ୍ଟର ଶ୍ରୀଧର ଦାଶଙ୍କ ଉପରୁ ୧୪୪ଧାରା ଉଠାଇ-ନେଲେ। ଗୋଡିପଡାଠାରେ ପ୍ରଜାମଣ୍ଡଳର ଏକ ଅଧିବେଶନ ଅନୁଷ୍ଠିତ ହେବାପାଇଁ ତା ୧୦।୩।୪୬ଦିନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ସ୍ଥିରକଲେ। ସେତେବେଳକୁ ଓଡିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ ମଧ୍ୟ ଗଡଜାତମାନଙ୍କରେ ପୂର୍ବ ନିଷ୍ପେଷଣ ଧାରା ଯୋଡି ରହିଥାଏ। ପ୍ରଜାମଣ୍ଡଳ ଅଧିବେଶନ ଭଳି ଏକ ବୃହତ୍ତର କାର୍ଯ୍ୟ ଅତ୍ୟନ୍ତ କଷ୍ଟଦାୟକ ମନେହେଉଥିଲେ ମଧ୍ୟ ଉକ୍ତ ପ୍ରସ୍ତାବ କାର୍ଯ୍ୟକାରୀ କମିଟି ଗ୍ରହଣ କଲେ। ନିର୍ଦ୍ଧିଷ୍ଟମତେ ମେ ମାସ ୨୫, ୨୬, ୨୭ ତିନିଦିନ ଅଧିବେଶନ ଅନୁଷ୍ଠିତ ହେବାର ସ୍ଥିରହେଲା । ଏଥିପାଇଁ ଶ୍ରୀ ଶ୍ରୀଧର ଦାଶଙ୍କ ସଭାପତିତ୍ୱରେ ଅଭ୍ୟର୍ଥନା କମିଟି ଗଠନ କରାଗଲା। ଶ୍ରୀ ଶୁକ୍ର ବେହେରା ଓ ଶ୍ରୀ ଉଦୟନାଥ ପୃଷ୍ଟି ଯଥାକ୍ରମେ ଉପସଭାପତି ଓ ସମ୍ପାଦକ ରୂପେ ନିର୍ବାଚିତ ହେଲେ। ଗୋପୀନାଥ ପରିଡା, ଭରତ ମାଝୀ, ଲିଙ୍ଗରାଜ ପ୍ରଧାନ, ପାଣ୍ଡୁଚରଣ ସାହୁ, ଲକ୍ଷ୍ମୀକେଶ୍ୱର ମିଶ୍ର, ଭିକାରୀ ଚରଣ ମହାନ୍ତି, ପାଣ୍ଡୁ ମହାପାତ୍ର, ବ୍ରହ୍ମଚାରୀ ତ୍ରିପାଠୀ ଶ୍ୟାମସୁନ୍ଦର ସାହୁ ପ୍ରମୁଖ ଅଭ୍ୟର୍ଥନା ସମିତିର ସଭ୍ୟଭାବେ ମନୋନୀତ ହେଲେ । ଏ ସମ୍ପର୍କରେ ଆବଶ୍ୟକୀୟ ପରାମର୍ଶ ପାଇଁ ଓଡିଶା ଗଡଜାତ ପ୍ରଜାମଣ୍ଡଳ କମିଟିର ଅଧ୍ୟକ୍ଷ ସାରଙ୍ଗଧର ଦାସଙ୍କୁ ଲେଖାଯିବାରୁ ପ୍ରଜାମଣ୍ଡଳର ଏଭଳି ଏକ ପ୍ରସ୍ତାବକୁ ସେ ଦୃଢ ସମର୍ଥନ ଜଣାଇବା ସଙ୍ଗେ ସଙ୍ଗେ ଉକ୍ତ ଅଧିବେଶନକୁ ଓଡିଶା ଗଡଜାତମାନଙ୍କର ପ୍ରଜାମଣ୍ଡଳ କର୍ମକର୍ତ୍ତାମାନଙ୍କୁ ନିମନ୍ତ୍ରଣ କରିବାପାଇଁ ପରାମର୍ଶ ଦେଲେ ।

୧୯୪୬ ମସିହା ମାର୍ଚ୍ଚ ମାସରେ ଇଂରେଜ ସରକାର ଭାରତର ସ୍ୱାଧୀନତା ପ୍ରାପ୍ତି ସମ୍ପର୍କରେ ଆଲୋଚନା କରିବାପାଇଁ ତ୍ରିବିଶ ମନ୍ତ୍ରୀମଣ୍ଡଳର ୩ଜଣ ସଭ୍ୟ ଯଥା ସାର୍ ଷ୍ଟାଫୋର୍ଡ କ୍ରିପ୍ସ, ଲର୍ଡ ପେଥିକ ଲରେନ୍ସ ଓ ମିଃ. ଆଲେକଜାଣ୍ଡାରଙ୍କୁ ଭାରତ ପଠାଇଲେ । ଏହି ମିସନ ବିଭିନ୍ନ ରାଜନୈତିକ ଦଳର ନେତୃବର୍ଗଙ୍କ ସହିତ କ୍ଷମତା ହସ୍ତାନ୍ତର ସମ୍ପର୍କରେ ଆଲୋଚନା ଚଳାଇଲେ । ଏହି ସୁଯୋଗରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଓଡ଼ିଶା ଗଡ଼ଜାତଗୁଡ଼ିକର ସ୍ଥିତି ସମ୍ପର୍କରେ ବିଭିନ୍ନ ଐତିହାସିକ ତଥ୍ୟମୂଳକ କାରଣମାନ ଦର୍ଶାଇ ଓଡ଼ିଶାର ୨୬ଗୋଟି ଗଡ଼ଜାତକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ବୃହତ୍ତର ଓଡ଼ିଶା ପ୍ରଦେଶ ଗଠନ ପାଇଁ ପ୍ରସ୍ତାବ ଗ୍ରହଣ କରିଥିଲେ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ତା ୧୦।୪।୪୬ରେ ଓଡ଼ିଶା ଗଡ଼ଜାତ ରାଜା ମହାରାଜାମାନଙ୍କୁ ଚିଠିଲେଖି ଓଡ଼ିଶା ପ୍ରଦେଶ ସହିତ ମିଶିଯିବା ସମସ୍ତ ଦୃଷ୍ଟିରୁ ହିତକାରୀ ବୋଲି ଜଣାଇ ଦେଇଥିଲେ ଓ କ୍ୟାବିନେଟ ମିସନ ନିକଟରେ ଉକ୍ତ ପ୍ରସ୍ତାବ ଦୃଢ଼ଭାବରେ ଉପସ୍ଥାପିତ କରିଥିଲେ । ତାଙ୍କର ଏହି ପ୍ରସ୍ତାବ ଦେଶୀୟ ରାଜ୍ୟ ପ୍ରଜାପରିଷଦର ଇନ୍ଦୋର ପ୍ରସ୍ତାବ ଅନୁରୂପ ହୋଇଥିବାରୁ ନୟାଗଡ଼ ପ୍ରଜାମଣ୍ଡଳ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ପ୍ରସ୍ତାବକୁ ସ୍ୱାଗତ ଜଣାଇଥିଲେ । ଦେଶର ଏଭଳି ସଂକଟଜନକ ପରିସ୍ଥିତିରେ ନିଜର ଫାଇଦା ଉଠାଇବା ପାଇଁ ଭାରତ ଦେଶୀ ରାଜ୍ୟ ଶାସକମାନେ ନିଜର ଏକ ସଙ୍ଘ (ରାଜନ୍ୟ ମଣ୍ଡଳୀ) ଗଠନ କରି ତା'ରି ମାଧ୍ୟମରେ ନିଜର ସ୍ୱାତନ୍ତ୍ର୍ୟରକ୍ଷା କରିବାପାଇଁ ନାନା ଅପକୌଶଳ ଚଳାଇଲେ । ଓଡ଼ିଶାର ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ, କଳାହାଣ୍ଡି ମହାରାଜା ପ୍ରତାପ କେଶରୀ ଦେଓ, ଷଢେଇକଳାର ରାଜା ଏ.ପି ସିଂହଦେଓ ପ୍ରମୁଖ ଭାରତୀୟ ଗଡ଼ଜାତଗୁଡ଼ିକୁ ଏକାଠିକରି ଗୋଟିଏ ଫେଡେରଲ ୟୁନିୟନ ଗଠନପାଇଁ ଜୋର୍‌ସୋର୍‌ରେ ଉଦ୍ୟମ ଚଳାଇଥା'ନ୍ତି । ଏହି ଫେଡେରାଲ୍ ୟୁନିୟନକୁ ପ୍ରଜାମଣ୍ଡଳର କର୍ମୀମାନେ ତୀବ୍ର ପ୍ରତିରୋଧ କରୁଥା'ନ୍ତି । ଇନ୍ଦୋର ପ୍ରସ୍ତାବମତେ ୨୦ଲକ୍ଷରୁ କମ୍ ଲୋକସଂଖ୍ୟା କିମ୍ବା ୫୦ଲକ୍ଷରୁ କମ୍ ଆୟକରୁଥିବା ଗଡ଼ଜାତଗୁଡ଼ିକୁ ଶାସନତାନ୍ତ୍ରିକ ସୁବିଧା ଦୃଷ୍ଟିରୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବାପାଇଁ ନୟାଗଡ଼ ପ୍ରଜାମଣ୍ଡଳ ସ୍ଥିର କରି ଜନସଂଗଠନ କାର୍ଯ୍ୟରେ ଲାଗିଗଲେ ଏବଂ ତତ୍ ସଙ୍ଗେ ସଙ୍ଗେ ଗାଦି ଛାଡ଼ିବାପାଇଁ ରାଜାଙ୍କୁ ଆହ୍ୱାନକରି ଜନମତ ସୃଷ୍ଟିକଲେ

# ଦ୍ୱିତୀୟ ପରିଚ୍ଛେଦ

## ନୟାଗଡ଼ ପ୍ରଜାମଣ୍ଡଳର ଐତିହାସିକ ୩ୟ ଅଧିବେଶନ

ନୟାଗଡ ପ୍ରଜାମଣ୍ଡଳର ୩ୟ ଅଧିବେଶନପାଇଁ ଅଭ୍ୟର୍ଥନା ସମିତି ୫ହଜାର ପ୍ରତିନିଧି ରହିବାପାଇଁ ଗୃହ ଏବଂ ଲକ୍ଷେ ଲୋକଙ୍କର ଖାଇବାର ଲକ୍ଷ୍ୟରଖି କାର୍ଯ୍ୟ କଲେ । ଗୋଡ଼ିପଡ଼ା ଅଞ୍ଚଳ ଲୋକଙ୍କ ଉଦ୍ୟମରେ ସଭାଗୃହ ଏବଂ ପ୍ରତିନିଧି ନିବାସ ନିର୍ମାଣ ହୋଇଥିଲା । ରାଜ୍ୟରେ ବିଭିନ୍ନ ଅଞ୍ଚଳରୁ ଖାଦ୍ୟପେୟ ପାଇଁ ସାମଗ୍ରୀ ଗଦା ଆକାରରେ ଆସି ପହଂଚିଲା । ନିଖିଳ ଭାରତ ଗଡଜାତ ପ୍ରଜାପରି-ଷଦର ସଭାପତି ପଣ୍ଡିତ ଜବାହରଲାଲ ନେହେରୁଙ୍କ ନାମାନୁସାରେ ନିର୍ମିତ ଅଧିବେଶନ ନଗରର ନାମ ନେହେରୁନଗର ରଖାଯାଇଥିଲା । ତା ୨୦-୫-୪୬ଦିନ ନେହେରୁନଗରରେ ପ୍ରଜାମଣ୍ଡଳ ଅଫିସ ଅସ୍ଥାୟୀଭାବେ ପ୍ରତିଷ୍ଠା କରାଗଲା । ଦୁଃଖର ବିଷୟ ସେହିଦିନ ଉପରବେଳା ପ୍ରବଳ ଝଡ଼ ତୋଫାନ ହେବା ଫଳରେ ନବ-ନିର୍ମିତ ନେହେରୁନଗର ସମ୍ପୂର୍ଣ୍ଣଭାବେ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ଏ ସମ୍ବାଦ ରାତାରାତି ଗୋଡ଼ିପଡ଼ା ଗ୍ରାମାଞ୍ଚଳ ଲୋକମାନଙ୍କ ନିକଟରେ ପହଂଚିଯିବାରୁ ତା ୨୧—୫—୪୬ ଦିନ ସକାଳୁ ହଜାର ହଜାର ଲୋକ ପ୍ରଜାମଣ୍ଡଳ ଅଧିବେଶନ ନେହେରୁ ନଗରରେ ଉପସ୍ଥିତ ହୋଇ ନେହେରୁ ନଗରର ପୁନର୍ନିର୍ମାଣ କରି ଦେଇଥିଲେ । ଏହି ଝଡ଼ତୋଫାନ ନେହେରୁନଗର ଭାଙ୍ଗିଲାସତ୍ୟ, ମାତ୍ର ଦଳର ଅଭାବ ପୂରା ମେଣ୍ଟାଇ ଦେଇଥିଲା । ଏହାପରେ ହଜାର ହଜାର ଲୋକଙ୍କ ଉପସ୍ଥିତିରେ ନେହେରୁ ନଗର ମୁଖରିତ ହୋଇ ଉଠିଲା । ଗ୍ରାମମାନଙ୍କରୁ ଡାଲି, ଚାଉଳ, ପରିବା ଟଙ୍କାପଇସା ଇତ୍ୟାଦି ଅଧିବେଶନ ଖର୍ଚ୍ଚପାଇଁ ଆସି ପହଂଚିଲା । ଶ୍ରୀଯୁକ୍ତ ବେହେରା ଭଣ୍ଡାରଘର ଦାୟିତ୍ୱରେ ରହିଲେ । କର୍ମୀ ଗୋପୀନାଥ ପରିଡ଼ାଙ୍କୁ ତାଙ୍କର ସହଯୋଗୀଭାବେ ରଖାଗଲା । ସହସ୍ରାଧିକ ସ୍ୱେଚ୍ଛାସେବକ

ଅଧିବେଶନରେ ବିଭିନ୍ନ କାର୍ଯ୍ୟପାଇଁ ମୁତୟନ ହେଲେ । ଆଦିବାସୀ ଲୋକେ ସଭାପାଇଁ ବହୁପଟି ଓ ଖ୍ୱଞ୍ଚେନା ଯୋଗାଇ ଦେଇଥିଲେ । ଏଭଳି ଏକ ବିରାଟ ଆୟୋଜନ ସତ୍ତ୍ୱେ ନୟାଗଡ଼ ପାଖ ସବୁ ଗ୍ରାମରୁ ଯେଉଁସବୁ ପେଟ୍ରୋମାକ୍ସ ଲାଇଟ୍ ସଭାପାଇଁ ମଗାଯାଇଥିଲା, ତାହା ସଭାସ୍ଥଳକୁ ପୂର୍ଣ୍ଣ ଆଲୋକିତ କରିପାରୁ ନଥିଲା । ନୟାଗଡ଼ରେ ଏହାକୁ ଅଧିକ ଲାଇଟ୍ ନ ଥିବାରୁ ଲାଇଟ୍ ସଂଗ୍ରହ କରାଯାଇ ପାରିନଥିଲା ।

ତା ୨୫–୫–୪୬ ଦିନ ଶୁଭବେଳାରେ ପ୍ରଜାମଣ୍ଡଳର ୩ୟ ଅଧିବେଶନର କାର୍ଯ୍ୟକ୍ରମ ବିପୁଳ ସମାବେଶହର ସହିତ ନେହେରୁ ନଗରରେ ଅନୁଷ୍ଠିତ ହେଲା । ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଶ୍ରୀ ସତ୍ୟବାଦୀ ନନ୍ଦ ପୂର୍ବାହ୍ନ ଘଣ୍ଟା ସମୟରେ ଜାତୀୟ ପତାକା ଉତ୍ତୋଳନ କରିଥିଲେ । ପ୍ରଜାମଣ୍ଡଳର ଏହି ୩ୟ ଅଧିବେଶନକୁ ଉତ୍କଳ କଂଗ୍ରେସ କମିଟିର ସଭାନେତ୍ରୀ ଶ୍ରୀମତୀ ମାଳତୀ ଚୌଧୁରୀ ସମ୍ପାଦକ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶ୍ରୀ ବନମାଳୀ ପଟ୍ଟନାୟକ, ଏମ୍.ଏଲ୍.ଏ., କଟକ ଟାଉନ କଂଗ୍ରେସ କମିଟିର ସଭାପତି ରବି ଘୋଷ, ସମ୍ପାଦକ ବିଶ୍ୱନାଥ ପଣ୍ଡିତ ଏବଂ କବି ବାଞ୍ଛାନିଧି ଦାଶ ପ୍ରମୁଖ ଉତ୍କଳ କଂଗ୍ରେସ କମିଟି ପକ୍ଷରୁ ଯୋଗ ଦେଇଥିଲେ । ଓଡ଼ିଶା ଗଡ଼ଜାତ ପ୍ରଜାମଣ୍ଡଳ ନେତାମାନଙ୍କ ମଧ୍ୟରୁ ହିନ୍ଦୋଳ ପ୍ରଜାମଣ୍ଡଳର ସଭାପତି ଦୀନବନ୍ଧୁ ଆଚାର୍ଯ୍ୟ, ଢେଙ୍କାନାଳ ସଭାପତି ମହେଶ୍ୱର ସୁବାହୁସିଂହ, ସମ୍ପାଦକ ନରୋତ୍ତମ ଦାଶ, ନୀଳଗିରି ପ୍ରଜାମଣ୍ଡଳର ସଭାପତି କୈଳାସ ଚନ୍ଦ୍ର ମହାନ୍ତି, ସମ୍ପାଦକ ହାଡ଼ିବନ୍ଧୁ ରାଜ, ପାଲଲହଡ଼ା ପ୍ରଜାମଣ୍ଡଳ ସଭାପତି ଫକୀର ମୋହନ ପ୍ରଧାନ, ତିଗିରିଆ ପ୍ର.ମ: ସଭାପତି ସଭାପତି ବିପିନ ବିହାରୀ ପଟ୍ଟନାୟକ, ଖଣ୍ଡପଡ଼ା ପ୍ର:ମ: ସଭାପତି ରଘୁନାଥ ସିଂହସାମନ୍ତ, କଳାହାଣ୍ଡି ପ୍ର:ମ: ସଭାପତି ଅପୁତ୍ର ସାହୁ ଓ ସମ୍ପାଦକ କୃଷ୍ଣମୋହନ ପଟ୍ଟନାୟକ, କେନ୍ଦୁଝର ପ୍ର:ମ: ସଭାପତି ନାରାୟଣ ଚକ୍ର, ସମ୍ପାଦକ କୀର୍ତ୍ତନ ବିହାରୀ ମହାନ୍ତି, ଗଙ୍ଗାଧର ଦାଶ, ଆଠମଲ୍ଲିକ ପ୍ର:ମ: ସମ୍ପାଦକ ଦ୍ୱିତୀୟା ରାଉଳ, ତାଳଚେର ପ୍ରଜାମଣ୍ଡଳର ଉପସଭାପତି ମଦନମୋହନ ପ୍ରଧାନ, କର୍ମୀ ବିଚ୍ଛନ୍ଦ ଚରଣ ପ୍ରଧାନ, ଗୌରୀଶଙ୍କର ପ୍ରଧାନ, ଆଠଗଡ଼ ପ୍ର.ମ: ସମ୍ପାଦକ ବିଶ୍ୱନାଥ ରଥ, ସୋନପୁର ପ୍ର:ମ: ସମ୍ପାଦକ ରାମଚନ୍ଦ୍ର ଶତପଥୀ, ରଣପୁର ପ୍ର:ମ ଉପସଭାପତି ବାଞ୍ଛାନିଧି ସେନାପତି, ସମ୍ପାଦକ ମୂରଲୀଧର ଦାସ, ମୟୂରଭଞ୍ଜ ଓ ପ୍ର:ମ: ସମ୍ପାଦକ ପ୍ରସନ୍ନକୁମାର ଦାଶ, ବୌଦ୍ଧ ପ୍ର.ମ. ସମ୍ପାଦକ ଭଗବାନ ପଣ୍ଡା ଓ ପବିତ୍ର ମୋହନ ବେହେରା, ତାଳଚେର, ଫକିରଚରଣ ସାହୁ ପ୍ରମୁଖ ଏହି ଅଧିବେଶନରେ ଯୋଗ ଦେଇଥିଲେ । ସନ୍ଧ୍ୟା ୫ଘଣ୍ଟା ସମୟରେ ବିପୁଳ ଜନ–ସମାବେଶ ମଧ୍ୟରେ ଶ୍ରୀମତୀ ମାଳତୀ ଚୌଧୁରୀ ପ୍ରଜାମଣ୍ଡଳ ୩ୟ ଅଧିବେଶନ ଉଦ୍‌ଘାଟନ କରିଥିଲେ । ନୟାଗଡ଼ ପ୍ରଜାମଣ୍ଡଳ ସଭାପତିଙ୍କ ଅନୁରୋଧ କ୍ରମେ

ତାଳଚେରର ଅନ୍ୟତମ ନେତା ଶ୍ରୀ ମଦନମୋହନ ପ୍ରଧାନ ଅଧିବେଶନ ସଭାପତିତ୍ୱ କରିଥିଲେ । ଶ୍ରୀମତୀ ମାଳତୀ ଚୌଧୁରୀ ଅଧିବେଶନର ଉଦ୍‌ଘାଟନ କରି ଯେଉଁ ଉଦ୍‌ବେଗ ପୂର୍ଣ୍ଣ ଜ୍ୱାଳାମୟୀ ଭାଷଣ ଦେଇଥିଲେ ତାହା ଉପସ୍ଥିତ ଗଡ଼ଜାତ ନେତାମାନଙ୍କୁ ଅଧିକ ଉତ୍ସାହିତ କରିଥିଲା । ଅଧିବେଶନ ଉଦ୍‌ଘାଟନ କରିସାରିବା ପରେ ତା୨୬ରିଖ ପାଇଁ ସଭାବନ୍ଦ ରଖାଗଲା । ତା ୨୬–୫–୪୬ ପୂର୍ବାହ୍ଣ ଘ୬ଣ୍ଟା ଏବଂ ଅପରାହ୍ଣ ଘ୩ଣ୍ଟା ସମୟରେ ୨ଟି ପର୍ଯ୍ୟାୟରେ ବିଷୟ ନିର୍ବାଚନ ସମିତିର ବୈଠକ ଅନୁଷ୍ଠିତ ହୋଇ ଅଧିବେଶନ ପାଇଁ ବିଭିନ୍ନ ପ୍ରସ୍ତାବ ସହକର୍ମସୂଚୀ ଗ୍ରହଣ କରିଥିଲେ । ଅପରାହ୍ଣ ଘ୬ଣ୍ଟା ସମୟରେ ଅର୍ଦ୍ଧଲକ୍ଷାଧିକ ଲୋକଙ୍କ ଉପସ୍ଥିତିରେ ପ୍ରଜାମଣ୍ଡଳର ଖୋଲା ଅଧିବେଶନ କାର୍ଯ୍ୟ ଆରମ୍ଭ ହେଲା । ସର୍ବପ୍ରଥମେ ୧୯୪୨ ଆନ୍ଦୋଳନରେ ଶହୀଦତ୍ୱ ଲାଭ କରିଥିବା ଅଗଣିତ ଶହୀଦଙ୍କ ଉଦ୍ଦେଶ୍ୟରେ ସଭାପତିଙ୍କ ପକ୍ଷରୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରାଯିବା ପରେ ଦୁଇମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା । नयागड ପ୍ରଜାମଣ୍ଡଳର ସଭାପତି ୨ୟ ପ୍ରସ୍ତାବ ଆଗତ କରିଥିଲେ । ୧୯୩୯ ହରିଦ୍ୱାରରେ ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକ ପରିଷଦ ଇନ୍ଦୋର ବୈଠକରେ ଗୃହୀତ ପ୍ରସ୍ତାବମତେ ଯେଉଁ ସବୁ ରାଜ୍ୟର ଲୋକସଂଖ୍ୟା ୨୦ ଲକ୍ଷରୁ କମ୍ କିମ୍ବା ଆୟ ୫୦ଲକ୍ଷରୁ କମ୍ ସେସବୁ ରାଜ୍ୟକୁ ନିକଟବର୍ତ୍ତୀ ପ୍ରଦେଶ ସହିତ ମିଶାଇ ଦିଆଯାଉ । ଏସବୁ ଛୋଟ ଛୋଟ ରାଜ୍ୟର ଲୋକସଂଖ୍ୟା ଓ ଆୟ ଦୃଷ୍ଟିରୁ ଏହା ଗୋଟିଏ ଗୋଟିଏ ପ୍ରଦେଶ ଭଳି ତିଷ୍ଠି ରହିପାରିବ ନାହିଁ । ଏହି ପ୍ରସ୍ତାବକୁ ଜୟପୁର ବୈଠକରେ ପୁନର୍ବାର ଦୃଢ଼ୀଭୂତ କରାଯାଇଅଛି । ଓଡ଼ିଶା ଗଡ଼ଜାତ ଗୁଡ଼ିକୁ ୧୮୧୪ ମସିହା ପର୍ଯ୍ୟନ୍ତ ଇଂରେଜ ସରକାର ଅଧୀନରେ ଗୋଟିଏ ଗୋଟିଏ ଜମିଦାରୀ ଭଳି ଥିଲା । ଇଂରେଜ ସରକାର ସେଗୁଡ଼ିକୁ ଜନସାଧାରଣଙ୍କ ଅଜ୍ଞାତରେ ହଠାତ୍ ଶାସକ ଷ୍ଟେଟ୍‌ର୍ ପରିଣତ କରିଦେଲେ । ଏହାଫଳରେ ଏକଛତ୍ରାଧିପତି ଭାବେ ଏହି ଶାସକମାନେ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳାଇ ଅଛନ୍ତି ଏବଂ ପ୍ରଜାଙ୍କର ଆର୍ଥିକ, ରାଜନୈତିକ ତଥା ସାମାଜିକ ଉନ୍ନତି କରାଇ ଦେଉନାହାନ୍ତି, ଲୋକଙ୍କର ନାଗରିକ ଅଧିକାର ମଧ୍ୟ ଖର୍ବ କରିଛନ୍ତି । ଓଡ଼ିଶା ଗଡ଼ଜାତ ତଦନ୍ତ କମିଟି ଓଡ଼ିଶା ଗଡ଼ଜାତ ଗୁଡ଼ିକର ପ୍ରକୃତ ଅବସ୍ଥା ତଦନ୍ତ କରି ତାଙ୍କ ରିପୋର୍ଟରେ ଦୃଢ଼ଭାବରେ ସୁପାରିଶ କରିଥିଲେ ଯେ ଓଡ଼ିଶାର ୨୬ ଗୋଟି ଓଡ଼ିଆଭାଷୀ ଗଡ଼ଜାତଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ଜରୁରୀ ମିଶାଇ ଦେବା ଆବଶ୍ୟକ । ସଂପ୍ରତି ଉକ୍ତ ପ୍ରସ୍ତାବ ତୁରନ୍ତ କାର୍ଯ୍ୟକାରୀ କରାଇବା ଉଦ୍ଦେଶ୍ୟରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ତରଫରୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ବିଲାତମନ୍ତ୍ରୀ ପରିଷଦ ତଥା ଭାରତର ଗଭର୍ଣ୍ଣର ଜେନେରାଲଙ୍କ ପାଖରେ ପ୍ରସ୍ତାବ କରିଛନ୍ତିକି ଓଡ଼ିଶା ଗଡ଼ଜାତ ଗୁଡ଼ିକୁ ତୁରନ୍ତ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦିଆଯାଉ ।

ଆଜିର ଏହି ଅଧିବେଶନ ଦୃଢ଼ତାର ସହିତ ମତପ୍ରକାଶ କରିଛନ୍ତି କି ଭବିଷ୍ୟତ ଭାରତ ଶାସନ ଦାୟିତ୍ୱ ବହନ କରିବା ପାଇଁ ଏବଂ ସମଗ୍ର ଦେଶର ରାଜନୈତିକ, ଅର୍ଥନୈତିକ ସାମାଜିକ ଉନ୍ନତି ସାଧନ ଉଦ୍ଦେଶ୍ୟରେ ଓଡ଼ିଶାର ୨୬ଗୋଟି ଗଡ଼ଜାତକୁ ଓଡ଼ିଶା ପ୍ରଦେଶ ସହିତ ତୁରନ୍ତ ମିଶାଇ ଦିଆଯାଉ । ପୁନଶ୍ଚ ଏହି ଅଧିବେଶନ ପ୍ରସ୍ତାବ କରୁଅଛନ୍ତି କି ଦେଶୀୟ ରାଜାମାନଙ୍କ ପକ୍ଷରୁ ୯୩ ଜଣ ପ୍ରତିନିଧି ବିଧାୟକ ସଭାକୁ ନିର୍ବାଚିତ ହେବାର ଯେଉଁ ବ୍ୟବସ୍ଥା ଅଛି । ଏହି ପ୍ରତିନିଧି ନିର୍ବାଚନ ପଦ୍ଧତି ଇତ୍ୟାଦି କାର୍ଯ୍ୟ ସ୍ଥିର କରିବା ନିମନ୍ତେ ମୋଗଲ ବନ୍ଦୀ ଓ ଗଡଜାତର ଲୋକ ପ୍ରତିନିଧିମାନଙ୍କୁ ଘେନି ଗୋଟିଏ କମିଟି ନିଯୁକ୍ତି ହେବାର ପ୍ରସ୍ତାବ ହୋଇଅଛି । ମାତ୍ର ବିଲାତ ମନ୍ତ୍ରୀ ପରିଷଦ ଏହି ସଂକ୍ରାନ୍ତ ଆଲୋଚନାରେ ଗଡ଼ଜାତ ଲୋକ ପ୍ରତିନିଧିମାନଙ୍କର ପରାମର୍ଶ ଗ୍ରହଣ କରି ନଥିବା ହେତୁ ଏହି ଅଧିବେଶନ ଗଭୀର ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସ୍ପଷ୍ଟଭାବେ ଘୋଷଣା କରିବାକୁ ଚାହାନ୍ତି ଯେ ନିଖିଳ ଭାରତ ଗଡ଼ଜାତ ପ୍ରଜାପରିଷଦ ଦ୍ୱାରା ସ୍ୱୀକୃତ ବିଧି ଅନୁସାରେ ଗଡଜାତମାନଙ୍କର ଲୋକଙ୍କ ତରଫରୁ ପ୍ରତିନିଧି ଶାସନ ବିଧାନସଭାକୁ ନିଆନଗଲେ କୌଣସି ମିମାଂସା ଗଡ଼ଜାତବାସୀଙ୍କ ପକ୍ଷେ ଗ୍ରହଣୀୟ ହେବନାହିଁ । ନୀଳଗିରୀ ପ୍ରଜାମଣ୍ଡଳ ସଭାପତି କୈଳାସଚନ୍ଦ୍ର ମହାନ୍ତି ଏହି ପ୍ରସ୍ତାବକୁ ସମର୍ଥନ କରି ଭାଷଣ ଦେଲାପରେ ଏହା ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

ଷଷ୍ଠ ପ୍ରସ୍ତାବ ଆଗତ କରି ଶ୍ରୀ ଶ୍ରୀଧର ଦାଶ କହିଲେ ଯେ ଦେଶରେ ଦେଖା ଦେଇଥିବା ରାଜନୈତିକ ପରିସ୍ଥିତିର ଯଥାର୍ଥ ମୁକାବିଲା କରିବାପାଇଁ ନୟାଗଡରେ ସମାନ୍ତରାଳ ସରକାର ପ୍ରତିଷ୍ଠା କରାଯାଉ । ଏ ସମ୍ପର୍କରେ ନୟାଗଡ଼ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିବା ପଞ୍ଚାୟତ ନିୟମାବଳୀର ଚିଠା ପ୍ରସ୍ତାବ ସେ ଆଗତ କଲେ । ଏହି ନିୟମାବଳୀରେ ପ୍ରଜା– ମଣ୍ଡଳ ନିର୍ଦ୍ଦେଶ କ୍ରମେ ଗାଁ ଗୁଡ଼ିକରେ ସକଳ ପ୍ରକାର କଲ୍ୟାଣ ସାଧନ କରିବା ପଞ୍ଚାୟତର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ପଞ୍ଚାୟତଗୁଡ଼ିକୁ କ) ଗ୍ରାମ ପଞ୍ଚାୟତ, ଖ) ୟୁନିୟନ ପଞ୍ଚାୟତ, ଗ) ଥାନା ପଞ୍ଚାୟତ ଘ) କେନ୍ଦ୍ର ପଞ୍ଚାୟତ, ଙ) ବାର୍ଷିକ ସମ୍ମିଳନୀ ଏହି ଭାବରେ ପର୍ଯ୍ୟାୟକ୍ରମେ ଗଠିତ ହୋଇଥିଲା । ପାଞ୍ଚଶହ ଲୋକଙ୍କୁ ନେଇ ଗୋଟିଏ ପଞ୍ଚାୟତରେ ୫ଜଣ ସଭ୍ୟ ନିର୍ବାଚିତ ହେବେ । ଦୁଇହଜାର ବାସକରୁଥିବା ଚାରିଗୋଟି ପଞ୍ଚାୟତ ଅଞ୍ଚଳକୁ ନେଇ ୟୁନିୟନ ପଞ୍ଚାୟତ ଗଠିତ ହେବାର ବିଧାନ ଥିଲା । ନୟାଗଡ଼କୁ ୮ ଗୋଟି ଥାନା ପଞ୍ଚାୟତରେ ବିଭକ୍ତ କରି ଗଠନ କରାଯାଇଥିଲା । ଏହି ପ୍ରସ୍ତାବକୁ କୁବେର ସମର୍ଥନ କରବା ପରେ ଏହା ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା ।

୩ୟ ପ୍ରସ୍ତାବ ଆଗତ କରି ମହେଶ୍ୱର ସୁବାହୁସିଂହ ସଭାପତି, ଢେଙ୍କାନାଳ ପ୍ରଜାମଣ୍ଡଳ ଅଞ୍ଚଳ କାଉନସିଲର ସଭାପତି ଶ୍ରୀ ସାରଙ୍ଗଧର ଦାସଙ୍କ ଯଥାଶୀଘ୍ର ଅଞ୍ଚଳ କାଉନସିଲର ବୈଠକ ଡକାଇବା ପାଇଁ ଅନୁରୋଧ କରିଥିଲେ । ଏହି ପ୍ରସ୍ତାବକୁ ନୟାଗଡ ପ୍ରଜାମଣ୍ଡଳର ସମ୍ପାଦକ ଲକ୍ଷ୍ମଣ ମହାରଣା ସମର୍ଥନ କଲାପରେ ସର୍ବସମ୍ମତି କ୍ରମେ ଏହା ଗୃହୀତ ହୋଇଥିଲା । ଅନ୍ୟାନ୍ୟ ସମସ୍ତ କାର୍ଯ୍ୟସୂଚୀ ଶେଷ ହେବାପରେ ପ୍ରଜାମଣ୍ଡଳର ୩ୟ ଅଧିବେଶନ ଜାତୀୟ ସଙ୍ଗୀତ ଗାନପରେ ରାତ୍ର ୧୨ ଘଣ୍ଟା ସମୟରେ ସେଦିନ ଉଦ୍‌ଯାପିତ ହେଲା । ଅଧିବେଶନ ଶେଷରେ କବି ବାଞ୍ଛାନିଧି ଦାଶ, ସ୍ୱଲିଖିତ ଜାତୀୟ ସଙ୍ଗୀତ ଗାନ କରିଥିଲେ ।

ତା୨୭-୨-୪୬ରିଖ ସକାଳ ୭ଘଣ୍ଟା ସମୟରେ ପ୍ରଜାମଣ୍ଡଳ ଛାତ୍ର ସଂସ୍କୃତି ସଂଘର ସମ୍ମିଳନୀ ଅଧିବେଶନ ମଞ୍ଚରେ ଅନୁଷ୍ଠିତ ହୋଇ ଭବିଷ୍ୟତ ସଂଗ୍ରାମ ପାଇଁ ସଂଘବଦ୍ଧ ହୋଇ ରହିବାକୁ ଆହ୍ୱାନ କରି ଏକ ପ୍ରସ୍ତାବ ଗ୍ରହଣ କରିଥିଲେ । ଅପରାହ୍ନ ୪ଘଣ୍ଟା ସମୟରେ ପ୍ରଜାମଣ୍ଡଳ ମହିଳା ଶାଖା ସମିତିର ବୈଠକ ପ୍ରଜାମଣ୍ଡଳ ମଣ୍ଡପରେ ଅନୁଷ୍ଠିତ ହୋଇ ଭବିଷ୍ୟତ ଆନ୍ଦୋଳନରେ ନୟାଗଡ ରାଜ୍ୟର ମହିଳାମାନେ ସକ୍ରିୟ ଅଂଶ ଗ୍ରହଣ କରିବାପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଶ୍ରୀମତୀ କେତକୀ ଦେବୀ ଏହାର ନେତୃତ୍ୱ ନେଇଥିଲେ । ପ୍ରଜାମଣ୍ଡଳର ବିଭିନ୍ନ ଶାଖାଗୁଡ଼ିକର ସଭା ଶେଷ ହେବାପରେ ଅଧିବେଶନର ସମାପ୍ତି ଘୋଷଣା କରାଗଲା ।

ଦେଶରେ ଦେଖାଦେଇଥିବା ରାଜନୈତିକ ପରିବର୍ତ୍ତନ ସମୟରେ ଦେଶର ରାଜନୈତିକ ନେତୃବର୍ଗ ଇଂରେଜ ସରକାରଙ୍କ ସହ ଆଲୋଚନା ଚଳାଇଥିବା ବେଳେ ଓଡ଼ିଶା ଗଡ଼ଜାତ ଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇଦେବା ପାଇଁ ଗଡଜାତ ପ୍ରଜାମଣ୍ଡଳ ଗୁଡ଼ିକ ତଥା ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ପ୍ରସ୍ତାବକୁ ସାମନାରେ ରଖି ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ମିଶ୍ରଣ ପ୍ରସ୍ତାବକୁ କାର୍ଯ୍ୟକାରୀ କରାଇବା ଉଦ୍ଦେଶ୍ୟରେ ଓଡ଼ିଶା ଗଡ଼ଜାତର ରାଜା ପୂର୍ବ ଗଡ଼ଜାତ ସମୂହର ରେସିଡେଣ୍ଟ ପଲିଟିକାଲ୍ ଆଡ୍‌ଭାଇଜର Sir Conrad cor field, KCIE, CSI. MC, the crown Representative ଙ୍କ ସହ ଯୋଗସୂତ୍ର ରଖିଥାନ୍ତି ।

ଯୋଡ଼ିପଡ଼ା ଅଧିବେଶନରେ ନିଖିଳ ଭାରତ ଗଡଜାତ ପ୍ରଜାପରିଷଦ ଇନ୍ଦୋର ପ୍ରସ୍ତାବମତେ ଓଡ଼ିଶା ଗଡଜାତଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ

ଦେବା ପାଇଁ ପ୍ରସ୍ତାବ ହେବାରୁ ଷଡ଼େଇକଳା ରଜା ତା ୪-୬-୧୯୩୯ରେ ନିଜର ପ୍ରତିକ୍ରିୟା ପ୍ରକାଶ କରି ତତ୍‌କାଳୀନ ରେସିଡେଣ୍ଟଙ୍କୁ ଯେଉଁ ପତ୍ର ଲେଖିଥିଲେ ସେଥିରେ ଓଡ଼ିଶା କଂଗ୍ରେସ ଲୋକଙ୍କ ଦ୍ୱାରା ଉତ୍ସାହିତ ହୋଇ ଗଡ଼ଜାତ ଲୋକେ ଆନ୍ଦୋଳନ କରୁଥିବାରୁ ସେ ସ୍ଥାନୀୟ ନେତାମାନଙ୍କ ସହ ଏକାଠି ବସିବାକୁ ମନାକରି ରାଜନ୍ୟମଣ୍ଡଳୀର ଚ୍ୟାନ୍‌ସେଲର କେନ୍ଦ୍ରମାନଙ୍କ ସହ କଥାବାର୍ତ୍ତା କରିବା ଉଚିତ ବୋଲି ଲେଖିଥିଲେ । ଷଡ଼େଇକଳା ରଜା ଗଡ଼ଜାତ ପ୍ରଜାପରିଷଦର ୧୯୩୯ ମସିହା ଇନ୍ଦୋର ପ୍ରସ୍ତାବ ପ୍ରତି ଧ୍ୟାନ ଦେଇଥିଲେ ବୋଧେ ଏପରି କହି ନଥାନ୍ତେ । ଇନ୍ଦୋର ପ୍ରସ୍ତାବର ମୌଳିକ ଭିତ୍ତି ଉପରେ ଗୋଡ଼ିପଡ଼ା ଅଧିବେଶନରେ ମିଶ୍ରଣ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହା କଂଗ୍ରେସ ଲୋକଙ୍କର ପ୍ରସ୍ତାବ ନୁହେଁ । ରଜାମାନେ ବ୍ରିଟିଶ ଅଫିସରଙ୍କ ସହାୟତାରେ ରାଜନ୍ୟମଣ୍ଡଳୀ ଗଢି ସ୍ୱାଧୀନତାକୁ ଭଣ୍ଡୁର କରିବାପାଇଁ ଯେଉଁ ଚକ୍ରାନ୍ତ ଚଳାଇଥିଲେ ଗଡ଼ଜାତର ପ୍ରଜାମଣ୍ଡଳମାନେ ଠିକ୍ ସେହି ରୀତିରେ କଂଗ୍ରେସର ସହଯୋଗ ଲୋଡ଼ିବାରେ ଅସୁବିଧା କେଉଁଠି ଥିଲା ?



# ରାଜାମାନଙ୍କର ରାଷ୍ଟ୍ରସଂଘ ଗଠନ ପରିକଳ୍ପନା ଓ ଗାନ୍ଧିଜୀଙ୍କ ଉତ୍ତର

ଭାରତବର୍ଷର ରାଜାମାନେ ସ୍ୱକଳ୍ପିତ ରାଷ୍ଟ୍ରସଂଘ ଗଠନ କରିବାପାଇଁ ଯେଉଁ କଳ୍ପନା କରିଥିଲେ ସେ ବିଷୟରେ ଦକ୍ଷିଣଭାରତର ରାଜାମାନେ ତା ୨୮ ୭-୪୬ରେ ମହାତ୍ମାଗାନ୍ଧିଜୀଙ୍କ ସହିତ ସାକ୍ଷାତ କରି ତାଙ୍କର ଯୋଜନାଟି ଗାନ୍ଧିଜୀଙ୍କୁ ବିସ୍ତୃତ ଭାବରେ ବୁଝାଇବାରେ ଗାନ୍ଧିଜୀ ସେମାନଙ୍କୁ ଯେଉଁ ଉପଦେଶ ଦେଇଥିଲେ ତାହାହେଲା "ଆଜି ରାଜାମାନଙ୍କୁ ଭେଟିବାର ସୁଯୋଗପାଇ ମୋତେ ଭାରି ଖୁସି ଲାଗୁଛି। ଏ ସମ୍ପର୍କୀୟ ସମସ୍ତ କାଗଜପତ୍ର ଓ ବିବରଣୀ ପାଲ୍‌ଟନ୍‌ର ରାଜା ସାହେବ ଯୋଜନାଟିକୁ ବୁଝାଇ ଲେଖିଥିବା ବିବରଣୀକୁ ମୁଁ ପଢି ସାରିଛି। କାଗଜପତ୍ର ଉପରେ ମୋର କିଛି କହିବାର ନାହିଁ। ଆଜି ପର୍ଯ୍ୟନ୍ତ ଦେଶୀୟ ରାଜ୍ୟର ରାଜାମାନେ କେବଳ ନିଜ ନିଜ ବିଷୟରେ ଏବଂ ସର୍ବାଧିକାରୀ ବ୍ରିଟିଶ ସରକାରଙ୍କ ଠାରୁ ଏତେବର୍ଷ ପର୍ଯ୍ୟନ୍ତ ପାଇଥିବା ଆଶ୍ରୟ ପ୍ରତି ଧ୍ୟାନ ଦେଇଥିଲେ। କିନ୍ତୁ ଆଜି ସେମାନେ ଏହି ଭ୍ରମ ଧାରଣାକୁ ଛାଡ଼ି ସମଗ୍ର ହିନ୍ଦୁସ୍ଥାନକୁ ନିଜର ଚିନ୍ତାଧାରାରେ ସ୍ଥାନ ଦେଇଛନ୍ତି। ଏହା ଗୋଟିଏ ଶୁଭଲକ୍ଷଣ। ଅଳ୍ପ ଗୋଟା କେତେ ବର୍ଷ ତଳେ ସେମାନେ ଭାବୁଥିଲେ ଯେ ବ୍ରିଟିଶ ରାଜାଙ୍କର ସାର୍ବଭୌମ କ୍ଷମତା ଛଡ଼ା ସେମାନେ କୌଣସି ପ୍ରକାର ନିରାପଦରେ ରହିପାରିବେ ନାହିଁ। କିନ୍ତୁ ଏହା ଠିକ୍ ନୁହେଁ ବୋଲି ଅନେକ ରାଜାଙ୍କର ଚେତନା ହୋଇଅଛି। ସେମାନେ ଏହି ଭାରତ ଭୂଇଁର ପୁଅତ। ଏବେ ଏ ପରିବର୍ତ୍ତନଟି ଏକ ସ୍ୱାଭାବିକ କଥା। ମୁଁ ତ ଥରେ ଖୋଲାଖୋଲି ଏକଥା କହିଥିଲି ଯେ ରାଜାମାନେ ଗୋଲାମ। ଦେଶବାସୀ ଲୋକେ ଗୋଲାମର ଗୋଲାମ। ତାଙ୍କ ଉପରେ ବ୍ରିଟିଶ ସରକାରଙ୍କ ସୁନଜର ଥିବା ପର୍ଯ୍ୟନ୍ତ ହିଁ ସେମାନେ ନିଜ ନିଜ ରାଜ୍ୟ ଭିତରେ ତାଙ୍କର ଶାସନ ଚାଲୁ ରଖିଆନ୍ତି। ବ୍ରିଟିଶ ସରକାରଙ୍କର ମର୍ଜି ହେଲେ ସେମାନେ ରାଜା ହୋଇ ରହନ୍ତି। ପୁଣି ସେହି ବ୍ରିଟିଶ ସରକାରଙ୍କ କୋପ ଦୃଷ୍ଟିରେ ପଡ଼ିଲେ ସେମାନେ ଗାଦିଚ୍ୟୁତ ହୋଇଯାନ୍ତି। ଯେଉଁ ରାଜା ମହାରାଜାମାନେ ବ୍ରିଟିଶ ସରକାରଙ୍କର ଏହି ଭିତିରି କର୍ତ୍ତୃତ୍ୱକୁ ସମୁଝି ସାରିଲେଣି ସେମାନେ ହିନ୍ଦୁସ୍ଥାନ ପ୍ରଜାଙ୍କ ଭଳି ମଧ୍ୟ ହିନ୍ଦୁସ୍ଥାନର ସ୍ୱାଧୀନତା ଚାହିଁବାକୁ ଲାଗିଲେଣି। ଏଥିଯୋଗୁଁ ଯଦି ରାଜା– ମାନେ ନିଜର ହିପାଜତ୍ କିମ୍ବା ସଂରକ୍ଷଣ ସକାଶେ କୌଣସି ଉପାୟ ବା ବାଟ

ବାହାରକରିବା ଜରୁରୀ ବୋଲି ଅନୁଭବ କରୁଛନ୍ତି, ତେବେ ରାଜ୍ୟଗୁଡ଼ିକୁ ମିଳାଇ ଗୋଟିଏ ଗୋଟିଏ ସଂଘ କାଏମ କରିବା ପରିବର୍ତ୍ତେ ସେମାନେ ସର୍ବପ୍ରଥମେ ନିଜନିଜ ପ୍ରଜାମାନଙ୍କ ସହିତ ମିଳି ଏକାଠି ହୋଇଯାଆନ୍ତୁ । ତାଙ୍କର ସ୍ଥିତି ଓ ମାନ-ରକ୍ଷା କରିବା ସକାଶେ ତାଙ୍କ ନିଜ ପ୍ରଜାଙ୍କର ଆଶ୍ରୟ ନେବାକୁ ହେବ । ବ୍ରିଟିଶ ସରକାରଙ୍କର ଆଶ୍ରୟ କଦାଚ କାର୍ଯ୍ୟକାରୀ ହୋଇପାରିବ ନାହିଁ । କାରଣ ପ୍ରଜାଙ୍କ ଶକ୍ତିହିଁ ସର୍ବଶ୍ରେଷ୍ଠ ଶକ୍ତି । ସେମାନେ ଯଦି ଲୋକଙ୍କର ସେବକ ପାଲଟିଯାନ୍ତି ତେବେ ଯାଇ ସେମାନେ କର୍ତ୍ତବ୍ୟଦାର (ଟ୍ରଷ୍ଟି) ବୋଲାଇବେ । ସେମାନେ ଯଦି ଏହାକୁ ଅଙ୍ଗୀକାର କରିନିଅନ୍ତି, ତେବେ କଂଗ୍ରେସ ସହିତ କିମ୍ବା ଅନ୍ୟ ସଂସ୍ଥା ସହିତ ବୁଝାସୁଝା କରିବାର କିମ୍ବା କୌଣସି ସର୍ତ୍ତ ଧାର୍ଯ୍ୟ କରିବାର ଆବଶ୍ୟକତାହିଁ ରହିବ ନାହିଁ । ଏଇଥି ଯୋଗୁ ତାଙ୍କ ପ୍ରଥମ ଜରୁରୀ କାମ ଏହିଯେ ସେମାନେ ତାଙ୍କ ପ୍ରଜାଙ୍କ ସଙ୍ଗେ ଜଲ୍‌ଦି ବୁଝାସୁଝା କରି ନିଅନ୍ତୁ ।

ଏହା ସମ୍ଭବ ଯେ ଆପଣଙ୍କ ଯୋଜନା ସମ୍ପର୍କରେ ଯେଉଁମାନେ ପରାମର୍ଶ ଦେଉଛନ୍ତି ତାଙ୍କ ଭିତରେ ମୁହିଁ ଏକା ଏପ୍ରକାରର ରାୟ ଦେଉଛି । ତେବେ ବୁଢ଼ା ମୁଁ ଏପରି ଉପଦେଶ ଦେବା ସାହାସ କରୁଛି । ମୋ କହିବାର ମତଲବ ଏହିଯେ ରାଜାମାନେ ଯଦି ନିଜନିଜ ପ୍ରଜାଙ୍କର ସେବକ ଏବଂ ଟ୍ରଷ୍ଟି ବନିଯାନ୍ତି, ତେବେ ଯାଇ ସେମାନେ ନିଜର ବେତନର ଅର୍ଥାତ୍ ଝାଳବୁହା ପରିଶ୍ରମ ମଜୁରୀର ହକ୍‌ଦାର ହୋଇପାରନ୍ତି । ଏତକ ହୋଇଯାଉ । ତାପରେ ବିଚାର କରାଯାଉ ଯେ ଆପଣ ଓ ଆପଣଙ୍କ ପ୍ରଜା ଏକାଠି ମିଳି ସଂଘ କାମକରିବା ଚାହୁଁଛନ୍ତି କି ନା ? ଆପଣମାନେ ମିଳିକରି ଯେଉଁ ସଂଘ ଗଢ଼ିବାକୁ ଚାହୁଁଛନ୍ତି ମୋ ଦ୍ୱାରା ପ୍ରସ୍ତାବିତ ସଂଘ ବେଶୀ ସ୍ୱଚ୍ଛ ଓ ନିର୍ମଳ ।"

—*—

# ବ୍ରିଟିଶ ସରକାରଙ୍କ ପରାମର୍ଶ

ଦେଶୀୟ ରାଜ୍ୟ ସବୁ ଗୋଟିଏ ଗୋଟିଏ ସଂଘ ସ୍ଥାପନ କରିବାର ଏହି ଯେଉଁ ପ୍ରସ୍ତାବ, ଏହା ବ୍ରିଟିଶ ଶାସକ ଅର୍ଥାତ୍ ପଲିଟିକାଲ ଏଜେଣ୍ଟମାନଙ୍କର ସୃଜନୀ ବୋଲି ମୋର ଭିଷଣ ସନ୍ଦେହ ହେଉଅଛି । ସେମାନେ ଯଦି ରାଜନ୍ୟଙ୍କୁ ଏ ପରାମର୍ଶ ଦେଇଥାନ୍ତି ତେବେ ତାଙ୍କର ଏଥିରେ ଦୋଷନାହିଁ । ସେମାନେ ଏହି ପରମ୍ପରାରେ ତାଲିମ ହୋଇ ତିଆରି ହୋଇଛନ୍ତି । ହୁଏତ ସେମାନେ ଏପରି ଭାବୁଥିବେ ଯେ ହିନ୍ଦୁସ୍ଥାନରୁ ବ୍ରିଟିଶ ସରକାର ହଟିଯିବା ସଙ୍ଗେ ସଙ୍ଗେ ରାଜାମାନେ ପରସ୍ପର ସଙ୍ଗେ ଲଢ଼ାଲଢ଼ି କରି ମରିବେ । କିନ୍ତୁ ତାଙ୍କର ଏପରି ଡରର କୌଣସି ଭିତ୍ତି ନାହିଁ । ଦେଶ ଓ ପୃଥିବୀର ପରିସ୍ଥିତି ଏପରି ହେଲାଣି ଯେ ଇଂରେଜ ଅଫିସରମାନେ ହୁଏତ ମାସ କେତୁଟା ଭିତରେ ବାଧ୍ୟ ହୋଇ ହିନ୍ଦୁସ୍ଥାନ ଛାଡ଼ି ଯିବେ । ତେବେ ସେମାନେ ସତକୁ ସତ ବିଶ୍ୱାସ କରୁଛନ୍ତି ଯେ ତାଙ୍କ ଯିବା ପୂର୍ବରୁ ଗୋଟିଏ ଏକନିଷ୍ଠ ସଂଘରେ ସଙ୍ଗଠିତ ହୋଇ ରାଜାମାନେ ଯେପରି ତାଙ୍କ କ୍ଷମତାକୁ କେନ୍ଦ୍ରିଭୂତ ଏବଂ ସୁଦୃଢ଼ କରିପାରିବେ, ସେପରି ସାମର୍ଥ୍ୟ ହାତ କରି ଦେଇଯିବା ଉଚିତ । ଭାରତ ଯେ କେବଳ ବ୍ରିଟିଶ ଆୟତରୁ ମୁକ୍ତ ହେବା ଉଚିତ, ତା ନୁହେଁ, ପରନ୍ତୁ ଦେଶ ପୁରାତନ ସଂସ୍କୃତି ଓ ପରମ୍ପରା ଜ୍ୟୋତିକୁ ବଢ଼ାଇବା ଭଳି ସଚ୍ଚା ସ୍ୱାଧୀନତା ଉପଭୋଗ କରିବାର ମଧ୍ୟ ଆମେ ଯୋଗ୍ୟ । ସେହିପରି ସ୍ୱରାଜ୍ୟ ଭୋଗ କରିବାର ହେଲେ ତାକୁ ଉପରଆଡୁ ଲଦିଦେଲେ ଚଳିବ ନାହିଁ । ତାହା ତଳଆଡୁ ଆରମ୍ଭ କରି ଉପରଆଡ଼କୁ ବଢ଼ିବା ଉଚିତ । ଯଦିବା ଉପରଆଡୁ ଲଦାହୁଏ, ତାକୁ ସ୍ୱରାଜ କୁହାଯାଇ ନ ପାରେ । ଏହାଛଡ଼ା ଅନ୍ୟ କୌଣସି ଢଙ୍ଗରେ ଯଦି ସ୍ୱରାଜ କାଏମ ହୁଏ, ତେବେ ତାଦ୍ୱାରା କେବଳ ମାଲିକ ଶ୍ରେଣୀର ପରିବର୍ତ୍ତନ କରିବାର ବାଟ ଫିଟିଯିବା କଥା ହେବ । ଇଂରେଜଙ୍କ ବଦଳରେ ଅନ୍ୟ କୌଣସି ମିତ୍ର ରାଷ୍ଟ୍ର କିମ୍ବା ହିନ୍ଦୁସ୍ଥାନର ଛାତି ଉପରେ କୁଦି ବସିଲାଭଳି ତାକତ ଥିବା ଅନ୍ୟ କୌଣସି ବାହାରର ଶକ୍ତି ଦେଶର ମାଲିକ ହୋଇଯିବ । ହିନ୍ଦୁସ୍ଥାନର ଏପରି ଦୁର୍ଦ୍ଦଶା ମୁଁ ଦେଖିବାକୁ ଚାହେଁନା । ମୁଁ ଯେଉଁ ଯୁଗର ଅପେକ୍ଷାରେ ରହିଛି, ସେ ଯୁଗରେ ମୋ ଦେଶ ତାର ସ୍ୱଗୁଣ ବଳରେ ହିଁ ଏକ ବିରାଟତମ ଦେଶ ରୂପରେ ଖ୍ୟାତି ଅର୍ଜିବ । ସେହିପରି ଗୋଟିଏ ମହତ ଉଦ୍ଦେଶ୍ୟ ସାଧନ ଦିଗରେ ରାଜାମାନେ ଇଚ୍ଛାକଲେ ବଡ଼ ଉଦାର ଅବଦାନ କରିପାରନ୍ତି ।

ଦାକ୍ଷିଣାତ୍ୟର ରଜାମାନେ ଯଦି ଏ କାମରେ ସହଯୋଗ କରନ୍ତି ଏବଂ ଏକ ଉଜ୍ଜଳ ନମୂନା ତିଆରି କରି ଦିଅନ୍ତି, ତେବେ ଅନ୍ୟ ରଜାମାନେ ତାଙ୍କ ଦୃଷ୍ଟାନ୍ତକୁ ଅନୁସରଣ କରନ୍ତେ । ମୁଁ ପୁଣି କହୁଛି ଯେ ସେପରି ଉଦ୍ଦେଶ୍ୟ ସାଧନ ସକାଶେ ଆପଣମାନଙ୍କ ପ୍ରସ୍ତାବିତ ସଂଘଟିର ମୋଟେ ଆବଶ୍ୟକତା ନାହିଁ । ଅପରନ୍ତୁ ଆପଣମାନଙ୍କ ମନର କୌଣସି ଗୋଟିଏ ଛୋଟ କୋଣରେ ଏପରିଭାବ ନିହିତ ରହିଥାଏ ଯେ ଲୋକଙ୍କ କାନରେ ତଥାକଥିତ ଦାୟିତ୍ୱ ମୂଳକ ଶାସନ ଶୁଣାଇ ଦେଇ ପରେ ତାକୁ କାର୍ଯ୍ୟରେ ପରିଣତ ନ କରିବେ ତେବେ ଏହା ବୁଝିବାକୁ ହେବ ଯେ ପ୍ରସ୍ତାବିତ ସଂଘଟି ୟୁରୋପୀୟ ରାଷ୍ଟ୍ରମାନଙ୍କର ଫୌଜୀ ସଂଘ ଭଳି ସାବିତ ହେବ । ଏପରି ଫଉଜୀ ସଂଘ ବିରୁଦ୍ଧରେ ପ୍ରଜାମାନେ ଯେତେ ପାଟିତୁଣ୍ଡ କରନ୍ତୁ ନା କାହିଁକି ତେବେ ସୁଦ୍ଧା ସେହି ପ୍ରଜାଙ୍କୁ ଦବାଇବାରେ ତାଙ୍କୁ ଶୋଷିବାରେ ଏବଂ ପେଷିବାରେ ସେସଂଘର ତାକତ ପ୍ରୟୋଗ କରାଯିବ । କିନ୍ତୁ ଗୋଟିଏ ପହିଲା ନମ୍ବର ଫଉଜୀ ଶକ୍ତି ସାମନାରେ ଆପଣମାନଙ୍କର ଏହି ସଂଘ ଶକ୍ତି ବେକାର ବୋଲି ପ୍ରମାଣିତ ହେବ । ହିନ୍ଦୁସ୍ଥାନ ଉପରେ ଚଢାଉ କଲାବାଲା ଯେକୌଣସି ଶତ୍ରୁ ସାମନାରେ ସମସ୍ତଙ୍କୁ ତ୍ୟାଗକରି ଏଭଳି ସଂଘ ହତିଆରକୁ ତଳେ ପକାଇଦେବେ । ଅର୍ଥାତ୍-ଆତ୍ମ ସମର୍ପଣ କରିଦେବେ କାରଣ ଅସ୍ତ୍ରଶସ୍ତ୍ର ଧରି ବ୍ରିଟିଶଙ୍କ ଶାସନ ଗୋଟାଏ ନୂଆ ଶକ୍ତିର ପ୍ରତିରୋଧ କରିବା ଭଳି ତାଲିମ ବ୍ରିଟିଶ ମାନେ ଆମ ରଜାମାନଙ୍କୁ କେବେ ହେଲେ ଦେଇନାହାନ୍ତି ଏବଂ ଏ ବିଷୟରେ ସେମାନେ ମୂଳରୁ ସାବଧାନ ରହିଥିଲେ ।

ରଜୁଡା ମାନଙ୍କ ସମ୍ବନ୍ଧରେ ଯେଉଁ କଥା ସାରା ହିନ୍ଦୁସ୍ଥାନ ସମ୍ବନ୍ଧରେ ସେହି କଥା । ଭାରତ ବର୍ଷ ଗୋଟିଏ ପହିଲା ନମ୍ବର ସାମରିକ ଶକ୍ତି ହୋଇପାରିବା ପୂର୍ବରୁ ପଶ୍ଚିମାଜାତିମାନଙ୍କ ଗୋଡତଳେ ବସି ସେ ବିଦ୍ୟା ହାସଲ କରିବାକୁ ଦୀର୍ଘକାଳ ଲାଗିଯିବ । ସେହି ଘଟଣା ଯଦି ଘଟିବାର ହୁଏ, ତେବେ କଂଗ୍ରେସ ଯେଉଁ ପଚିଶ ବର୍ଷ କାଳଧରି ଅହିଂସା ବାଟରେ ଚଳାଇବାର ଉଦ୍ୟମ କରିଛି, ସେ ଶକ୍ତି ସେ ସମୟ ବୃଥାରେ ନଷ୍ଟ ହୋଇଯିବ ବୋଲି ମାନିବାକୁ ହେବ । ଏ କଳ୍ପନା କରି ମୁଁ କଦାପି ନିଶ୍ଚିନ୍ତ ନିରାଳମ୍ବ ହୋଇ ରହିନପାରେ । ସେପରି ବିପଜ୍ଜନ ପରିସ୍ଥିତିକୁ ମୁଁ ଚୁପ୍‌ଚାପ୍ ହୋଇ କିପରି ଦେଖିପାରେ ।

ସ୍ୱାଧୀନ ଭାରତ ଗଢିବାରେ ରଜାମାନେ ଯଦି ତାଙ୍କର ନ୍ୟାର୍ଯ୍ୟ ଭାଗ ନେବାକୁ ଚାହାନ୍ତି ତେବେ ରାଜ୍ୟର ବିଧାନ ଆଇନରେ ଆବଶ୍ୟକୀୟ ହେର୍‌ଫେର୍ କରି ତାକୁ ଅନୁସରଣ କରିବାକୁ ହେବ । ଏକଥା ମୁଁ ଭିଟର ରଜାସାହେବଙ୍କୁ ସୂଚାଇ ଦେଇ ଥିଲି । ଜନସାଧାରଣଙ୍କ ସହିତ ସୁଖ ଓ ଶାନ୍ତିକୁ ଆଗରେ ରଖି ସେ ବିଧାନ ଆଇନଟି ପ୍ରଣୟନ କରା ଯାଇଥିଲା । ମୁଁ ତ ଏହି

ବିଧାନଠାରୁ ବଳିକରି ଆଉ ଏକ କଦମ ଆଗକୁ ବଢ଼ିଯାଇ କହିବାକୁ ଚାହେଁ ଯେ ରାଜାମାନଙ୍କର ନିଜନିଜର ଖର୍ଚ୍ଚ ସକାଶେ ଯେଉଁ ପରିମାଣର ଟଙ୍କା ଦିଆଯିବ, ତା ଉପରେ ମଧ୍ୟ ପ୍ରଜାଙ୍କର ହାତରହୁ । କିନ୍ତୁ ଏପରି କ୍ଷମତା ସ୍ୱାଭାବିକ ଭାବେ ଆସିବା ଉଚିତ । ଉପରଆଡ଼ୁ ତାହା ଲଦି ହେବନାହିଁ । ଆଉନ୍ଧର ବିଧାନକୁ କାର୍ଯ୍ୟରେ ପରିଣତ କରିବାରେ ଆଉନ୍ଧର ରାଜା ଯାହେବ, ତାଙ୍କ ପ୍ରଧାନ ମନ୍ତ୍ରୀ ଓ ରାଜ୍ୟର ଢେର ଉନ୍ନତି ହେଉଛି ବୋଲି କୁହାଯାଇପାରେ । ଗାନ୍ଧି ଏତିକିବେଳେ ନିଜର ବକ୍ତବ୍ୟ ଶେଷ କଲେ । ଶ୍ରୋତାମାନେ ନାନାଦି ପ୍ରଶ୍ନ ପଚାରିଲେ । ଆଲୋଚନା ଚାଲିଲା ।

୧ମ ପ୍ରଶ୍ନ—ଆମେ ଏକାଠି ନହେଲେ କୌଣସି ଗୋଟିଏ ଗଡ଼ଜାତ ତିଷ୍ଠି ପାରିବ ନାହିଁ । ମୋର ଏହିମତ ଏବଂ ସେଥିରେ ମୁଁ ଆପଣଙ୍କ ମତ ଲୋଡ଼ୁଛି । (ଜଣେ ପ୍ରଶ୍ନ କଲେ ।)

ଉତ୍ତର ଗାନ୍ଧିଜୀ ଜବାବ ଦେଲେ ସ ବିଷୟରେ ମୋ ରାୟକୁ ଅନ୍ୟ କେହି ନମାନନ୍ତୁ ପଛେ ମୁଁ ମୋର ଯୁକ୍ତି ଦେବାକୁ ପ୍ରସ୍ତୁତ ଅଛି । ବଡ ବଡ଼ ଗଡ଼ଜାତ କାହିଁକି ହିନ୍ଦୁସ୍ଥାନର ଛୋଟଗାଁଟି ମଧ୍ୟ ତିଷ୍ଠି ରହିବ । ଆପଣ ଯଦି ନିଜର ପ୍ରଜାସାଧାରଣଙ୍କର ଗୋଟିଏ ସେବକ ବନିଯାନ୍ତି, ତେବେ ଆପଣଙ୍କ ଗାଁ ଏବଂ ଆପଣ ନିଜେ ତିଷ୍ଠି ନ ପାରିବେ କାହିଁକି ? ଆଉନ୍ଧ ସବୁଠାରୁ ଗୋଟିଏ ଛୋଟ ରାଜ୍ୟ । ତେବେ ସୁଦ୍ଧା ତାଠାରୁ ବଳି ବଡ଼ ବଡ଼ ରାଜ୍ୟ ତୁଳନାରେ ସେ ଛୋଟଟି ସହଜରେ ତିଷ୍ଠିବ । ତିଷ୍ଠିବା ନ ତିଷ୍ଠିବା କଥା ଆପଣମାନଙ୍କ ନିଜ ନିଜ ଉପରେ ନିର୍ଭର କରୁଛି । ଆପଣଙ୍କ ପ୍ରଜାମାନେ କେବେଠାରୁ ହିନ୍ଦୁସ୍ଥାନରେ ଅନ୍ୟ ପ୍ରଜାଙ୍କ ସଙ୍ଗେ ମିଳି ଏକଜୁଟ ହୋଇ ସାରିଛନ୍ତି, ମୁଁ କି ପ୍ରକାରର ସ୍ୱରାଜ ଛବି ଟାଣିଛି, ତାହା ଆପଣମାନେ ହରିଜନରେ ମୋର ଗୋଟିଏ ପ୍ରବନ୍ଧରୁ ଦେଖି ପାରିବେ । ସେଥିରେ ଗ୍ରାମର ସମାଜଟି ରାଜ୍ୟ ବ୍ୟବସ୍ଥାର ୟୁଉନିଟ୍ (Unit) ଅର୍ଥାତ୍ ନ୍ୟୁନତମ ଅଙ୍ଗ ଅଟେ । ଗ୍ରାମ ୟୁନିଟକୁ ମୂଳଦୁଆ କରି ପୂର୍ଣ୍ଣ ସ୍ୱରାଜ୍ୟର ଉଚ୍ଚ ସୌଧଟିକୁ ଏପରି ଭାବେ ଠିଆ କରିବାକୁ ହେବ ଯେ ସେହି କୋଠାର ନିଅଁଭଳି ଚାଳିଶ କୋଟି ଲୋକଙ୍କର ଉପରେ ବୋଝ ଦାଉରେ ଦବିଯାଇ ଚୂନା ହୋଇ ନଯାନ୍ତି ।

ଆଉ ଜଣେ କୈଫିୟତ ଦେଇ କହିଲେ ଆମେ ତ ପୁଣି ଆମ ଲୋକଙ୍କୁ ତାଙ୍କର ବିଧାନ ଆଉନ୍ଧତିଆର କରିବାକୁ କହିଛି । ଆମେ ଯେଉଁ ଯୋଜନା ପ୍ରସ୍ତୁତ କରିଛୁ ସେଥିର ମତଲବ୍ ଏହି ଯେ ସେମାନେ ତାକୁ ସୂଚନା ରୂପେ ନେଇ ବିଚାର ଓ ଆଲୋଚନା କରିବେ । ଜବାବରେ ଗାନ୍ଧିଜୀ କହିଲେ ଆପଣମାନଙ୍କର

ଯେତେ ସଦିଚ୍ଛା ଥାଉ ପଛେ, ଯେପରି କହୁଛନ୍ତି, ସେପରି କରିବାକୁ ଆପଣମାନେ ଅକ୍ଷମ ହେବେ । ଆପଣମାନେ ଯଦି ନିଜର ଏହି ଯୋଜନାର ଭଲମନ୍ଦ ଉପରେ ଶତ ଶତ ଲୋକଙ୍କର ରାୟ ଲୋଡୁଛନ୍ତି, ତେବେ ଆପଣ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସଙ୍ଗେ ଭେଟ କରନ୍ତୁ । ଦେଶୀୟ ରାଜ୍ୟ ଲୋକ ପରିଷଦ ସଭାପତି ହିସାବରେ ସେ ମହାଶୟ ହିଁ ଏ ବିଷୟରେ ବିଚାର କରିପାରନ୍ତି । ନିଜର ପ୍ରସ୍ତାବ ଗୁଡ଼ିକ ନେଇ ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକପରିଷଦ ସାମନାରେ ରଖି-ବାରେ ଭୟ କରିବାର କୌଣସି କାରଣନାହିଁ । ଏହାର ଶେଷ ମିମାଂସାକୁ ଆପଣ ସେହି ପରିଷଦ ଉପରେ ଛାଡ଼ି ଦିଅନ୍ତୁ । ପରିଷଦର ପଲିସି ଅର୍ଥାତ୍ ନୀତିରେ କୌଣସି ପ୍ରକାରର ଦୋଷନାହିଁ । ବିଭିନ୍ନ ଦିଗରୁ ଭାବିଚିନ୍ତିକରି ସେ ନୀତି ସ୍ଥିର କରାଯାଇଅଛି । ଆପଣ ଯଦି ନିଜକୁ ପ୍ରଜାଙ୍କର ସେବକ ଆଉ ଟ୍ରଷ୍ଟି ବୋଲି ବୁଝୁଛନ୍ତି, ତେବେ ପରିଷଦର ନୀତି ଆପଙ୍କର ବିରୁଦ୍ଧାତ୍ମକ ନୁହେଁ । ପୁଣି ପ୍ରଶ୍ନ ହେଲା—ଆମେ ମାତୃଭୂମିର ସେବା କରିବା ସକାଶେ ଛଟପଟ ହେଉଛୁ । କିନ୍ତୁ ଆମ ରାଜ୍ୟଗୁଡ଼ିକ ଆୟତନରେ ଏତେ ଛୋଟ ଯେ ଆମେ ସମସ୍ତେ ମିଳି ଗୋଟିଏ ସଂଘ ନ ଗଢ଼ିଲେ ଆମେ ସେହି ସେବା କରିପାରିବୁ ନାହିଁ । ଗାନ୍ଧିଜୀ ଉତ୍ତର ଦେଲେ "ସ୍ୱାଧୀନ ଭାରତର ଯେଉଁ ଛବି ମୁଁ ତିଆର କରିଛି ସେଥିରେ ଆପଣ—ମାନଙ୍କର ଉପସ୍ଥିତ ସେବା ଅସମ୍ଭବ ନୁହେଁ । ସବୁଠାରେ ଆୟତନରେ ବଡ଼ ଯେଉଁ ସଂଘ ହୋଇପାରେ ତାହାର ଯେତେ ତାକତ ମୋର କଳ୍ପିତ ଗ୍ରାମର ସେତିକି ତାକତ୍ ହେବ । ମୋ ମନରେ ମୁଁ ଯେଉଁ ଗାଁଟି ଠିକ୍ କରିଛି, ସେଥିରେ ଏକହଜାର ପ୍ରାଣୀ ବାସ କରନ୍ତି । ସେପରି ଗାଁଟି ଯଦି ଭଲ ଭାବରେ ସଂଗଠିତ ହୋଇ ସ୍ୱୟଂ ସମ୍ପନ୍ନ ହୁଏ, ତେବେ ସବୁ କ୍ଷେତ୍ରରେ ନିଜକୁ ରକ୍ଷା କରିପାରିବ ଏବଂ ଆହୁରି ବହୁତ କିଛି କରିପାରିବ । ଅତଏବ ମନରେ ଆଶଙ୍କା ରଖନ୍ତୁ ନାହିଁ ଯେ ଗୋଟିଏ ବଡ଼ ସଂଘ ନଗଢ଼ିଲେ ଆପଣ ନିଜକୁ ରକ୍ଷା କରି-ପାରିବେ ନାହିଁ କିମ୍ବା ମାତୃଭୂମିର ସେବା କରିପାରିବେ ନାହିଁ । ଆପଣ ସମସ୍ତଙ୍କର ନାହିଁ । ଆପଣ ସମସ୍ତଙ୍କର ରାୟ ଯଦି ଏକହୁଏ ଏବଂ ଆପଣ ଯଦି ଲୋକଙ୍କର ସ୍ୱାର୍ଥକୁ ସର୍ବପ୍ରଥମେ ରଖି ନିଜର ସ୍ୱାର୍ଥକୁ ସର୍ବଶେଷରେ ରଖନ୍ତି, ତେବେ ସେହି ପ୍ରଜାରାଜାଙ୍କର ସମ୍ମେଳନ ଆପଣଙ୍କ ପ୍ରସ୍ତାବିତ ସଂଘଅପେକ୍ଷା ଶତଗୁଣରେ ତାକତ-ବାଲା ସାବିତ ହେବ ।

—O—

# ଗାଁର ଗଣତନ୍ତ୍ର ଶାସନ

ପ୍ରଶ୍ନ—ଯଦି ଗଡ଼ଜାତ ସବୁ ପହିଲି କରି ଗାଁରେ ଲୋକ ପ୍ରତିନିଧି ମୂଳକ ଶାସନ କାଏମ କରନ୍ତି ଏବଂ ସେ ମୂଳଦୁଆ ଉପରେ ନିଜର ସଙ୍ଗଠନ କରି ପରେ ସଂଘ ଗଢ଼ନ୍ତି, ତେବେ ଏଥିରେ ଆପଣଙ୍କର କ'ଣ କରିବାର ଅଛି ?

ଉତ୍ତର—ଯାଠାରୁ ବଳି ଭୁଲ କଥା ଆଉ କଣ ହୋଇପାରେ । କିନ୍ତୁ ଆପଣମାନେ ଆଜିକାର ଭାଷାରେ କଥା କହିବେ ନାହିଁକି, ଆଜିକାର ଢଙ୍ଗରେ କାମ କରିବେ ନାହିଁ ।

ପ୍ରଶ୍ନ—କିନ୍ତୁ ଏପରି କରିବାକୁ ଗଲେ ଦୀର୍ଘକାଳ ବିତିଯିବ ଏବଂ ଗଡ଼ଜାତ ବାହାରର ଲୋକେ ସୁର ନକରିବା ପର୍ଯ୍ୟନ୍ତ ଆମଲୋକ ଏଥିରେ ମନ ଦେବେ ନାହିଁ ।

ଜବାବ-ମୁଁ ପହିଲାରୁ କହିଛିଯେ ଯଦି ରାଜାମାନେ ନିଜନିଜ ରାଜ୍ୟରେ ଠିକ୍ ନମୁନା ଖାଡ଼ା କରିଦିଅନ୍ତି, ତେବେ ସେମାନେ ହିନ୍ଦୁସ୍ଥାନରେ ଭବିଷ୍ୟତରେ ସ୍ୱରାଜ୍ୟ ଆଣିବା ଦିଗରେ ସବୁଠାରୁ ବଡ଼ିଆ ସହଯୋଗ ଦେଇପାରିବେ । ଗଡ଼ଜାତମାନଙ୍କରେ ଏକ ପ୍ରକାରର ଲୋକ ବାସ କରନ୍ତି । ଅତଏବ ସେମାନଙ୍କୁ ନେଇ ଗୋଟିଏ ଗୋଟିଏ ୟୁନିଟ୍ ଗଢ଼ି ହେବ ଏବଂ ରାଜୁଡ଼ାମାନେ ଭିନ୍ନ ଭିନ୍ନ ରୂପରେ ନିଜ ନିଜ ରାଜ୍ୟର ଶାସନ କାର୍ଯ୍ୟ ଅଲଗା ଅଲଗା ପ୍ରୟୋଗ କରିପାରନ୍ତି । କିନ୍ତୁ ଆଜି ହେଉଛି କଣ ? ଆଜିତ ରାଜାମାନେ ବ୍ରିଟିଶ ଶାସନ ପ୍ରଣାଳୀର କେବଳ କୁ ପ୍ରଥାଗୁଡ଼ିକର ଅନୁସରଣ କରିବାରେ ଆଗୁଆ ହୋଇଛନ୍ତି । ଗୁଣ୍ଡା, ଅସହାୟ ପ୍ରଜାଙ୍କଠାରୁ ଜବରଦସ୍ତି ପଇସା ଅସୁଲ କରିବାରେ ଆପଣମାନଙ୍କ ମନ୍ତ୍ରୀମାନଙ୍କର ଯୋଗ୍ୟତାର ଶେଷ ସୀମା ଦେଖାଯାଏ, ପୁଣି ସେହି ପ୍ରଧାନମନ୍ତ୍ରୀଙ୍କ ଇସାରାରେ ନାଚୁଛନ୍ତି । ଆପଣଙ୍କର ଏହି ଦିବାନମାନେ ଯେଉଁ ପରମ୍ପରାରେ ତାଲିମ ହୋଇ ତିଆରି ହୋଇଛନ୍ତି, ତାହା ତାଙ୍କୁ ଏପରି ଭାବରେ ଲାୟକ କରି ନାହିଁ ଯେ, ଆପଣ ସମ୍ପି ଦେଇଥିବା କାର୍ଯ୍ୟଗୁଡ଼ିକୁ ସେମାନେ ଠିକ୍ ଠିକ୍

ଭାବରେ ସମନ୍ନ କରି ଦେଇପାରିବେ । ଏଇଥିପାଇଁ ମୁଁ ଆପଣଙ୍କୁ ଉପଦେଶ ଦେବି । ଆପଣମାନେ ଯଦି ସତକୁ ସତ କିଛି କରିବାକୁ ଚାହୁଁଛନ୍ତି, ତେବେ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଆପଣମାନଙ୍କର ପ୍ରଧାନମନ୍ତ୍ରୀ ବନାନ୍ତୁ । ଆପଣମାନଙ୍କ କହିବା କାମଦାମ ରୂପରେଖ କେବଳ ସେହି ବତାଇବେ । ଏହା ସ୍ୱାଭାବିକ କଥା ଯେ ସେ ପ୍ରଜାମାନଙ୍କର ପରାମର୍ଶ ନ ନେଇ ରହିପାରିବେ ନାହିଁ ।

ପ୍ରଶ୍ନ–ଆମ୍ଭେମାନେ ଆମ୍ଭର ସଂଘ ବନେଇବାକୁ ଚାହୁଁଅଛୁ । ସେଥିରେ ଗୋଟିଏ ମାତ୍ର କାରଣ ଏହି ଯେ ଏଥିରେ ଆମ ପ୍ରଜାଙ୍କୁ ତୁରନ୍ତ ସ୍ୱାଧୀନତା ମିଳି ଯାଉ । ଆଉ ଶାସନ ବିଧାୟକ ସଭାରେ ତ ଅନେକ ଦିନ ଲାଗିଯିବ । ଅତଏବ ସେ କାମ ପୂରା ହେବା ପର୍ଯ୍ୟନ୍ତ ସ୍ୱାଧୀନତା ପକାଶେ ଅନାଇବାକୁ ନପଡୁ ।

ଜବାବ-ଏ କାମଟି କରିବା ପକାଶେ ଆପଣମାନେ ଓଲଟା ବାଟ ଧରୁଛନ୍ତି । ଆପଣଙ୍କର ଅନ୍ତର ଯଦି ନିଜ ପ୍ରଜାଙ୍କର ମଙ୍ଗଳ ବାଞ୍ଛା କରୁଛି, ଆଉ ତାଙ୍କର ଜନ୍ମଗତ ଅଧିକାର ତାଙ୍କୁ ଦେଇ ଦେବାକୁ ଚାହୁଁଛି, ତେବେ ସିଧାସଳଖ ଭାବରେ ତାଙ୍କୁ ପୂରାପୁରି ସ୍ୱାଧୀନତା ଦେଇ ଦିଅନ୍ତୁ । ଆପଣ ଏତକ କରି ସାରିଲା ବେଳକୁ ବିଧାନ ସଭାର କାର୍ଯ୍ୟ ମଧ୍ୟ ସରିଯାଇଥିବ । ସେ ସଭା ଯେଉଁ ବିଧାନ ବା ଆଇନ ତିଆରି କରିବ, ତାହା କେବଳ ବ୍ରିଟିଶ ଭାରତ ପାଇଁ ନୁହେଁ, ବରଂଚ ସାରା ହିନ୍ଦୁସ୍ଥାନ ପାଇଁ ହେବ । ଗଡ଼ଜାତମାନଙ୍କ ପାଇଁ ଗୋଟିଏ କିମ୍ବା ତତୋଧିକ ସଂଘଗଢ଼ିବା ଯଦି ଠିକ୍ ବୁଝାଯିବ, ତେବେ ସେ ଆଇନରେ ବିଧିବଦ୍ଧ ଭାବରେ ସେପରି ସ୍ଥାନ ରଖାଯିବ । ଆପଣ ଦାକ୍ଷିଣାତ୍ୟ ରାଜାମାନେ ପହିଲୁ ଅଲଗା ସଂଘ କାଏମ ରଖିବାଦ୍ୱାରା ବିଧାନ ସଭାର କାମକୁ ନିଜ ମଥାରେ ବୋଝେଇ ନେଉଛନ୍ତି । କିନ୍ତୁ ତା ପରିବର୍ତ୍ତରେ ଏହା ଭଲ ହେବ ଯେ ଆପଣମାନେ ଆଇନ ତିଆରି କରିବା କାମରେ ଶାସନ ବିଧାୟକ ସଭାକୁ ସାହାଯ୍ୟ କରନ୍ତୁ । ନିଜନିଜ ରାଜ୍ୟରେ ବ୍ୟକ୍ତିଗତ ଭାବରେ କାମ ଆରମ୍ଭ କରନ୍ତୁ ଏବଂ ଆପଣମାନେ କେବେହେଲେ ଭୁଲ କରିବେ ନାହିଁ ।

ପ୍ରଶ୍ନ–ତାତ୍ୟା ସାହେବ ନିଂ ଚିଂ କେଲ୍‌କର ପଚାରିଲେ ଏଇ ସଂଘ ସମ୍ପର୍କରେ ଆପଣଙ୍କର ସନ୍ଦେହଜାତ ହୋଇଛି ବୋଲି କଣ ଆପଣ ଏହାର ବିରୋଧତ କରୁ ନାହାନ୍ତି କି ?

ଗାନ୍ଧିଜୀ କହିଲେ, "ମୁଁ ଏ ବିଷୟକୁ ନେଇ ମୋ କଥା ଆରମ୍ଭ କରିଥିଲି । କିନ୍ତୁ ସେ ସନ୍ଦେହ କାରଣରୁ ହିଁ ଯେ ସଂଘର ବିରୋଧ କରୁଛି ତା

ନୁହେ । ଆପଣଙ୍କ ମଧ୍ୟରୁ କୌଣସି ଅ:ବ· କିମ୍ବା ସ: ବ୍ୟକ୍ତି ଉପରେ ମୋର ସନ୍ଦେହ ନାହିଁ । ଆଜିର ପନ୍ଥା ଏବଂ ପରିସ୍ଥିତି ଉପରେ ମୋର ସନ୍ଦେହ ହେଉଛି । ଆପଣ ଯେଉଁ ବିପଦ ଓ ଲୋକସାନି ଆଡ଼କୁ ଆଗେଇ ଚାଲିଛନ୍ତି, ସେଥିପ୍ରତି ଆପଣଙ୍କର ଧ୍ୟାନ ନାହିଁ । ସେଥିଯୋଗୁଁ ମୁଁ ଆପଣଙ୍କୁ ଏହି ଉପଦେଶ ଦେଉଛି ଯେ ଏ କାମରେ ଧୀରେ ଧୀରେ ଆଗକୁ ବଢ଼ନ୍ତୁ ।

ପ୍ରଶ୍ନ—ଆପଣ ଯଦି ନିଜର ଯୁକ୍ତିରେ ଆହୁରି ଅଗ୍ରସର ହୁଅନ୍ତି, ତେବେ କଣ ବ୍ରିଟିଶ ହିନ୍ଦୁସ୍ଥାନର ପ୍ରଦେଶ ଗୁଡ଼ିକର ଜିଲ୍ଲା ଅବା ତାଲୁକ ପ୍ରତି ସେହିକଥା ଲାଗୁ ହେବନାହିଁକି ? ସେଗୁଡ଼ିକର ଗଢ଼ଣଗୁଡ଼ିକ ଭାଙ୍ଗି ଦେବା ପକାଶେ ଆପଣ କିଆଁ କହୁ ନାହାନ୍ତି ?

ଗାନ୍ଧିଜୀ ଜବାବ ଦେଲେ, "ପହିଲୁ ଯାହା କିଛି ରହିଛି ତାକୁ ଭାଙ୍ଗି-ଦେବା ମୁଁ ଆପଣଙ୍କୁ କହୁନାହିଁ । ବ୍ରିଟିଶ ହିନ୍ଦୁସ୍ଥାନରେ ଯେପରି ଶାସନ ଚଳାଉଛି, ସେଥିପ୍ରତି ମୋର କୌଣସି ଖାସ ପ୍ରେମ ବି ନାହିଁ । ଇତିହାସରୁ ଦେଖାଯାଏ ଯେ ବ୍ରିଟିଶ ହିନ୍ଦୁସ୍ଥାନର ସାରା ଗଠନଟିକୁ କେବଳ ଖଣ୍ଡଣା ଏକାଠି କରିବାରେ ସୁବିଧା ଦେବ ବୋଲି ଖାଡ଼ା କରାଯାଇଥିଲା । ଆପଣ ଯଦି ଏହି ଜାଲରେ ପଡ଼ିଯିବେ, ତେବେ ଆପଣ ବଡ଼ଲୋକ ସ୍ଥାନରେ ପଡ଼ିବେ । ମୁଁ ବର୍ତ୍ତମାନ କେବଳ ଏଇତକ ମାତ୍ର କହୁଛିଯେ ଗଡ଼ଜାତ ମାନଙ୍କର ସଂଘ ଗଢ଼ିବା ଭଳି କୌଣସି କାମ ଏକ୍ଷଣି ନ କରନ୍ତୁ । ବିଧାନ ସଭା ଉପରେ ଏ କାମଟି ଛାଡ଼ି ଦିଅନ୍ତୁ । ଜଣେ କବି ସଂସ୍କୃତରେ କହିଛନ୍ତି—

"ଅନାରମ୍ଭୋହି କାର୍ଯାଣାଂ ପ୍ରଥମଂ ବୁଦ୍ଧି ଲକ୍ଷଣ ମ୍"

ନୂଆ ନୂଆ କାମକୁ ତରବରିଆ କରି ଆରମ୍ଭ ନ କରିବା ହିଁ ବିବେକର ପ୍ରମାଣ ମିଳେ ।

ରାଜାମାନେ କୌଣସି କଥାକୁ ଭ୍ରୂକ୍ଷେପ ନ କରି ଯେତେବେଳେ ଲୋକଙ୍କ ପକ୍ଷରୁ ଯେଉଁ ପ୍ରସ୍ତାବ ଆସିଲା, ତାକୁ ବିଚାର ଶୂନ୍ୟ ଭାବରେ ପ୍ରତ୍ୟାଖ୍ୟାନ କରୁ-ଥିବାରୁ ଅଞ୍ଚଳ କାଉନସିଲ୍‌ର ସଭାପତି ଶ୍ରୀ ସାରଙ୍ଗଧର ଦାସ ତା ୩—୧ —୪୬ରେ ଏ ସମ୍ପର୍କରେ ସାଧାରଣରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଇସ୍ତାହାର ପ୍ରକାଶ କରିଥିଲେ ଐତିହାସି ଗୁରୁତ୍ୱ ଦୃଷ୍ଟିରୁ ତାହା ଏଠାରେ ପ୍ରମାଣ କରାଗଲା ।

ଏଡ଼ିଶା ଗଡ଼ଜାତ ଓ ଓଡ଼ିଶା ପ୍ରଦେଶର ଲୋକେ ଏକ ଭାଷାଭାଷୀ । ତାଙ୍କର ସଂସ୍କୃତି ଓ ପରମ୍ପରା ଏକ । ଅତଏବ ଭାରତର ଭବିଷ୍ୟତ ଶାସନ ନିୟନ୍ତ୍ରଣ ବେଳେ ଏହି ଦୁଇ ଅଞ୍ଚଳକୁ ଏକ ଶାସନାଧୀନରେ ରଖିବା ଉଦ୍ଦେଶ୍ୟରେ

ଯେଉଁ ଉଦାରପୂର୍ଣ୍ଣ ଯୋଜନାଟି କରଯାଇଥିଲା, ତାକୁ ରାଜାମାନେ ବିନା କଥା–ବାର୍ତ୍ତାରେ ନାମଞ୍ଜୁର କରିଦେଲେ ରାଜନୀତିକ ବିଭାଗ କଥାରେ ପଡ଼ି ନିଜକୁ ଯେଉଁଳି ହାତବାରିସୀ ସ୍ୱରୂପ ପରିଣତ କଲେ ସେଥିରେ ତାଙ୍କର ବୁଦ୍ଧିମତ୍ତା ଓଦୂରଦୃଷ୍ଟି ଅଭାବର ପରିଚୟ ମିଳୁଛି । ତାକୁ ଆଲୋଚନା କଲାବେଳେ ବଡ଼ ଦୁଃଖ ହେଉଛି । ଏପରି ବିପପ୍ଣାର କାରଣ ଅଖିଳ ଭାରତ ଦେଶୀୟରାଜ୍ୟ ଲୋକ ପରିଷଦ ଯେଉଁ ନୀତି ଘୋଷଣା କରିଛନ୍ତି ତଦନୁସାରେ ୨୦ଲକ୍ଷ ଲୋକ ସଂଖ୍ୟାରୁ କମ୍ କିମ୍ବା ୫୦ ଲକ୍ଷ ଟଙ୍କା ଆୟରୁ କମ୍ ଥିବା ଗଡ଼ଜାତଗୁଡ଼ିକୁ ନିକଟବର୍ତ୍ତୀ ପ୍ରଦେଶ ସହିତ ମିଶାଇ ଦେବାର କଥା । ଆମ ରାଜାମାନେ ଆତଙ୍କର ପୂର୍ଣ୍ଣ ଯେଉଁ ଯୋଜନାଟି କରିଛନ୍ତି, ତାହା ସେହି ନୀତିର ତୀବ୍ର ବିରୋଧ ମାତ୍ର ଏବଂ ଉପରୋକ୍ତ ପ୍ରତିକ୍ରିୟାଶୀଳ ବିଭାଗର ନୀତି । ଲୋକଙ୍କର ଏବଂ ଦେଶର ମଙ୍ଗଳ ପ୍ରକାଶେ ଆମ୍ଭେ ଯାହା କରିବା ସେ ତାହାର ଓଲଟାବାଟ ଦେଖାଇବ । ପ୍ରାୟ ୪୦ଟି ସାଆନ୍ତିଆ ଏକଛତ୍ର ଶାସନକୁ ଏକାଠି କରି ଗୋଟିଏ ବୃହତ୍ତର ଏକଛତ୍ର ଶାସନ ପ୍ରତିଷ୍ଠା କରିବା ଏବଂ ଭାରତର ସର୍ବସାଧାରଣ ଲୋକେ ନିଖୁଣ ଓ ଟାଣୁଆ ମୂଳଦୂଆ ଉପରେ ଭବିଷ୍ୟତର ସ୍ୱାଧୀନତା ଓ ସମ୍ମିଳିତ ରାଷ୍ଟ୍ର ଗଢ଼ିବାର ଇଚ୍ଛା ପ୍ରକାଶ କରୁଛନ୍ତି । ସେହି ଇଚ୍ଛାକୁ ମୂଳପୋଛ କରିଦେବା ଉଦ୍ଦେଶ୍ୟରେ ଏହା ଏକ ଚାଲବାଜୀ ମାତ୍ର । ଆମର ଏ ଛୋଟ ଛୋଟ ରାଜାମାନେ ସମ୍ପ୍ରତି ଅଖଣ୍ଡ ଭାରତ ଏବଂ ଭାରତର ସ୍ୱାଧୀନତା କଥା ଧରି ବଖାଣୁଛନ୍ତି । କିନ୍ତୁ ବାସ୍ତବରେ ସେମାନେ ଗୃହ ବିବାଦର ବୀଜ ବୁଣୁଛନ୍ତି । ଏଭଳି ରାଜଗୋଷ୍ଠୀଙ୍କୁ କଣ କହିବା !

୧୮୧୪ ମସିହାରେ ନେପୋଲିଅନଙ୍କ ପରାଜୟ ପରେ ଭିଏନା ସହରରେ ଯେଉଁ କଂଗ୍ରେସ ବସିଥିଲା ସେଥିରେ ଅଷ୍ଟ୍ରିଆ ଦେଶର ମେଟାର୍ନିକ୍, ଫ୍ରାନ୍ସର ଟାଁଲେରାଁ ଏବଂ ଇଂଲଣ୍ଡର କାସ୍ଲରେ, ୟୁରୋପର ୩୯ଟି ପରସ୍ପର ବିରୋଧୀ ରାଜ୍ୟକୁ ଜବରଦସ୍ତି ଏକାଠି କରି ଯେଉଁ ମିଳିତ ରାଷ୍ଟ୍ରସଂଘ ଗଢ଼ିଥିଲେ, ପୃଥିବୀ ଇତିହାସରେ ସେହିଟିକୁ ମାତ୍ର ଆମ ରାଜାଙ୍କର ଏହି ଯୋଜନା ସଙ୍ଗେ ତୁଳନା କରଯାଇ ପାରେ । ବିଲାତର ଫିସର ସାହେବ ତାଙ୍କ ୟୁରୋପର ଇତିହାସ ଗ୍ରନ୍ଥରେ କହିଛନ୍ତି ଯେ ଏହି କୁଟନୀତି ବିଶାରଦ ୩ଜଣଙ୍କ ଗ୍ଧଳନାରେ ଏଡ଼ି ଉପରୋକ୍ତ କଂଗ୍ରେସ ସିଦ୍ଧାନ୍ତ କଲେ ଯେ ସଂପୃକ୍ତ ଜାତିମାନଙ୍କର ତଥାକଥିତ ଇଚ୍ଛା ଓ ଆକାଂକ୍ଷାକୁ ପୂରଣ କରିବା ଦ୍ୱାରା ୟୁରୋପରେ ସୁଖଶାନ୍ତି ପ୍ରତିଷ୍ଠିତ ହୋଇପାରିବ ନାହିଁ । କିନ୍ତୁ ଆଇନସଙ୍ଗତ କର୍ତ୍ତୃତ୍ୱର ଅର୍ଥାତ ରାଜବଂଶଗୁଡ଼ିକର ପୁରୁଷାନୁକ୍ରମଗତ ଯେଉଁ ସ୍ରୋତ ଆଇନାନୁମୋଦିତ ହୋଇ ରହିଅଛି, ତାହା ପୁଙ୍ଖାନୁପୁଙ୍ଖ ରୂପେ ପାଳନ ଦ୍ୱାରାହିଁ ସୁଖଶାନ୍ତି ବିରାଜିବ । ଆମ ଭାରତୀୟ ଲୋକଙ୍କର ସ୍ୱଭାବ ଏହିଯେ ଆମ ରାଜାଙ୍କର ଯୋଜନାଟିକୁ ୟୁରୋପୀୟ ରାଷ୍ଟ୍ରସଂଘ ପରି ୫୦ବର୍ଷ ପର୍ଯ୍ୟନ୍ତ ଦୁଃଖ, କଷ୍ଟ ଓ ଅଶାନ୍ତି ଭୋଗିବାକୁ ପଡ଼ିବ ନାହିଁ । ଅପରନ୍ତୁ ଭାରତୀୟ ସର୍ବସାଧାରଣ

ଲୋକ ଆମ ଦେଶର ପ୍ରତ୍ୟେକ ଅଞ୍ଚଳରେ ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ଯେଉଁ ଦୃଢ଼ପ୍ରତିଜ୍ଞା କରିଛନ୍ତି, ଶାସନ ବିଧାୟକ ସଭା ତାର ପ୍ରତୀକ । ଜର୍ମାନର ବିଖ୍ୟାତ ଶାସକ ବିସ୍‌ମାର୍କ ଉପରୋକ୍ତ ୟୁରୋପୀୟ ରାଷ୍ଟ୍ରସଂଘକୁ ଚୂରମାର୍ କରିଦେଇ ଥିଲେ । ଆମ ରାଜାଙ୍କର ରାଷ୍ଟ୍ରସଂଘ ସେହିପରି ଆମ ଶାସନ ବିଧାୟକ ସଭାରେ ଅତି ଉଚ୍ଚ ପାହ୍ୟାର ବିସ୍‌ମାର୍କଙ୍କୁ ଶୀଘ୍ର ଭେଟିବ ।

ଗଡ଼ଜାତ ଲୋକଙ୍କର କୌଣସି ମତ ଲୋଡ଼ା ଯାଇନାହିଁ । ଏହା ଜଣାଶୁଣା କଥା ଯେ ରାଜାମାନଙ୍କର ପ୍ରସ୍ତାବିତ ରାଷ୍ଟ୍ରସଂଘ ଲୋକମତର ବିରୋଧ କରୁଛି । ଅତଏବ ଦେଶ ବାହାର ଶକ୍ତି (ଅର୍ଥାତ୍ ରାଜନୀତିକ ବିଭାଗ) ଆମ ଲୋକମାନଙ୍କ କାନ୍ଧରେ ଏହି ଯେଉଁ ଯୌଥଟି ଲଦି ଦେଉଛନ୍ତି ସେମାନେ ତାକୁ ସ୍ୱୀକାର କରି ନ ପାରନ୍ତି । ଅଖିଳଭାରତ ଦେଶୀୟ ରାଜ୍ୟ ଲୋକ ପରିଷଦର ସର୍ବବାଦି ସମ୍ମତ ନୀତିକୁ ଗ୍ରହଣ କରି ଆମ ଗଡ଼ଜାତର ଲୋକେ ଦୃଢ଼ଭାବରେ ଠିଆ ହେଉଛନ୍ତି । କେବଳ ୫୦ଜଣ ବ୍ୟକ୍ତି ବିଶେଷ [ରାଜାମାନେ] ଯେ ସାର୍ବଭୌମ କ୍ଷମତାର ଅଧିକାରୀ ନୁହନ୍ତି । ଅପରନ୍ତୁ ଜନସାଧାରଣହିଁ ସେହି ସାର୍ବଭୌମ କ୍ଷମତାର ଅଧିକାରୀ ଏକଥାକୁ ସବୁପକ୍ଷ ନମାନିବା ପର୍ଯ୍ୟନ୍ତ ଗଡ଼ଜାତ ଲୋକେ ତାଙ୍କ ଲଢ଼େଇକୁ ଚାଲୁ ରଖିବେ । ମୁଁ ରାଜାମାନଙ୍କୁ ସାବଧାନ କରି ଦେଉଛି ଯେ ଏପରି ଲଢ଼େଇରେ ତାଙ୍କର ଅତି ନଗଣ୍ୟ ତଥାକଥିତ ରାଜବଂଶ ଗୁଡ଼ିକ ୟୁରୋପର ବିଭିନ୍ନ ସାମନ୍ତସାହି ବଂଶ ସମୂହ ପରି ଲୋପ ପାଇଯିବ । ଯେଉଁ ବ୍ରିଟିଶ ଶକ୍ତି ତାର ନିଜ ସ୍ୱାର୍ଥ ଉଦ୍ଦେଶ୍ୟରେ ଏହି ଗଡ଼ଜାତଗୁଡ଼ିକୁ ସୃଷ୍ଟି କରିଥିଲେ ସେ ଶକ୍ତି ଯେତେବେଳେ ଏ ପୃଷ୍ଠଭୂମିରୁ ଅପସରି ଯିବେ, ସେତେବେଳେ ଏହି ଛୋଟ ଛୋଟ ମାହାଲଗୁଡ଼ିକ ତାଙ୍କର ମାନଧାତା ଅମଳିଆ ପାଆନ୍ତିଆ ଶାସନକୁ ନିର୍ବିଘ୍ନରେ ଅକ୍ଷୁର୍ଣ୍ଣ ରଖିପାରିବେ ଏକଥା ଯଦି କେହି ଭାବୁଥାନ୍ତି ତେବେ ସେ ନିଶ୍ଚୟ ନିର୍ବୁଦ୍ଧିଆଙ୍କ କଳ୍ପିତ ସ୍ୱର୍ଗ ଧାମରେ ବାସ କରୁଅଛନ୍ତି ବୋଲି କହିବାକୁ ହେବ ।

ତଥାପି ରାଜାଙ୍କର ନିଜ ସ୍ୱାର୍ଥ ଦୃଷ୍ଟିରୁ ପ୍ରସ୍ତାବିତ ରାଷ୍ଟ୍ରସଂଘର ବଳ ଓ ସ୍ଥାୟିତ୍ୱ ପ୍ରତି ଧ୍ୟାନ ଦିଆଯାଉ । ପାଆନ୍ତିଆ ନୀତି ଏହାର ମୂଳଭିତ୍ତି ଏବଂ ଚାରିପାଖେ ଖୁବ୍ ଶକ୍ତିଶାଳୀ ଗଣତନ୍ତ୍ର ଚାଳିତ ପ୍ରଦେଶମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଏହାରହିବ । ସେପରି ଅବସ୍ଥାରେ ଯାତାୟତର ସୁବିଧା,ବେପାରବାଣିଜ୍ୟ, ଶିକ୍ଷା, ସାଧାରଣ ସ୍ୱାସ୍ଥ୍ୟ, ଶିଳ୍ପ, କୃଷି ପରିଚାଳନା, ଅଭ୍ୟନ୍ତରୀଣ ଶାନ୍ତିରକ୍ଷା ଇତ୍ୟାଦି କୌଣସି ବିଷୟରେ ଏହି ରାଷ୍ଟ୍ର ସଂଘ ସ୍ୱୟଂ ସମ୍ପନ୍ନ ହୋଇ ନପାରେ । ମୁଁ ସ୍ପଷ୍ଟ ଭାବେ ଦେଖିପାରୁଛି ଯେ ଭବିଷ୍ୟତରେ ଏହି ପରିସ୍ଥିତି ଉପୁଜିବ ଯେତେବେଳେ ପ୍ରଦେଶର ଲୋକେ ସରକାର ଉପରେ ଚାପ ଦେବେ ଯେ ସେମାନେ ଏହି ରାଷ୍ଟ୍ର ସଂଘ ବିରୁଦ୍ଧରେ ବାଣିଜ୍ୟ ଲଢ଼େଇ ଘୋଷଣା କରନ୍ତୁ । ସଂଘର ବିପଣୀ ଉପରେ

ଶୁଳ୍କ ବସାଇ ସେ ପଣ୍ୟର ଆମଦାନୀ ବନ୍ଦ କରି ଦିଅନ୍ତୁ । ରାଷ୍ଟ୍ର ସଂଘରେ ସ୍ୱାସ୍ଥ୍ୟରକ୍ଷା ସକାଶେ କୌଣସି ପ୍ରକାର ସାଧନ ନଥିବା ହେତୁ ସେ ଅଞ୍ଚଳରୁ ସ୍ୱାସ୍ଥ୍ୟରକ୍ଷା ସାଧନ ସମ୍ପନ୍ନ ପ୍ରଦେଶମାନଙ୍କ ଭିତରକୁ ସଂକ୍ରାମକ, ମହାମାରି ମାଡ଼ି ଆସିବା ବନ୍ଦ କରିବା ଉଦ୍ଦେଶ୍ୟରେ ସୀମା ଅବରୋଧ ହୁକୁମ କରନ୍ତୁ ଏବଂ ସବୁଠାରୁ ବଳି ଏହି କଥା କରନ୍ତୁ ଯେ ଗଡ଼ଜାତ ଲୋକେ ତାଙ୍କର ନ୍ୟାୟ ସଙ୍ଗତ ବିଦ୍ରୋହ କଲାବେଳେ ତାକୁ ଦମନ କରିବା ସକାଶେ ରାଷ୍ଟ୍ରସଂଘ ଯେତେବେଳେ ଫଉଜ ସାହାଯ୍ୟ ଲୋଡ଼ିବେ ତାହା ନାମଞ୍ଜୁର କରନ୍ତୁ ଏବଂ ରାଷ୍ଟ୍ରସଂଘର ଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ତାଙ୍କ ନିଜର ଫଉଜ ଗଲାବେଳେ ତାଙ୍କୁ ବାଟ ନଛାଡ଼ନ୍ତୁ । ଆହୁରି ଅନେକ ପରିସ୍ଥିତି ମୁଁ ଦେଖିପାରୁଛି ଯେ ପ୍ରଦେଶମାନଙ୍କରେ ରହିଥିବା ଉଚ୍ଚ ଓ ଉନ୍ନତତର ଶିଳ୍ପ କାରଖାନା ବହୁଳ କେନ୍ଦ୍ରମାନଙ୍କରେ ଗଡ଼ଜାତ ଲୋକେ ଯେପରି ଖାଦ୍ୟ ଓ କଞ୍ଚାମାଲ ସ୍ୱେଚ୍ଛ ଆଣି ବିକ୍ରୀ କରିପାରିବେ ତାହାର ସବୁ ବନ୍ଦୋବସ୍ତ ପ୍ରଦେଶର ଲୋକମାନେ କରିଦେବେ । କାରଣ ଗଡ଼ଜାତର ଏକ-ଚାଟିଆ ବେପାରୀମାନେ ପଣ୍ୟଦ୍ରବ୍ୟ ବିନିମୟରେ ଯେଉଁ ଦାମ ଯାଚିବେ ପ୍ରଦେଶର ସୁପରିଚାଳିତ ଓ ଚିପିଟାଣିଆ ଶିଳ୍ପ ସଂସ୍ଥା ସବୁ ତା ଅପେକ୍ଷା ଢେର ବେଶୀ ଦାମ ଦେଇପାରିବେ । ଏସବୁ ଦୃଷ୍ଟିରୁ ମୋଟାମୋଟି ଏଇଆ କୁହାଯିବ ଯେ ଆମର ରାଜାମାନେ ଏ ଯେଉଁ ଯୋଜନାରେ ରାଜି ହୋଇଛନ୍ତି, ତାହା ଅତୀବ ବିପଦ ସଙ୍କୁଳ ଏବଂ ବେଳ ଥାଉଁ ଥାଉଁ ମୁଁ ସେମାନଙ୍କୁ ତାଗିଦ୍ କରି ଦେଉଛି ଯେ ରାଜନୀତିକ ବିଭ୍ରାଟ ଦ୍ୱାରା ଖଞ୍ଜା ଯାଇଥିବା ଏହି ଯନ୍ତାରେ ନପଡ଼ନ୍ତୁ । ପରନ୍ତୁ ପ୍ରତ୍ୟେକ ରାଜା ତାଙ୍କ ରାଜ୍ୟରେ ପୂର୍ଣ୍ଣ ନାଗରିକ ସ୍ୱାଧୀନତା ଓ ପୂର୍ଣ୍ଣ ଦାୟିତ୍ୱ-ମୂଳକ ଶାସନ ତୁରନ୍ତ ପ୍ରତିଷ୍ଠା କରନ୍ତୁ । କାରଣ ଲୋକ ସାଧାରଣହିଁ ତାଙ୍କ ନିଜର ଏକମାତ୍ର ଭାଗ୍ୟ ନିର୍ଣ୍ଣାୟକ ।

ମୁଁ ଛତିଶଗଡ଼ ଓ ଓଡ଼ିଶା ଗଡ଼ଜାତର ଲୋକଙ୍କୁ ମଧ୍ୟ ଆହ୍ୱାନ କରୁଛି ଯେ ସେମାନେ ତାଙ୍କର ନିଜ ନିଜର ପ୍ରଜାମଣ୍ଡଳମାନ ଗଢ଼ନ୍ତୁ ଏବଂ ତଦ୍ୱାରା ଅଖିଳ ଭାରତ ଦେଶୀୟ ରାଜ୍ୟର ଲୋକ ପରିଷଦକୁ ଆହୁରି ଶକ୍ତିଶାଳୀ କରନ୍ତୁ ଏବଂ ସେମାନେ ଆଉ କାଳବିଳମ୍ବ ନକରି ତାଙ୍କର ସାର୍ବଭୌମ କ୍ଷମତାକୁ ଜାରି କରନ୍ତୁ । ଆମ ଇତିହାସର ଏହି ଘଡ଼ିସନ୍ଧିବେଳେ ସମୟ ଅତି ଦ୍ରୁତ ଗତିରେ ଚାଲିଯାଉ-ଅଛି । ଦିନଟିଏ ଗତ ହୋଇଗଲେ ହୁଏତ ଶହେ ବର୍ଷର ଦାସତ୍ୱ ଆମ ଉପରେ ଲଦା ହୋଇଯିବ । ବର୍ତ୍ତମାନ ସ୍ୱାଧୀନତା ବୋଇତ ମଝି ଦରିଆରେ ବୁଡ଼ିବା ଉପରେ ବସିଛି । ଏଣୁ ମୁଁ ପ୍ରତ୍ୟେକ ପୁରୁଷ ଓ ସ୍ତ୍ରୀ ଲୋକଙ୍କୁ ଡାକ ଦେଉଛି ଯେ ସେମାନେ ପ୍ରତିକ୍ରିୟାର କାଳ ଅନ୍ଧାର ସଙ୍ଗେ ଲଢ଼ିବା ସକାଶେ ଠିଆ ହୋଇଯାଆନ୍ତୁ ।

—o—

# ସମାନ୍ତରାଳ ସରକାର ଗଠନ ଯୋଜନା

ମହାତ୍ମାଗାନ୍ଧି ଦାକ୍ଷିଣାତ୍ୟର ରାଜା ମହାରାଜାମାନଙ୍କ ସହିତ ଆଲୋଚନା ଏବଂ ରାଜାମାନଙ୍କ ଉଦ୍ଦେଶ୍ୟରେ ସାରଙ୍ଗଧର ଦାସଙ୍କ ଇସ୍ତାହାର ପ୍ରକାଶିତ ହେବାପରେ ରାଜାମାନଙ୍କ ପକ୍ଷରୁ କୌଣସି ପରିବର୍ତ୍ତନର ଆଶା ଜଣାଗଲା ନାହିଁ । ଏଣୁ ଭବିଷ୍ୟତ କର୍ମପନ୍ଥା ନିର୍ଦ୍ଧାରଣ କରିବାପାଇଁ ତା ୧୫—୮—୪୬ ଦିନ ନୟାଗଡ଼ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ବୈଠକ ଅନୁଷ୍ଠିତ ହେଲା । ମୁଖ୍ୟତଃ ପ୍ରଜା—ମଣ୍ଡଳ ଅଧିବେଶନ ପ୍ରସ୍ତାବମତେ ନୟାଗଡ ପ୍ରଜାମଣ୍ଡଳ ପଞ୍ଚାୟତ ନିୟମାବଳୀ ଅନୁଯାୟୀ ପ୍ରତ୍ୟେକ ଗ୍ରାମକୁ ଗୋଟିଏ ଗୋଟିଏ ସ୍ୱୟଂ ସମ୍ପନ୍ନ ୟୁନିଟ୍ କରାଯିବାର ସ୍ଥିରହେଲା । ପ୍ରତ୍ୟେକ ୟୁନିଟରେ ଗ୍ରାମର ଯାବତୀୟ ଉନ୍ନତିକଳ୍ପେ ସେହି ଗ୍ରାମର ସମସ୍ତ ଯୁବକଙ୍କୁ ନେଇ ଯୁବସେବା ସ୍ୱେଚ୍ଛାସେବକ ଦଳ ଗଠନ କରାଯିବାର ସ୍ଥିର ହେଲା । ଏହି ସ୍ୱେଚ୍ଛାସେବକ ମାନେ ଗାଁର ସମସ୍ତ ଜନହିତକର କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଶାନ୍ତି ଶୃଙ୍ଖଳା ରକ୍ଷା କରିବେ ଓ ପ୍ରଜାମଣ୍ଡଳ ଯେତେବେଳେ ଯେଉଁ ନିର୍ଦ୍ଦେଶ ଦେବ, ତାହା ବିନାଦ୍ୱିଧାରେ ପାଠ କରିବେ । ଆସନ୍ତା ଗାନ୍ଧି ଜୟନ୍ତୀ ତା ୨—୧୦—୪୬ ପୂର୍ବରୁ ଗ୍ରାମ ପଞ୍ଚାୟତ ଗଠନ ଓ ଯୁବ ସ୍ୱେଚ୍ଛାସେବକ ବାହିନୀ ଗଠନ କାର୍ଯ୍ୟ ଶେଷ କରିବା ପାଇଁ ନିଷ୍ପତ୍ତି କରାଗଲା । ସ୍ୱେଚ୍ଛାସେବକ ବାହିନୀକୁ ଟ୍ରେନିଂ ଦେବା ଉଦ୍ଦେଶ୍ୟରେ ଶ୍ରୀ ସତ୍ୟବାଦୀ ମିଶ୍ର ଓ ଭଗିରଥୀ ମିଶ୍ର କର୍ମୀଦ୍ୱୟଙ୍କୁ ତାଲିମ ପାଇବା ପାଇଁ ପଠାଯିବାର ସ୍ଥିର ହେଲା । ନୟାଗଡ଼ ଆନ୍ଦୋଳନରେ ଯୋଗଦେଇ ସହିଦ ହୋଇଥିବା ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ପ୍ରତିବର୍ଷ ଅକ୍ଟୋବର ୧୦ ତାରିଖ ଦିନ ଶହୀଦ ଦିବସ ପାଳନ କରାଯିବାର ସ୍ଥିର ହେଲା । ଚଳିତବର୍ଷ ଏହି ଉତ୍ସବ ନୂଆଗାଁଠାରେ ପାଳନ କରାଯିବାର ସ୍ଥିର ହେଲା ଏବଂ ଶହୀଦ ଦିବସବାସରରେ ନୟାଗଡ ପଞ୍ଚାୟତର ବାର୍ଷିକ ସମ୍ମିଳନୀ ଏବଂ ଯୁବକ ସ୍ୱେଚ୍ଛାସେବି ବାହିନୀର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବାର ନିଷ୍ପତି ହେଲା, ଆନନ୍ଦର କଥା କର୍ମୀମାନେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ପ୍ରଜାମଣ୍ଡଳ ନିୟମାନୁଯାୟୀ ଗ୍ରାମ ପଞ୍ଚାୟତ, ୟୁନିଅନ ପଞ୍ଚାୟତ ଏବଂ ଥାନା ପଞ୍ଚାୟତମାନ ଗଠନ କରିପାରିଥିଲେ ଏବଂ ଯୁବ ସ୍ୱେଚ୍ଛାସେବକ ବାହିନୀର ଗଠନ କାର୍ଯ୍ୟ ମଧ୍ୟ ସୁନ୍ଦରରୂପେ କରିପାରିଥିଲେ । ଏହା ଫଳରେ ଶହୀଦ ଦିବସ ପୂର୍ବରୁ ନୟାଗଡରେ ଏକ ସମାନ୍ତରାଳ ସରକାର ପ୍ରତିଷ୍ଠିତ ହୋଇ କାର୍ଯ୍ୟ କରୁଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଗାଁକଳି ଗାଁରେ ତୁଟିବାରୁ ଥାନା କଚେରୀ ଏକପ୍ରକାର ବନ୍ଦ ହୋଇ

ଯାଉଥିଲା କହିଲେ ଚଳେ । ତାଂର ସମସ୍ତପ୍ରକାର ଶାନ୍ତିଶୃଙ୍ଖଳା ଯୁବସ୍ୱେଚ୍ଛାସେବକ ବାହିନୀ ତୁଲାଇବା ସଙ୍ଗେ ସଙ୍ଗେ ରାସ୍ତାଘାଟ, ବାଟ ସଫାକରିବା ଏବଂ ପୋଖରୀର ପଙ୍କୋଦ୍ଧାର କାର୍ଯ୍ୟ କରୁଥିଲେ ।

ନୟାଗଡ଼ ପ୍ରଜାମଣ୍ଡଳର ଯୋଡ଼ିଏଡ଼ା ଅଧିବେଶନରେ ଏକତ୍ରିତ ହୋଇଥିବା ଓଡ଼ିଶା ଗଡ଼ଜାତ ଧମ୍ପୁର ନେତୃବର୍ଗଙ୍କ ଅନୁରୋଧ କ୍ରମେ ଓଡ଼ିଶା ଗଡ଼ଜାତ ଅଞ୍ଚଳ କାଉନ୍‌ସିଲର ସଭାପତି ଶ୍ରୀ ସାରଙ୍ଗଧର ଦାସ ତା ୨୩-୮-୪୬କୁ ଅଞ୍ଚଳ କାଉନ୍‌ସିଲର ବୈଠକ କଟକକୁ ଡକାଇଲେ । ବିଶେଷ ଭାବେ ନିମନ୍ତ୍ରିତ ହୋଇ ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଏହି ବୈଠକରେ ଯୋଗଦେଇ ତାଙ୍କର ପରିକଳ୍ପନା ପ୍ରାଞ୍ଜଳଭାବେ ବୁଝାଇ ଓଡ଼ିଶା ସହିତ ଓଡ଼ିଆ–ଭାଷୀ ଗଡ଼ଜାତ ଗୁଡ଼ିକୁ ମିଶାଇଦେବା ସମ୍ପର୍କରେ ବୁଝାଇଥିଲେ । ଏହି ସମ୍ମିଳନୀରେ ସର୍ବସମ୍ମତିକ୍ରମେ ଓଡ଼ିଶାର ଗଡ଼ଜାତଗୁଡ଼ିକୁ ଇଦୋର ପ୍ରସ୍ତାବମତେ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବାପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ଏବଂ ରାଜା ମହାରାଜାଙ୍କ ଦ୍ୱାରା କଳ୍ପିତ ରାଷ୍ଟ୍ରସଂଘର ନିନ୍ଦାବାଦ କରିବା ସଙ୍ଗେ ସଙ୍ଗେ ଏହି ରାଷ୍ଟ୍ରସଂଘର କାର୍ଯ୍ୟକ୍ରମକୁ ଜନଶକ୍ତି ସାହାଯ୍ୟରେ ଅକାମୀ କରିଦେବାପାଇଁ ମଧ୍ୟ ପ୍ରସ୍ତାବ କରାଯାଇଥିଲା । ଭବିଷ୍ୟତ ସଂଗ୍ରାମ ପାଇଁ ପ୍ରଜାମଣ୍ଡଳଗୁଡ଼ିକୁ ସକ୍ରିୟ ତଥା ସଙ୍ଗଠିତ କରି ରଖିବାପାଇଁ ସ୍ଥିର ହେଲା । ଯେଉଁ ରାଜ୍ୟମାନଙ୍କର ପ୍ରଜାମଣ୍ଡଳ ଗଠିତ ହୋଇପାରି ନାହିଁ, ଯଥାଶୀଘ୍ର ସେ ଗ୍ରାମମାନଙ୍କରେ ପ୍ରଜାମଣ୍ଡଳ ଗଠନ ହେବାର ସ୍ଥିର ହେଲା ଦେଶର ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଓଡ଼ିଶା ଗଡ଼ଜାତ ଛାତ୍ର ସମାଜ ମଧ୍ୟରେ ଆଲୋଡ଼ନ ସୃଷ୍ଟି ହେବା ସ୍ୱାଭାବିକ କଥା । ସେହି ସମୟରେ ନୟାଗଡ଼ର କେତେକ ଛାତ୍ର କଟକରେ ଅଧ୍ୟୟନ କରୁଥିଲେ । ସେମାନେ ସଙ୍ଗଠିତ ହୋଇ ଗଡ଼ଜାତ ଅଞ୍ଚଳରେ ଏକ ଛାତ୍ର ଅନୁଷ୍ଠାନ ଗଠନର କଳ୍ପନା କରି ନୟାଗଡ଼ ପ୍ରଜାମଣ୍ଡଳର ସହଯୋଗ ଲୋଡ଼ିଲେ । କଲେଜ ଛାତ୍ର ନରସିଂହ ପଟ୍ଟନାୟକ, ରଘୁନାଥ ମହାପାତ୍ର, ଅକ୍ରୁର ମହାପାତ୍ର, କୁଳମଣି ପରିଡ଼ା ଓ ଅନ୍ୟ ଗଡ଼ଜାତର କେତେକ ଛାତ୍ର କଟକ ସହରରେ ଏକ ଛାତ୍ର ନିବାସ କରି ତାର ନାମ ନବୀନ ନିବାସ ରଖି ସେଠାରେ ରହି ଅଧ୍ୟୟନ କରୁଥିଲେ । ଏହି ନବୀନ ନିବାସର ଛାତ୍ରମାନେହିଁ ଗଡ଼ଜାତଛାତ୍ର ଆନ୍ଦୋଳନର କେନ୍ଦ୍ରବିନ୍ଦୁ ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । କଟକରେ ଏହି ସମୟରେ ଅନୁଷ୍ଠିତ କାଉନସିଲ ବୈଠକରେ ଯୋଗଦେବା ପାଇଁ ନୟାଗଡ଼ ପ୍ରଜାମଣ୍ଡଳର ଯେଉଁ ପ୍ରତିନିଧିମାନେ କଟକ ଯାଇଥିଲେ ଏହି ଛାତ୍ର ନେତାମାନେ ସେମାନଙ୍କୁ ନବୀନ ନିବାସକୁ ଡାକିନେଇ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇବା ସଙ୍ଗେ ସଙ୍ଗେ ଗଡ଼ଜାତପାଇଁ ଗୋଟିଏ ଗୋଟିଏ ଅଦହକ ଛାତ୍ର ସଂଘଗଠନ କରିଥିଲେ । ଓ ନୟାଗଡ଼ ପାଇଁ ନରସିଂହ ପଟ୍ଟନାୟକଙ୍କ ଅଦହକତ୍ୱରେ ନୟାଗଡ଼ ଛାତ୍ରସଂଘ ଗଠନ କରିଥିଲେ ।

୧୯୪୬ ମସିହା ସେପ୍ଟେମ୍ବର ମ ପରେ ବଡ଼ଲାଟ ଲର୍ଡଓ୍ୱାଭେଲ ପଣ୍ଡିତ ଜବାହରଲାଲ ନେହେରୁଙ୍କ ହସ୍ତରେ ମଧ୍ୟବର୍ତ୍ତୀକାଳୀନ ଶାସନ କ୍ଷମତା ହସ୍ତାନ୍ତର କରିଦେଇ ବ୍ରିଟିଶ ସରକାରଙ୍କ ମନୋଭାବ ପରିଷ୍କାର କରିଦେବା ପରେ ଦେଶରେ ନାନାପ୍ରକାର ରାଜନୈତିକ ଝଡଝଞ୍ଜା ପ୍ରବାହିତ ହେଲା । ମୁସଲିମ୍ ଲିଗ୍ ସ୍ୱତନ୍ତ୍ର ପାକିସ୍ତାନ ଦାବୀ କରି ଦେଶରେ ଗୁରୁତର ସାମ୍ପ୍ରଦାୟିକ ଗଣ୍ଡଗୋଳ ଆରମ୍ଭ କରିଦେଲେ । ଶହ ଶହ ବର୍ଷ ଧରି ଭାଇ ଭାଇ ଭଳି ଚଳିଆସୁଥିବା ହିନ୍ଦୁ ମୁସଲମାନ ସମ୍ପ୍ରଦାୟ ହଣାହଣି ହୋଇ ହଜାର ହଜାର ମଲେ । ଏହାରି ସୁଯୋଗରେ ରାଜାମାନେ ଭାରତରୁ ଅଲଗା ହୋଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବାପାଇଁ ନାନା ଅପକୌଶଳ ବଢ଼ାଇଲେ ।

ଦେଶର ଏହି ଘଡ଼ିସନ୍ଧି ବେଳେ ଗଡ଼ଜାତର ଭବିଷ୍ୟତ କଣହେବ, କିଛି ଜଣାପଡୁ ନଥାଏ । ପ୍ରଜାମଣ୍ଡଳମାନେ ଭବିଷ୍ୟତ ଆଶା ଓ ଆଶଙ୍କାରେ ଜୋର୍-ସୋରରେ ଗଠନ ମୂଳକ କାର୍ଯ୍ୟରେ ଲାଗି ଶକ୍ତି ସଞ୍ଚୟ କରୁଥାନ୍ତି । ଅଞ୍ଚଳ କାଉନସିଲ ଗଡ଼ଜାତ ଅଞ୍ଚଳକୁ ସଙ୍ଗଠିତ କରି ଭବିଷ୍ୟତ ସଂଗ୍ରାମ ପାଇଁ ପ୍ରସ୍ତୁତ କରାଉଥାନ୍ତି । ଏହି ଅବସରରେ ତା ୧୦-୧୦-୪୬ ଦିନ ନୂଆଗାଁଠାରେ ନୟାଗଡ଼ ପ୍ରଜାମଣ୍ଡଳର ଶହୀଦ ଦିବସ ପାଳନ କରାଗଲା । ଅଞ୍ଚଳ କାଉନସିଲର ସଭାପତି ଶ୍ରୀ ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ୧୦ ସହସ୍ରାଧିକ ସ୍ୱେଚ୍ଛା ସେବକ ଓ ପ୍ରଜାମଣ୍ଡଳ କର୍ମୀ ସହିଦ କଣ୍ଟି ଡାକୁଆଙ୍କ ସହିଦତ୍ୱ ଲାଭ କରିଥିବା ସ୍ଥାନରେ ପୁଷ୍ପାଞ୍ଜଳି ଅର୍ପଣ କରି ନୀରବ ପ୍ରାର୍ଥନା କରିଥିଲେ । ଅପରାହ୍ଣ ୨ଘଣ୍ଟାବେଳେ ନୟାଗଡ଼ ପ୍ରଜାମଣ୍ଡଳ ପଞ୍ଚାୟତ ମାନଙ୍କରେ ବାର୍ଷିକ ସମ୍ମିଳନୀ ଶ୍ରୀ ସାରଙ୍ଗଧର ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ପଞ୍ଚାୟତର ବିବରଣୀପାଠ ପରେପରେ ସାରଙ୍ଗ ବାବୁ ଭାଷଣ ପ୍ରସଙ୍ଗରେ ପଞ୍ଚାୟତ କାର୍ଯ୍ୟର ଭୂରିଭୂରି ପ୍ରଶଂସା କରି ସଂଘତ ଓ ସୁଶୃଙ୍ଖଳିତ ଭାବେ ଗାନ୍ଧିଜୀଙ୍କ ଆଦର୍ଶରେ ପଞ୍ଚାୟତମାନେ କାର୍ଯ୍ୟ କରିବାପାଇଁ ପରାମର୍ଶ ଦେଇଥିଲେ । ଅପରାହ୍ଣ ୫ଘଣ୍ଟା ସମୟରେ ପ୍ରଜାମଣ୍ଡଳର ସଭାପତି ବାଞ୍ଛାନିଧି ସେନାପତିଙ୍କ ସଭାପତିତ୍ୱରେ ଯୁବ ସ୍ୱେଚ୍ଛାସେବକ ବାହିନୀର ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହୋଇ ଭବିଷ୍ୟତ ସଂଗ୍ରାମ ପାଇଁ ପ୍ରସ୍ତୁତ ହୋଇ ରହିବାକୁ ନିଷ୍ପତ୍ତିଗ୍ରହଣ କରିଥିଲେ । ସାଧାରଣସଭା ପରେ ସେହିଦିନ ରାତିରେ ନୂଆଗାଁ କର୍ମୀ ଠାରେଯେ ସମ୍ମିଳନୀ ସାରଙ୍ଗଧର ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ସାରଙ୍ଗ ବାବୁଙ୍କ ପରାମର୍ଶ କ୍ରମେ ଉକ୍ତ କର୍ମୀ ସମ୍ମିଳନୀ ସ୍ଥିର କଲେ ସମ୍ପାଦକ ଲକ୍ଷ୍ମଣ ମହାରଣା ପଞ୍ଚାୟତ ପରିଚାଳନାର ସର୍ବୋଚ୍ଚ ଦାୟିତ୍ୱରେ ରହିବେ । ଯୁବ ସ୍ୱେଚ୍ଛା-ସେବକ ବାହିନୀର ସର୍ବୋଚ୍ଚ ପରିଚାଳନା ଦାୟିତ୍ୱ ଶ୍ରୀଧର ଦାସଙ୍କ ଉପରେ ନ୍ୟସ୍ତ କରାଗଲା । ଖଦୀ ପ୍ରଚାର ଭଳି ବିଭିନ୍ନ ଗଠନ ମୂଳକ କାର୍ଯ୍ୟର ଦାୟିତ୍ୱ ନାରାୟଣ

ନନ୍ଦଙ୍କୁ ଦିଆଗଲା । ଅସ୍ପୃଶ୍ୟତା ନିବାରଣ ପାଇଁ ସର୍ବୋଚ୍ଚ ଦାୟିତ୍ୱ ନରସିଂହ ନନ୍ଦ ଗ୍ରହଣ କଲେ । ପ୍ରଜାମଣ୍ଡଳ ବାର୍ତ୍ତା ଓ ନିର୍ଦ୍ଦେଶକୁ ଠିକ୍ ଭାବେ ଜନସାଧାରଣରେ ପରିବେଷଣ କରିବାପାଇଁ ଶ୍ରୀଧର ଦାସ, କୁବେର ସାହୁ ଓ ଉଦୟନାଥ ପୃଷ୍ଟିଙ୍କୁ ନେଇ ଏକ ପ୍ରଚାର ସବ୍ କମିଟି ଗଠନ କରାଗଲା । ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହିତ ମିଶ୍ରଣକୁ ମୂଳଭିତ୍ତିକରି ପ୍ରଚାର କାର୍ଯ୍ୟ କରାଯିବାର ସ୍ଥିର ହେଲା । କଟକର ଯୁବନେତା ଶ୍ରୀ ରବି ରାୟ, ବିଶ୍ୱନାଥ ପଣ୍ଡିତ କର୍ମୀ ସମ୍ମିଳନୀରେ ଯୋଗଦେଇ ଭବିଷ୍ୟତ ଆନ୍ଦୋଳନପାଇଁ ସଜାଗ ରହିବାକୁ ଆହ୍ୱାନ ଦେଇଥିଲେ । ତାପର ଦିନପାଇଁ ସକାଳୁ କର୍ମୀ, ଯୁବ ସ୍ୱେଚ୍ଛାସେବକ ବାହିନୀ ଓ ପଞ୍ଚାୟତ ସଭ୍ୟମାନଙ୍କର ଏକ ବୈଠକରେ ମିଶ୍ରଣକୁ ମୂଳକରି ଭବିଷ୍ୟତ ସଂଗ୍ରାମ ପାଇଁ ପ୍ରସ୍ତୁତ ରହିବାକୁ ସ୍ଥିରକରି ଏକ ପ୍ରସ୍ତାବ ଗ୍ରହଣ କରାଗଲା ।

ଅଞ୍ଚଳ କାଉନସିଲ୍‌ର ନିର୍ଦ୍ଦେଶ କ୍ରମେ ଯେଉଁ ରାଜ୍ୟରେ ପ୍ରଜାମଣ୍ଡଳ ନାହିଁ, ଉକ୍ତ ରାଜ୍ୟରେ ପ୍ରଜାମଣ୍ଡଳ ଗଠନ କରାଯିବାର ସ୍ଥିର ହୋଇଥିବାରୁ ଦଶପଲ୍ଲା ରାଜ୍ୟର ଗୋପୀନାଥ ବାରିକ ଓ ବଙ୍ଗର ପାତ୍ରଙ୍କ ନେତୃତ୍ୱରେ ଦଳେ ଲୋକ ଦଶପଲ୍ଲାରୁ ଆସି ସହିଦ ଦିବସରେ ଯୋଗ ଦେଇଥିଲେ । ଏହି ପରି– ପ୍ରେକ୍ଷୀରେ ଦଶପଲ୍ଲା ପ୍ରଜାମଣ୍ଡଳ ଗଠନ ସମ୍ପର୍କରେ ସେମାନେ ଶ୍ରୀଯୁକ୍ତ ସାରଙ୍ଗ- ଧର ଦାସଙ୍କ ସଙ୍ଗେ ଆଲୋଚନା କରିଥିଲେ । ସାରଙ୍ଗବାବୁଙ୍କ ଠାରୁ ଆବଶ୍ୟକୀୟ ପରାମର୍ଶ ଗ୍ରହଣ କରି ନୟାଗଡ଼ ପ୍ରଜାମଣ୍ଡଳ ସମ୍ପାଦକଙ୍କ ଠାରୁ କେତେଖଣ୍ଡ ଜାତୀୟ ପତାକା ନେଇ ଏକ ଶୋଭାଯାତ୍ରାରେ ଦଶପଲ୍ଲା ରାଜ୍ୟରେ ପ୍ରବେଶ କରିବାରୁ ଦଶପଲ୍ଲାର ରାଜା ସେମାନଙ୍କୁ ଗିରଫ କରି ନିର୍ମମ ମାଡ ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ଗୋଡ଼ରେ ଦଉଡ଼ି ବାନ୍ଧି ସାଧାରଣ ରାସ୍ତା ଉପରେ ଘୋଷାରି ଘୋଷାରି ନେଇ ଜେଲ ହାଜତରେ ରଖିଲେ । ଏଭଳି ବର୍ବରୋଚିତ ଅତ୍ୟାଚାର ମୂଳକ କାର୍ଯ୍ୟ ସାଧାରଣରେ ପ୍ରକାଶିତ ହେବାପରେ ଏହାର ସତ୍ୟାସତ୍ୟ ଜାଣିବାପାଇଁ ଅଞ୍ଚଳ କାଉନ୍‌ସିଲ୍ ଶ୍ରୀଧର ଦାଶଙ୍କୁ ତଦନ୍ତ ପାଇଁ ଦଶପଲ୍ଲା ପଠାଇଲେ । ଦଶପଲ୍ଲା ରାଜା ଏଭଳି କଟକଣା କରିଥିଲେ ଯେ ଶ୍ରୀଧର ଦାଶଙ୍କୁ ବସିବାପାଇଁ କେହି ଜାଗାଟିକିଏ ଦେଲେ ନାହିଁ । କଥା ହେବାତ ଦୂରର କଥା । ମାତ୍ର ମୃତ୍ୟୁଞ୍ଜୟ ମିଶ୍ର ଦଶପଲ୍ଲାଗଡ଼ ଭୟ ତ୍ୟାଗ କରି ଶ୍ରୀଧର ଦାଶଙ୍କୁ ରହିବାପାଇଁ ସୁବିଧା ଦେଇଥିବାରୁ ବହୁ ନିର୍ଯ୍ୟାତନା ଭୋଗିଲେ । ଦଶପଲ୍ଲା ରାଜାଙ୍କ ଦ୍ୱାରା ଗିରଫ ହୋଇ ଜେଲରେଥିବା କର୍ମୀମାନଙ୍କ ଉପରେ ଅତ୍ୟାଚାରର ଯେଉଁ ସମ୍ବାଦ ମିଳିଛି ସେ ସମ୍ପର୍କରେ ଦେଓ୍ୟାନଙ୍କ ସହ ଶ୍ରୀଧର ଦାଶ ଆଲୋଚନା କରିବାରେ ଦେଓ୍ୟାନ ଅତ୍ୟାଚାର ହେବା କଥା ଅସ୍ୱୀକାର କଲେ । ବନ୍ଦୀମାନଙ୍କ ସହ ଦେଖା ସାକ୍ଷାତ କରିବାକୁ ମଧ୍ୟ ମନାକରି ଦେଲେ । ରାଜାଙ୍କ ସହିତ କଥା- ହେବା ପାଇଁ ଚାହିଁବାରୁ ରାଜା ବାହାର ଲୋକଙ୍କ ସହ କଥା ହେବେନାହିଁ ବୋଲି ଦେଓ୍ୟାନ ମନା କରିଦେଲେ ।

ଓଡ଼ିଶା ପ୍ରଦେଶ ସହିତ ମିଶିବାପାଇଁ ପ୍ରବଳ ଜନ ଆନ୍ଦୋଳନ ଏବଂ ରାଷ୍ଟ୍ରସଂଘ ଗଠନ କରିବାପାଇଁ ରାଜାମାନଙ୍କ ମଧ୍ୟରେ ପ୍ରବଳ ଉଦ୍ୟମ ଚାଲିଥିବା ବେଳେ ଓଡ଼ିଶା ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ମିଶ୍ରଣକୁ ମୂଳକରି ଏକ ସମାଧାନର ଉଦ୍ୟମ ସେତେବେଳେ ଚଳାଇଥାନ୍ତି । ଓଡ଼ିଶାର ଗଭର୍ଣ୍ଣରଙ୍କ ମାଧ୍ୟମରେ ତତ୍କାଳୀନ ରେସିଡେଣ୍ଟ ଏବଂ ଅଫିସର–ଇନ୍–ଡିଉଟି ମିଃ ହରବର୍ଟଙ୍କ ସହିତ ପତ୍ରାଳାପ ଚଳାଇଥାନ୍ତି । ମିଶ୍ରଣ ସମ୍ପର୍କରେ ଆଲୋଚନା କରିବାପାଇଁ ତା୧୬–୧୦–୪୬ଦିନ ଶ୍ରୀଯୁକ୍ତ ମହତାବଙ୍କ ସହିତ ଓଡ଼ିଶା ଗଡଜାତର କେତେଜଣ ରାଜାଙ୍କର ବୈଠକ ଅନୁଷ୍ଠିତ ହୋଇଥିଲା । ଓଡ଼ିଶା କଂଗ୍ରେସ ପ୍ରଜାମଣ୍ଡଳଗୁଡ଼ିକୁ ସହାୟତା କରୁଥିବାରୁ କେତେଜଣ ରାଜା ଅଭିଯୋଗ କରିଥିଲେ । ନୟାଗଡ ପ୍ରଜାମଣ୍ଡଳ ଦଶପଲ୍ଲାରେ ପ୍ରଜାମଣ୍ଡଳ ଗଠନ କରିବାପାଇଁ ସହାୟତା କରୁଥିବାରୁ ଓ ଖଣ୍ଡପଡ଼ା କର୍ମୀମାନଙ୍କ ସହିତ ସମ୍ପର୍କ ରକ୍ଷାକରୁଥିବାରୁ ଖଣ୍ଡପଡ଼ା ଓ ଦଶପଲ୍ଲା ରାଜାମାନେ ଆପତ୍ତି ଉଠାଇଥିଲେ ଏବଂ ଏଭଳି କାର୍ଯ୍ୟ ଯେପରି ନହୁଏ ସେଥିପାଇଁ ଦୃଷ୍ଟିଦେବାକୁ ସେମାନେ ମହତାବଙ୍କୁ ଅନୁରୋଧ କରିଥିଲେ । ରାଜାମାନେ ଗାନ୍ଧିଜୀଙ୍କ ପରାମର୍ଶ କ୍ରମେ କାର୍ଯ୍ୟ ନକରି ସ୍ୱାଧୀନ ରାଷ୍ଟ୍ରସଂଘ ଗଠନ କରିବାପାଇଁ ଦୃଢ଼ ପରିକର ହେଉଥିବା ବେଳେ ଅଖଣ୍ଡ ଭାରତ କଳ୍ପନା କରୁଥିବା ପ୍ରଜାମଣ୍ଡଳ ଗୁଡ଼ିକ ଏକତ୍ରିତ ହୋଇ ରାଷ୍ଟ୍ରସଂଘର ବିରୋଧ କରିବା ଅତି ସ୍ୱାଭାବିକ କଥା । ମାତ୍ର ରାଜାମାନେ ଅନ୍ଧ ଭାବରେ ନିଜକୁ ସର୍ବମୟ କର୍ତ୍ତାଭାବି ପ୍ରଜାଙ୍କ କଥା ବିଚାରକୁ ନେଉ ନଥିବାରୁ ନାନା ଅବାନ୍ତର କଥା କହିବାକୁ ପଛାଉନଥିଲେ । ରାଜାମାନେ ପ୍ରଜାମାନଙ୍କ ସହିତ ମିଳାମିଶା ନକରି ପ୍ରଜାମାନଙ୍କୁ ହେୟ ମଣୁଥିବାରୁ ଓ ବ୍ରିଟିଶ ରାଜନୀତିକ ବିଭାଗ ସେମାନଙ୍କୁ ନାନା ଭାବରେ ସହାୟତା କରିବାହେତୁ ରାଜା ଏବଂ ପ୍ରଜାଙ୍କ ଭିତରେ ଦିନକୁଦିନ ସମ୍ପର୍କ ଖରାପ ଦିଗକୁ ଗତି କରିଥିଲା । ରେସିଡେଣ୍ଟ ଏଥିପାଇଁ ରାଜାଙ୍କୁ ବହୁତ କ୍ଷେତ୍ରରେ ସାହାଯ୍ୟ କରୁଥିଲେ । ପ୍ରଜାମଣ୍ଡଳ ଅଧିବେଶନ ପରେ ପରେ ନୟାଗଡରେ ପଞ୍ଚାୟତ ଏବଂ ଯୁବବାହିନୀ ରାଜ୍ୟସାରା ନିଜର ଅଧିକାର ଜାହିର କରିବା ଫଳରେ ନୟାଗଡ଼ରେ ଏକ ସମାନ୍ତରାଳ ସରକାର ପ୍ରତିଷ୍ଠିତ ହୋଇଥିଲା ଏବଂ ରାଜା ଏହାର ସମ୍ମୁଖୀନ ହୋଇପାରୁନଥିଲେ । ଏହା ଜଣାଶୁଣା କଥା ଏହି ପରିପ୍ରେକ୍ଷୀରେ ରାଜା ରେସିଡେଣ୍ଟଙ୍କ ସହାୟତା ଲୋଡ଼ିଲେ । ରେସିଡେଣ୍ଟ କିଛି ତଦନ୍ତ ନକରି ଶାନ୍ତିପୂର୍ଣ୍ଣ ଭାବରେ ନୟାଗଡରେ ଚାଲିଥିବା ଆନ୍ଦୋଳନକୁ ଦବାଇବା ପାଇଁ ଉଦ୍ୟମକରି ନୟାଗଡ଼ ପ୍ରଜାମଣ୍ଡଳ ହିଂସାତ୍ମକ ପନ୍ଥା ଧରୁଥିବା କଥା ଓଡ଼ିଶା ଗଭର୍ଣ୍ଣରଙ୍କୁ ଜଣାଇ ତାଙ୍କ ସରକାର ଏଭଳି ହିଂସାତ୍ମକ ଆନ୍ଦୋଳନକୁ ସମର୍ଥନ ନକରିବାପାଇଁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁତକଥା ଲେଖିଥିଲେ । ଏହାପରେ ପରେ ପଲିଟିକାଲ ଏଜେଣ୍ଟ ନୟାଗଡର ଗ୍ରାମେ ଗ୍ରାମେ ବୁଲି ପଞ୍ଚାୟତ ଗୁଡ଼ିକୁ ଭାଙ୍ଗିବାପାଇଁ ଉଦ୍ୟମ ଚଳାଇଲେ । ପଞ୍ଚାୟତ ଗୁଡ଼ିକ ଜନମତ ଦ୍ୱାରା ଠିକ୍

କାମ କରୁଥିବାରୁ ପଲିଟିକାଲ ଏଜେଣ୍ଟ ଦମନର କୌଣସି ସୁବିଧା ନପାଇ ଏକ ସାମାନ୍ୟ କଥାକୁ କେନ୍ଦ୍ର କରି ନନ୍ଦିଘୋର ଗ୍ରାମପଞ୍ଚାୟତକୁ ସଭାପତି ଉଦୟନାଥ ପାଢ଼ିଙ୍କୁ ଡାକି ଧମକ ଚମକ ଦେଲେ । କିନ୍ତୁ ନନ୍ଦିଘୋର ପଞ୍ଚାୟତର ସଭାପତି ଉଦୟନାଥ ପାଢ଼ୀ ମୁହଁମୁହିଁ ପଲିଟିକାଲ୍ ଏଜେଣ୍ଟଙ୍କ କଥା ଏବଂ କାର୍ଯ୍ୟ ଅତ୍ୟନ୍ତ ଅବାନ୍ତର ବୋଲି ପ୍ରମାଣ କରାଇ ଦେବାରୁ ତାପରଠାରୁ ସେ ଆଉ ପଞ୍ଚାୟତ ଭାଙ୍ଗିବା କଥା କଳ୍ପନା କଲେନାହିଁ ।

ମହାତ୍ମାଗାନ୍ଧିଙ୍କର ଆଦର୍ଶରେ ଗ୍ରାମମାନଙ୍କରେ ପଞ୍ଚାୟତମାନେ ଗ୍ରାମ ଶାସନ ନିଜେ ଚଳାଇଥିବାରୁ ଗାଁର ମାଲିମୋକଦ୍ଦମା ଗାଁରେ ତୁଟିଲା । କୂଅ, ପୋଖରୀ, ରାସ୍ତାଘାଟ ସବୁ ନିର୍ମାଣ ଏବଂ ପରିଷ୍କାର କରାଗଲା । କୋର୍ଟ କଚେରୀକୁ କୌଣସି ମାଲିମୋକଦ୍ଦମା ନଯିବାରୁ ଗାଁ ପଇସା ଗାଁରେ ରହିଲା । ପରିସ୍ଥିତି ଏଭଳି ହେଲାଯେ ରାଜାଙ୍କ ଉପରୁ ଆସ୍ଥା ତୁଟାଇ ବହୁ ସରକାରୀ କର୍ମଚାରୀ ପ୍ରଜାମଣ୍ଡଳ ଦ୍ୱାରା ପ୍ରତିଷ୍ଠିତ ପଞ୍ଚାୟତମାନଙ୍କରେ ସଭ୍ୟ ହୋଇ କାର୍ଯ୍ୟ କଲେ । ଗ୍ରାମମାନଙ୍କରେ ରହୁଥିବା ପ୍ରାୟ ସମସ୍ତ ରାଜ କର୍ମଚାରୀ ପ୍ରଜାମଣ୍ଡଳର ଆନୁଗତ୍ୟ ସ୍ୱୀକାର କରିଥିଲେ । ଏହି ପରିସ୍ଥିତିରେ ଶ୍ରୀ ଲୋକନାଥ ମିଶ୍ର ସରକାରୀ ଚାକିରୀରୁ ଆସି ପ୍ରଜାମଣ୍ଡଳ ସ୍ୱେଚ୍ଛାସେବକ ବାହିନୀରେ ଯୋଗ ଦେଇଥିଲେ ।

ଦେଶରେ ଏଭଳି ଏକ ପରିସ୍ଥିତିରେ ପଣ୍ଡିତ ଜବାହରଲାଲ ନେହେରୁ ଗଡ଼ଜାତ ଲୋକଙ୍କର ଅଧିକାର ସାବ୍ୟସ୍ତ କରିବା ଉଦ୍ଦେଶ୍ୟରେ ଗଡ଼ଜାତମାନଙ୍କ ପାଇଁ ଗଣପରିଷଦ ଗଠନ କରିବା ଘୋଷଣା କଲେ । ନୟାଗଡ଼ରେ ପଞ୍ଚାୟତ ଗୁଡ଼ିକ ଗଣମାଧ୍ୟମରେ ଗଠିତ ହୋଇଥିବାରୁ ତାହା ପଣ୍ଡିତ ନେହେରୁଙ୍କ ଘୋଷଣାର ପରିପୂରକ ଥିଲା । ଗଣପରିଷଦକୁ ରକ୍ଷା କରିବା ଏବଂ ଭବିଷ୍ୟତ ଆନ୍ଦୋଳନ ନିମିତ୍ତ ୨୧ ହଜାର ଯୁବ ସ୍ୱେଚ୍ଛାସେବକଙ୍କୁ ସଜାଗ ରଖାଗଲା । ଆନ୍ଦୋଳନ ପାଇଁ ଗ୍ରାମରେ ଗ୍ରାମପାର୍ଟି ଗଠନ କରାଗଲା । ନିର୍ମଳ ନିରପେକ୍ଷ ଏବଂ ଶୁଦ୍ଧ ଚିତ୍ତରେ ପ୍ରଜାମଣ୍ଡଳ ନିର୍ଦ୍ଦେଶ କ୍ରମେ ପଞ୍ଚାୟତ ସ୍ୱେଚ୍ଛାସେବକମାନେ କାର୍ଯ୍ୟ କରୁଥିବାରୁ ଗ୍ରାମରେ ପୂର୍ଣ୍ଣଶାନ୍ତି ବିରାଜମାନ କରୁଥିଲା ।

ରାଜାଙ୍କର ଶାସନକଳ ଅଚଳ ହୋଇଯିବାରୁ ରାଜା ତାଙ୍କର କେତେକ ସମର୍ଥକ ଲୋକଙ୍କୁ ଏକାଠି କରି ପ୍ରଜାମଣ୍ଡଳ ବିରୁଦ୍ଧରେ 'ପ୍ରଜାମଙ୍ଗଳ' ନାମରେ ଗୋଟିଏ ରାଜନୈତିକ ଅନୁଷ୍ଠାନ ଗଠନ କରି ନିଜ ମଟର ଦେଇ ଗାଁମାନଙ୍କରେ ସଭା ସମିତି କରି ପ୍ରଜାମଣ୍ଡଳ ବିରୁଦ୍ଧରେ ରାଜଶାସନ ସପକ୍ଷରେ ପ୍ରଚାର କରିବା ସଙ୍ଗେ ସଙ୍ଗେ ଗଡ଼ଜାତ ଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇଦେବା ପାଇଁ ପ୍ରଜାମଣ୍ଡଳ ଯେଉଁ ପ୍ରସ୍ତାବ ଗ୍ରହଣ କରିଥିଲେ ତାର ମଧ୍ୟ ବିରୋଧୀ ବକ୍ତୃତାମାନ ଦେଉଥିଲେ । ଉକ୍ତ ଦଳର ନିଜର କାର୍ଯ୍ୟକ୍ରମ ବା ଆଦର୍ଶ କିଛି ନଥିଲା । ଏହି ଦଳ

ରାଜାଙ୍କ ଦ୍ୱାରା ପ୍ରଭାବିତ ହୋଇ କାର୍ଯ୍ୟ କରୁଥିଲେ । ଜାତୀୟ କଂଗ୍ରେସର ତ୍ରିରଙ୍ଗା ପତାକା ପ୍ରଜାମଣ୍ଡଳ ନିଜର ପତାକା ଭାବେ ଗ୍ରହଣ କରିଥିବାରୁ ଏହି ହତଭାଗ୍ୟ ଦଳ କଂଗ୍ରେସ ପତାକାର ଅପମାନନା କରି କଂଗ୍ରେସ ପତାକାକୁ ଓଲଟା ଭାବେ ଉଡାଉଥିଲେ ଅର୍ଥାତ୍ ପତାକାର ସବୁଜ ରଙ୍ଗ ଉପରକୁ କରିଥିଲେ ଓ ମହାତ୍ମାଗାନ୍ଧି ପଣ୍ଡିତ ଜବାହରଲାଲ ନେହେରୁଙ୍କର ନିନ୍ଦା କରୁଥିଲେ ଓ କଂଗ୍ରେସ ତଥା ପ୍ରଜାମଣ୍ଡଳକୁ ଅସଭ୍ୟ ଭାଷାରେ ଗାଳିଗୁଲଜ କରୁଥିଲେ । ଦେଶର ଅବସ୍ଥା ସେତେବେଳକୁ ଭିନ୍ନ ମୋଡ଼ଧରି ଗତି କରୁଥିବାରୁ ପ୍ରଜାମଙ୍ଗଳ ଦଳର ପ୍ରଚାର କିଛି କାମ ଦେଲାନାହିଁ । ବରଂ ସେମାନେ ଯେଉଁଠିକି ଗଲେ ଲୋକଙ୍କ ଦ୍ୱାରା ଅପମାନିତ ଲାଂଛିତ ହୋଇ ଫେରୁଥିଲେ । ରାଜା ନାନା ଉପାୟ କରି ପ୍ରଜାମଣ୍ଡଳ କାର୍ଯ୍ୟର ପ୍ରତିବନ୍ଧକ ସୃଷ୍ଟି କରି ନପାରିବାରୁ କ୍ରୁଦ୍ଧ ହୋଇ ପୁଣି ୧୯୩। ମସିହାର ଶୃଙ୍ଖଳାରକ୍ଷା ଆଇନ ପ୍ରୟୋଗ କରିବାର ଘୋଷଣା କଲେ । ତା ୬-୧୨-୪୬ର ଏହି ଘୋଷଣା ବା ଆଦେଶନାମା ଫଳରେ ରାଜ୍ୟରେ ସଭାସମିତି ବନ୍ଦ କଲେ । ରେଜିଷ୍ଟ୍ରେସନ ଆଇନ ଅନୁସାରେ ଦଳ ରେଜିଷ୍ଟ୍ରି କରିବାପାଇଁ ନିର୍ଦ୍ଦେଶ ଦେଲେ । ରାଜା ନିଜ ଦୃଷ୍ଟିରୁ ଆଇନ ପ୍ରୟୋଗ କଲେ ସତ୍ୟମାତ୍ର ସେତେବେଳକୁ ପ୍ରଜାମଣ୍ଡଳ ରାଜ୍ୟରେ ରାଜାଙ୍କର ସାମାନ୍ତରାଳ ସରକାର ଭଳି କାର୍ଯ୍ୟ କରୁଥିବାରୁ ରାଜାଙ୍କର ହୁକୁମ ଓ ଆଦେଶ ଯେତିକିଠାରେ ରହିଗଲା ।

୧୯୪୭ ମସିହା ଜାନୁୟାରୀ ମାସରେ ଆଦିବାସୀ ଛାତ୍ରମାନଙ୍କର ଶିକ୍ଷାର୍ଥେ ପ୍ରଜାମଣ୍ଡଳ ପକ୍ଷରୁ ନିଜବ୍ୟୟରେ କାବତାପଲ୍ଲୀ ଗ୍ରାମରେ ଗୋଟିଏ ପ୍ରାଥମିକ ସ୍କୁଲ ପ୍ରତିଷ୍ଠା କରାଗଲା । ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିଆରି ବୃଦ୍ଧ ବୟସରେ କଷ୍ଟ ସ୍ୱୀକାର ପୂର୍ବକ ଉକ୍ତ ବିଦ୍ୟାଳୟ ଉଦ୍‌ଘାଟନ କରିଥିଲେ । ମଦ ଓ ନିଶାଦ୍ରବ୍ୟ ତ୍ୟାଗ କରିବା ପାଇଁ ଆଦିବାସୀମାନଙ୍କୁ ଅନୁରୋଧ କରିଥିଲେ । ସେଦିନ ଅନେକ ଆଦିବାସୀ ଗାନ୍ଧିଜୀଙ୍କ ନାମରେ ଶପଥ କରି ମଦ ତ୍ୟାଗ କରିଥିଲେ ।

ପ୍ରଜାମଣ୍ଡଳ ନିଜ ଉଦ୍ୟମରେ ରାଜ୍ୟରେ ବ୍ୟାପକଭାବେ ଗଠନମୂଳକ କାର୍ଯ୍ୟକ୍ରମ କରି ଚାଲିଥିବା ବେଳେ ତା ୧୬—୨—୪୭ ଦିନ ରାଜାତାଙ୍କ ଦ୍ୱାରା ତା ୭—୨—୪୬ରେ ଘୋଷିତ ହୋଇଥିବା ନୟାଗଡ଼ ଷ୍ଟେଟ ବ୍ୟବସ୍ଥାପକ ସଭା ନିର୍ବାଚନ ତା ୩୧—୩—୪୭ ପୂର୍ବରୁ ଶେଷ କରିବାପାଇଁ ବିଜ୍ଞାପନ ପ୍ରକାଶ କଲେ । ଏଭଳି ଏକ ବ୍ୟବସ୍ଥାପକ ସଭା ରାଜାମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ରାଷ୍ଟ୍ରସଂଘ ଗଠନର ପ୍ରଥମ କାର୍ଯ୍ୟକ୍ରମ ହୋଇଥିବାରୁ ଏବଂ ଏହାର କ୍ଷମତା ଅତ୍ୟନ୍ତ ସିମିତ ଥିବାରୁ ଏଭଳି ବ୍ୟବସ୍ଥାପକ ସଭାରେ ପ୍ରବେଶ କରିବାପାଇଁ ପ୍ରଜାମଣ୍ଡଳ ପ୍ରଥମେ ରାଜି ହେଲାନାହିଁ ବା ଏଥିପ୍ରତି ଅଧିକ ଗୁରୁତ୍ୱ ଦେଲାନାହିଁ । ଦେଶର ରାଜନୈତିକ

ପରିସ୍ଥିତିକୁ ସାମନାରେ ରଖି ରଜା ବ୍ୟବସ୍ଥାସଭା ପ୍ରତିଷ୍ଠା କରିବା ଓ ପ୍ରଜାମଣ୍ଡଳକୁ ଏଥିସହ ସାମିଲ କରିବା କଥା ଚିନ୍ତାକରି ପ୍ରଜାମଣ୍ଡଳ ସହ କଥାବାର୍ତ୍ତା କରି ତାଙ୍କ ଘୋଷଣାର କେତେକ ସଂଶୋଧନ ପ୍ରକାଶ କଲେ । ରଜାଙ୍କ ନୂତନ ଘୋଷଣା ପରେ ଏଭଳି ଏକ କ୍ଷମତାହୀନ ପ୍ରତିଷ୍ଠାନ ସହ ପ୍ରଜାମଣ୍ଡଳ ଯୋଗଦେବା ନ ଦେବା କଥା କାର୍ଯ୍ୟକାରୀ କମିଟିରେ ଆଲୋଚନା ହୋଇ ଅତୀତର ଅଭିଜ୍ଞତାରୁ ନିର୍ବାଚନରେ ଭାଗ ନେବାକୁ ସ୍ଥିର କଲେ ଓ ସେହିଦିନ ନୟାଗଡ଼ ପ୍ରଜାମଣ୍ଡଳର ନୂତନ ପ୍ରତିନିଧିମାନେ ୧୯୪୭ ପାଇଁ ଶ୍ରୀ ଶ୍ରୀଧର ଦାଶଙ୍କୁ ପ୍ରଜାମଣ୍ଡଳର ସଭାପତି ଭାବେ ନିବାଚିତ କଲେ ।

—୦—

# ପୂର୍ବ ଗଡ଼ଜାତ ରାଷ୍ଟ୍ରସଂଘ ଗଠନର ଲକ୍ଷ୍ୟ ଓ ନିୟମାବଳୀ ଜାରି

ସର୍ବସାଧାରଣଙ୍କ ଅବଗତି ପାଇଁ ରଜାମାନଙ୍କ ଦ୍ୱାରା କଳ୍ପିତ ପୂର୍ବ ଗଡ଼ଜାତ ରାଷ୍ଟ୍ରସଂଘ ଗଠନର ବିବରଣୀ ଅନାବଶ୍ୟକ ନ ହେବାରୁ ଏଠାରେ ଦିଆଗଲା ।

ପୂର୍ବ ଗଡଜାତ ସମୂହର ରାଷ୍ଟ୍ରସଂଘର ଶାସନ ବିଧାନ ପ୍ରସ୍ତୁତ କରିବାକୁ ରଜାମାନଙ୍କର ଯେଉଁ ସ୍ପେସାଲ କମିଟି ଗଠିତ ହୋଇଥିଲା ତାହା ୧୧ ପୃଷ୍ଠାବ୍ୟାପୀ ଗୋଟିଏ ସୁପାରିଶ ପତ୍ର ଗତମାସ ୨୩ତାରିଖରେ ପତ୍ରପତ୍ରିକା ମାନଙ୍କରେ ପ୍ରକାଶ ପାଇଁ ଦେଇଛନ୍ତି । ଉକ୍ତ ପତ୍ରରେ ପୂର୍ବ ଗଡଜାତ ମାନଙ୍କର ପ୍ରସ୍ତାବିତ ରାଷ୍ଟ୍ରସଂଘର ଦୁଇଟି ବ୍ୟବସ୍ଥା ସଭା ଗଠନ କରାଯିବାପାଇଁ ପରାମର୍ଶ ଦିଆଯାଇଅଛି । ଉପର ବ୍ୟବସ୍ଥା ସଭାରେ ରାଜ୍ୟସରକାରଙ୍କ ପ୍ରତିନିଧି ଓ ବିଶେଷଜ୍ଞମାନେ ରହିବେ । ନିମ୍ନ ବ୍ୟବସ୍ଥା ସଭା ଏକଲକ୍ଷ ଅଧିବାସୀଙ୍କ ମଧ୍ୟରୁ ଜଣେ ଲେଖାଏଁ ପ୍ରତିନିଧିଙ୍କ ଦ୍ୱାରା ଗଠିତ ହେବ । ଅନୁନ୍ନତ ଓ ଆଦିମ ଅଧିବାସୀଙ୍କ ମଧ୍ୟରୁ ଜମିଦାର, ଖୋରାକ ପୋଷାକଦାର, ଶିକ୍ଷକ, ବ୍ୟବସାୟୀ, ଶ୍ରମିକ ଓ ନାରୀଙ୍କ ମଧ୍ୟରୁ ନିମ୍ନସଭାକୁ ନିର୍ବାଚିତ ହେବେ ।

କେନ୍ଦ୍ରରେ ଯେଉଁ ସୁଦୃଢ଼ ସରକାର ପ୍ରତିଷ୍ଠିତ ହେବ, ତା ହାତରେ ସବୁ ଗୁରୁତର ଶାସନଭାର ନ୍ୟସ୍ତ ରହିବ ଓ ତାହାର ଅଧୀନସ୍ଥ ବିଭିନ୍ନ ରାଜ୍ୟ ଗୁଡ଼ିକର ବୈଶିଷ୍ଟ୍ୟ ସୁରକ୍ଷା କରିବ । ରାଜ୍ୟଗୁଡ଼ିକ ହାତରେ ଭୂରାଜସ୍ୱ, ସ୍ୱାୟତ୍ତଶାସନ ମ୍ୟୁନିସପାଲଟି, ପଞ୍ଚାୟତ, ଆଭ୍ୟନ୍ତରୀଣ ବ୍ୟବସାୟ ବାଣିଜ୍ୟ, ହାଟବଜାର ଆଦିମ ଅଧିବାସୀମାନଙ୍କର ଉନ୍ନତି, ଗ୍ରାମରାସ୍ତା, ଜଳସେଚନ, କୃଷି, ଚୋଚିକିତ୍ସା, ଗୃହଶିଳ୍ପ, ଖଣିଜସମ୍ପଦପାଇଁ ପଟ୍ଟା ଓ ଲାଇସେନ୍ସ ଦେବା ପ୍ରଭୃତିର କ୍ଷମତା ରହିବ । କିନ୍ତୁ ଖଣିଗୁଡ଼ିକର କାର୍ଯ୍ୟ ଯେଉଁ ନିୟମରେ ପରିଚାଳିତ ହେବ, ତାହା ରାଷ୍ଟ୍ରର ବିଷୟୀଭୂତ ରହିବ । ପ୍ରତ୍ୟେକ ରାଜ୍ୟ ଗୋଟିଏ ଲେଖାଏଁ ବ୍ୟବସ୍ଥା କମିଟି ନିଜର ଆକାର ଓ ଲୋକସଂଖ୍ୟା ଅନୁପାତରେ ଗଠନ କରିବେ । ଏହି କମିଟି ନିମ୍ନ ବ୍ୟବସ୍ଥା ପରିଷଦକୁ ପ୍ରତିନିଧି ପଠାଇବେ । ଏହି ଭାବରେ ମଧ୍ୟ ଆଉ କେତେକ ସଭ୍ୟ ନିର୍ବାଚିତ ହୋଇ ନିମ୍ନବ୍ୟବସ୍ଥା ସଭାକୁ ଯିବେ ।

ଯେଉଁ ଭେସାଲ କମିଟି ଦ୍ୱାରା ଏହି ସୁପାରିଶ କରାଯାଉଛି, ତହିଁରେ କୋରିଆ, ଖଇରାଗଡ, କାଙ୍କେର, କଳାହାଣ୍ଡି, ପାଟଣା, ସୋନପୁର ଓ ଶକ୍ତିର ରଜା ମହାରଜାମାନେ ଅଛନ୍ତି । ଷଢେଇକଳା ରାଜା ଚେୟାରମ୍ୟାନ ଅଛନ୍ତି ।

ଏହି ଶାସନ ପଦ୍ଧତିର ବିଶେଷ ବିବରଣୀ ସଂଗ୍ରହ କରି ତାହାକୁ କାର୍ଯ୍ୟରେ ପରିଣତ କରି ଏକ ଶାସନ ଖସଡ଼ା ପ୍ରସ୍ତୁତ କରିବାପାଇଁ ୧୧ଜଣ ସଭ୍ୟଙ୍କୁ ଘେନି ଗୋଟିଏ ଡ୍ରାଫ୍ଟ କମିଟି ଗଠିତ ହେବ । ଏହି ସଭ୍ୟମାନଙ୍କ ଭିତରୁ ୬ଜଣ ରଜ୍ୟମାନଙ୍କ ଭିତରୁ ଅଭିଜ୍ଞ ମନ୍ତ୍ରୀ ରହିବେ । ଅର୍ଥାତ୍ ହିନ୍ଦିଭାଷା ରଜ୍ୟମାନଙ୍କରୁ ୩ଜଣ ବିଶେଷଜ୍ଞ ମନ୍ତ୍ରୀ ଯିବେ । ଏହାଛଡ଼ା ଭାରତ ଶାସନ ବିଧାୟକ ସଭାକୁ ଗଡ଼ଜାତ ଲୋକଙ୍କ ଦ୍ୱାରା ୪ଜଣ ବେସରକାରୀ ସଭ୍ୟ ମଧ୍ୟ ରହୁଛନ୍ତି । ରାଷ୍ଟ୍ରସଂଘ ସମସ୍ତ ରଜାଙ୍କୁ ନେଇ ଗୋଟିଏ ରଜନ୍ୟ ପରିଷଦ ଗଠିତ ହେବ । ଏହା ରଜାମାନଙ୍କ ବୋର୍ଡ, ସଭାପତି ଓ ଉପସଭାପତି ନିର୍ବାଚନ କରିବପାଇଁ ଗୋଟିଏ ନିର୍ବାଚନ କଲେଜରେ ପରିଣତ ହେବ । ସେମାନେ (ସଭାପତି ଓ ଉପସଭାପତି) ଶାସନ ବିଧାନରେ ଗୃହୀତ ହେବା ବିଷୟମାନଙ୍କ ଉପରେ କାର୍ଯ୍ୟ କରିବେ । ୫ଜଣରୁ ୭ଜଣଙ୍କୁ ନେଇ ଗଠିତ ହୋଇଥିବା ରାଜା–ମାନଙ୍କର ବୋର୍ଡ ଏହି ବିଷୟମାନଙ୍କୁ କିମ୍ବା ଶାସନ ସଂସ୍କାର ଦ୍ୱାରା ପ୍ରସ୍ତାବିତ ହୋଇଥିବା କର୍ତ୍ତୃତ୍ୱ କରିବା କିମ୍ବା ପରାମର୍ଶ ଦେବାଭଳି ଅଧିକାର ଏହି ବୋର୍ଡର ରହିବ । ରାଷ୍ଟ୍ରସଂଘ ଏକଜିକ୍ୟୁଟିଭ ମିଳିତ ସେକ୍ରେଟାରୀଏଟ ଏବଂ ମିଳିତ ହାଇକୋର୍ଟ ଘେନି ୟୁନିୟନର ବିଚାରବିଭାଗ ରହିବ । ସୁପ୍ରିମକୋର୍ଟ ଗଠିତ ହେଲେ ହାଇକୋର୍ଟ ଅପିଲମାନ ବିଚାର କରିବେ ।

ଶାସନ ପଦ୍ଧତି ଅନୁଯାୟୀ ୟୁନିଅନର କ୍ଷମତାବଳରେ ବିଭିନ୍ନ କ୍ଷେତ୍ରରେ କରଧାର୍ଯ୍ୟ ହୋଇ ରାଷ୍ଟ୍ରସଂଘର ଅର୍ଥ ବିଭାଗ ଗଢ଼ାଯିବ । ୟୁନିଅନ ତାର ସଂଗଠନକୁ ଦୃଢ଼ ଓ ସମ୍ପୂର୍ଣ୍ଣ କରିବା ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀକାଳରେ ରାଜ୍ୟମାନଙ୍କ ଠାରୁ ସେମାନଙ୍କ ରାଜସ୍ୱ ଅନୁପାତରେ ଚାନ୍ଦା ଆଦାୟ ହୋଇ ଅର୍ଥ ବିଭାଗ କାର୍ଯ୍ୟ ଚାଲିବ । ରାଜାମାନଙ୍କର ବୋର୍ଡରମଞ୍ଜୁର ନେଇ ଓ ବ୍ୟବସ୍ଥା ପରିଷଦ ସହିତ ପରାମର୍ଶ କରି ୟୁନିଅନ ଏକଜିକ୍ୟୁଟିଭ ଏଥିଲାଗି ଗୋଟିଏ ବଜେଟ ପ୍ରସ୍ତୁତ କରିବେ । ୩୬ଗତ ରାଜ୍ୟସମୂହର ହିନ୍ଦିଭାଷୀ ଅଧିବାସୀଙ୍କର ସଂଖ୍ୟା ୟୁନିଅନ ଅନ୍ତର୍ଭୁକ୍ତ ଓଡ଼ିଆଭାଷୀଙ୍କଠାରୁ ସୁପାରିଶ କ୍ଷେତ୍ରରେ ଉପଯୁକ୍ତ ଭାବେ ଶାସନ ଗଢ଼ି ହାତର ପାଞ୍ଚର ବ୍ୟବସ୍ଥା ହୋଇଛି । ତଦ୍ୱାରା ଏକ ଅନ୍ୟର ଶୋଷଣ ଓ ଅନୁ–ଗତ୍ୟରୁ ରକ୍ଷା ପାଇବାକୁ ବିଧାନ ଅଛି । ହିନ୍ଦିଭାଷୀ କିମ୍ବା ଓଡ଼ିଆଭାଷୀ ଲୋକଙ୍କର କୌଣସି ବଡ଼ ସମସ୍ୟା ଉପସ୍ଥିତ ହେଲେ ତାର ସମାଧାନ ଉପସ୍ଥିତ ସର୍ବାଧିକ ପ୍ରତିନିଧିମାନଙ୍କ ଦ୍ୱାରା କରାଯିବ । ପୁଣି ଏଥିପାଇଁ ବିଭିନ୍ନ ଭାଷୀମାନଙ୍କର ଭୋଟ

ପୃଥକ ଭାବରେ ତଥା ଉପସ୍ଥିତ ସର୍ବାଧିକ ସଂଖ୍ୟକ ଦ୍ଵାରା ନିଆଯିବ । ଏହି ସମ୍ପର୍କରେ ସ୍ପେସାଲ କମିଟି ସୁପାରିଶ କରିଛନ୍ତିଯେ ୟୁନିୟନ ଓ ବ୍ୟବସ୍ଥାପକଭା ସଭାପତି ଓ ଉପସଭାପତି ବିଭିନ୍ନଭାଷା ଅଞ୍ଚଳର ପ୍ରତିନିଧିଙ୍କ ଦ୍ଵାରା ସର୍ବଦା ନିର୍ବାଚିତ ହେବେ । ଅର୍ଥାତ୍ ସଭାପତି ଯଦି ଓଡ଼ିଆ ଭାଷା ଅଞ୍ଚଳରୁ ନିର୍ବାଚିତ ହୁଅନ୍ତି, ତେବେ ଉପସଭାପତି ହିନ୍ଦିଭାଷୀ ଅଞ୍ଚଳରୁ ହେବେ । କିମ୍ବା ବିପରୀତ ରୀତିରେ ନିର୍ବାଚନ ହେବେ ।

ଆଦିମ ଅଧିବାସୀଙ୍କର ଲୋକସଂଖ୍ୟା ପୂର୍ବ ଗଡ଼ଜାତ ରାଷ୍ଟ୍ରସଂଘର ? ଅର୍ଥାତ୍ ସର୍ବମୋଟ ୮୦ଲକ୍ଷରୁ ୩୦ଲକ୍ଷ ହେବ । ସେମାନଙ୍କର ତଥା ଅନୁନ୍ନତ-ଙ୍କର ସ୍ଵାର୍ଥର ସୁରକ୍ଷା ଲାଗି ସୁପାରିଶ କରାଯାଇଛିଯେ ରାଷ୍ଟ୍ରସଂଘ ବ୍ୟବସ୍ଥା ପରିଷଦରେ ସେମାନଙ୍କର ଅବସ୍ଥା ଦୃଷ୍ଟେ ବିଶେଷ ପ୍ରତିନିଧିତ୍ଵ ପାଇବେ । ରାଷ୍ଟ୍ରସଂଘର ପରିଚାଳନା ବିଷୟରେ ରାଜା ଲୋକଙ୍କର ପ୍ରତିନିଧିତ୍ଵ ବିଷୟରେ ସ୍ପେସାଲ କମିଟି ସୁପାରିଶ କରିଛନ୍ତି କି ଦାୟିତ୍ଵ ମୂଳକ ସରକାର ହିଁ ରାଷ୍ଟ୍ର-ସଂଘର ଲକ୍ଷ୍ୟହେବ । କେଉଁ ଧରଣର ଦାୟିତ୍ଵ ମୂଳକ ଶାସନ ରାଜ୍ୟଗୁଡ଼ିକର ଅବସ୍ଥାର ଅନୁକୂଳ ହେବ ତାହା ଉପଯୁକ୍ତ ସମୟରେ ସାଧାରଣଙ୍କ ମତ ଅନୁସାରେ ଗଠିତ ହେବ । ପୁଣି ଶିକ୍ଷାର ଉନ୍ନତି ଓ ରାଜନୈତିକ ଚେତନାର ଉଦ୍ରେକ ଦ୍ଵାରା ଏହି ଲକ୍ଷ୍ୟ ଲାଭର ପନ୍ଥା ନିୟନ୍ତ୍ରିତ ହେବ ।

ସୁପାରିଶ ପତ୍ରରେ ଅଛିଯେ ୟୁନିୟନ ବିଷୟଗୁଡ଼ିକ ବ୍ୟତୀତ ବାକି କ୍ଷମତା ରାଜ୍ୟମାନଙ୍କଠାରେ ନ୍ୟସ୍ତ ରହିବ । ରାଷ୍ଟ୍ରସଂଘର ଶାସନ ବିଧାନରେ ପୁନର୍ବିଚାର ଓ ସଂଶୋଧନ ପାଇଁ ଏକ ବିଶେଷ ବ୍ୟବସ୍ଥା ରହିବ । ଅନ୍ତର୍ଭୁକ୍ତ ରାଜ୍ୟଗୁଡ଼ିକ ମଧ୍ୟ ଏକ ନିର୍ଦ୍ଦିଷ୍ଟକାଳପରେ ରାଷ୍ଟ୍ରସଂଘରୁ ଅନ୍ତର ହୋଇଯିବା ପାଇଁ ଏକ ବିଶେଷ ବ୍ୟବସ୍ଥା ଓ ସର୍ତ୍ତଦ୍ଵାରା ଅଧିକାର ପାଇବେ । କୌଣସି ରାଜ୍ୟ ରାଷ୍ଟ୍ରସଂଘରେ ଯୋଗ ଦେଲେ ତାହାର ଶାସନ ବିଧାନ ଉକ୍ତ ରାଜ୍ୟର ରାଜାଙ୍କ ଦ୍ଵାରା ପ୍ରଥମତଃ ଗୃହୀତ ହେବାପରେ ରାଷ୍ଟ୍ରସଂଘ ସମ୍ମତି ଆବଶ୍ୟକ ହେବ । ଅନ୍ତର୍ଭୁକ୍ତ ରାଜ୍ୟମାନଙ୍କର ରାଜାମାନେ ଏକ ମିଳିତ ଘୋଷଣା ଦ୍ଵାରା ରାଷ୍ଟ୍ରସଂଘ ଗଢ଼ିବେ ।

୧୯୩୫ ଭାରତଆଇନ ରାଷ୍ଟ୍ରସଂଘ ତାଲିକା ଅନୁଯାୟୀ ବିଷୟଗୁଡ଼ିକର ପୂର୍ବଗଡ଼ଜାତ ରାଷ୍ଟ୍ରସଂଘ ଦ୍ଵାରା ଗୃହୀତ ହେବାକୁ ସ୍ପେସାଲ କମିଟି ସୁପାରିଶ

କରିଛନ୍ତି । କେବଳ କରଧାର୍ଯ୍ୟ କରିବା ବ୍ୟବସ୍ଥା ରାଷ୍ଟ୍ରସଂଘ ଓ ତାର ଅନ୍ତର୍ଭୁକ୍ତ ରାଜ୍ୟମାନଙ୍କର ପ୍ରୟୋଜନ ଅନୁସାରେ କ୍ଷମତା ପ୍ରାପ୍ତ ଅନୁଷ୍ଠାନ ଦ୍ୱାରା କରାଯାଇ ପାରିବ ।

ଶେଷରେ ସ୍ପେସାଲ କମିଟି ସୁପାରିଶ କରିଛନ୍ତି ଯେ ପୂର୍ବ ଗଡ଼ଜାତର ଭବିଷ୍ୟତ ସମ୍ବନ୍ଧରେ ଆମ୍ଭମାନଙ୍କର ପୂର୍ଣ୍ଣ ବିଶ୍ୱାସ ଅଛି । ଆମ୍ଭମାନଙ୍କର ବିଶ୍ୱାସ ଯେ ରାଷ୍ଟ୍ରସଂଘର ଶାସନ ବିଧାନ ଯଦି ବିଜ୍ଞତା ଓ ଦୂରଦର୍ଶିତାର ସହିତ ପ୍ରସ୍ତୁତ କରାଯାଏ ତାହେଲେ ପୂର୍ବ ଗଡ଼ଜାତର ଭବିଷ୍ୟତ ଉଜ୍ଜ୍ୱଳ ହେବ ଓ ନୂତନ ଭାରତର ଗଠନ ପ୍ରତିକ୍ରିୟାରେ ଏହାର କାର୍ଯ୍ୟ ଗୌରବମୟ ହେବ ।

କିଛିଦିନ ପରେ ପ୍ରଜାମଣ୍ଡଳର ଦାବି ଅନୁରୋଧ କ୍ରମେ ରାଜା ନିର୍ବାଚନ ନିୟମର କେତେକ ସଂଶୋଧନ କରି ବିଜ୍ଞାପନ ପ୍ରକାଶ କରିବାରୁ ଅଞ୍ଚଳ କାଉନସିଲ୍‌ର ଅନୁମୋଦନ କ୍ରମେ ବ୍ୟବସ୍ଥା ସଭା ନିର୍ବାଚନରେ ପ୍ରଜାମଣ୍ଡଳ ଭାଗ ନେବାପାଇଁ ସ୍ଥିର କଲା ଏବଂ ପୂର୍ବ ଗଡଜାତ ରାଷ୍ଟ୍ରସଂଘ ବିରୁଦ୍ଧରେ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣକୁ ନିଜର ଲକ୍ଷ୍ୟ ବୋଲି ଘୋଷଣା କରି ପ୍ରଜାମଣ୍ଡଳ ନିର୍ବାଚନରେ ଅବତୀର୍ଣ୍ଣ ହେଲା ।

—o—

# ପ୍ରଜାମଣ୍ଡଳ ନିର୍ବାଚନ ଇସ୍ତାହାର

ସାମ୍ରାଜ୍ୟବାଦୀ ବ୍ରିଟିଶ କବଳରୁ ଏବଂ ଅନ୍ଧାରି ଗଡଜାତ ଅତ୍ୟାଚାରରୁ ନିଷ୍କୃତି ପାଇବା ଲାଗି ୧୯୩୮ ମସିହାରୁ ଆମ୍ଭେମାନେ ଯେଉଁ ପ୍ରଜାମଣ୍ଡଳ ଗଠନ କରିଛେ, ତାର ବୟସ ଆଜକୁ ଦଶବର୍ଷ ହୋଇଯାଇଛି । ସେହି ଅନୁଷ୍ଠାନକୁ ବଞ୍ଚାଇବା ଲାଗି ଯେଉଁ ଭାଇମାନେ କାର୍ଯ୍ୟ କରୁଛନ୍ତି ସେମାନଙ୍କ ଉପରେ ଏବଂ ସେମାନଙ୍କର ସାହାଯ୍ୟକାରୀମାନଙ୍କ ଉପରେ ଦରବାରଙ୍କ ପକ୍ଷରୁ ଯେଉଁ ନିର୍ମମ ପାଶବିକ ଅତ୍ୟାଚାର କରାଯାଉଛି, ବିଶେଷତଃ ୧୯୪୨ ମସିହାରେ ଯାହା ଘଟିଥିଲା ତାହା ଆପଣମାନଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମନେରହିଥିବ !

ମଣିଷତ, ମଣିଷ । ସେତ ପଶୁ ନୁହେଁ । ବର୍ତ୍ତମାନ ମନୁଷ୍ୟ ତାର ପରିଚୟ ଦେବାର ବେଳ ଆସିଯାଇଛି ; ଯେହେତୁ ଦରବାର ଲୋକ ଶକ୍ତିକୁ ମାନି କାଳର ଗତିକୁ ଦେଖି ଗୋଟିଏ ବ୍ୟବସ୍ଥା ସଭା ପ୍ରତିଷ୍ଠାର ଘୋଷଣା କରିଛନ୍ତି । ଏଥିରେ ଲୋକଙ୍କ ମନନେଇ ପ୍ରଜା ପ୍ରତିନିଧିମାନଙ୍କ ଜରିଆରେ ଶାସନକାର୍ଯ୍ୟ ଚଳାଇବେ ବୋଲି ସ୍ଥିର କରିଅଛନ୍ତି ; ପ୍ରଜାମଣ୍ଡଳ ଜାଣେ ଏହା ଦାୟିତ୍ୱମୂଳକ ଶାସନ ନୁହେଁ ବା ଗଡଜାତ ଓ ଖାସମାହାଲ ମିଶ୍ରଣରେ ତାହା ସାହାଯ୍ୟ କରିପାରିବ ନାହିଁ ବା ପ୍ରଜାଙ୍କର କୌଣସି ମହୋପକାର କରିପାରିବନାହିଁ । ତାହାସତ୍ତ୍ୱେ ପ୍ରଜାମଣ୍ଡଳ ଆସେମ୍ବ୍ଲି ପାଇଁ ଶରଣକୁଳରୁ ଶ୍ରୀଧର ଦାଶ, ଓଡଗାଁରୁ ବାଞ୍ଛାନିଧି ସେନାପତି, ସଦର ଇଟାମାଟି ନୂଆଗାଁ ପାଇଁ ମୁନ୍‌ସି ସାହେବ ଖାଁ, ଦୀନବନ୍ଧୁ ରଥ, କାଶୀନାଥ ବାରିକ, ଅନୁନ୍ନତ ନିର୍ବାଚନ ମଣ୍ଡଳିରୁ ରଘୁନାଥ ଜାନି, ବଣିକ ନିର୍ବାଚନ ମଣ୍ଡଳିରୁ ସୁଦର୍ଶନ ପୃଷ୍ଟି ଏବଂ ଶିକ୍ଷିତ ପେଶାଦାର ନିର୍ବାଚନ ମଣ୍ଡଳିରୁ ଦୀନବନ୍ଧୁ ନାୟକଙ୍କୁ ପ୍ରାର୍ଥୀଭାବେ ଠିଆ କରାଇଅଛନ୍ତି ।

କିନ୍ତୁ, ଭାଇମାନେ, ଏସବୁ ସାମାନ୍ୟ କଥାରେ କିଛି ଲାଭ ନାହିଁ । ଆମର ଅସଲ ଦାବି ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା ଏବଂ ଗଡ଼ଜାତ ଖାସମାହାଲ ମିଶ୍ରଣ ହୋଇ ବିଶାଳ ଉତ୍କଳ ଗଠନ । ଏ ସମସ୍ୟା ଯେ ପର୍ଯ୍ୟନ୍ତ ପୂରଣ ନହୋଇଛି, ସେ ପର୍ଯ୍ୟନ୍ତ ପ୍ରଜାମଣ୍ଡଳ ତଥା ଆମ୍ଭମାନଙ୍କର ବିଶ୍ରାମ ନାହିଁ । ତଥାପି ଆଜି ଯଦି ପ୍ରଜାମଣ୍ଡଳ ପ୍ରାର୍ଥୀ ଠିଆ ନକରାଇବ, ତାହେଲେ କେତେକ ଅସାମାଜିକ ଲୋକ ବ୍ୟବସ୍ଥା ସଭାଭିତରେ ପଶି ଆମ୍ଭମାନଙ୍କର ସମସ୍ତ କ୍ଷତି କରାଇବା ପାଇଁ ଲାଗି-ଯିବେ । ଆହୁରି ମଧ୍ୟ ପ୍ରଜାମଣ୍ଡଳ ବିରାଟ ଶକ୍ତି ସଞ୍ଚୟ କରିଥିଲେ ମଧ୍ୟ ଷ୍ଟେଟ କର୍ତ୍ତୃପକ୍ଷ ତାହାକୁ ପ୍ରତ୍ୟକ୍ଷ ଭାବରେ ସ୍ୱୀକାର କରୁନାହାନ୍ତି ଓ ତାହାର ଦାବିସବୁ ଅବହେଳିତ ହେଉଅଛି । ଏଣୁ ଆସେମ୍ବ୍ଲି ପାଇଁ ଆପଣମାନେ ପ୍ରଜାମଣ୍ଡଳ ପ୍ରାର୍ଥୀଙ୍କୁ ଭୋଟ ଦେଇ ପ୍ରମାଣ କରାଇ ଦିଅନ୍ତୁ ଯେ ଆମ ନୟାଗଡ଼ର ଜନସାଧାରଣ ପ୍ରଜା-ମଣ୍ଡଳର ଭକ୍ତ ଅଟୁ ଏବଂ ପ୍ରଜାମଣ୍ଡଳ ଦାବି ନ୍ୟାୟସଙ୍ଗତ ଅଟେ । ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା, ଗଡ଼ଜାତ, ଖାସମାହାଲ ମିଶ୍ରଣ ଏବଂ ଲୋକଙ୍କ ହାତକୁ ସାର୍ବଭୌମ କ୍ଷମତା ହାସଲ ନହେବା ପର୍ଯ୍ୟନ୍ତ ଆମେ ସବୁ ଶକ୍ତିଦେଇ ପ୍ରଜାମଣ୍ଡଳ ପଛରେ ରହିଅଛୁ ।

—୦—

# ଅଞ୍ଚଳ କାଉନ୍‌ସିଲ୍ ସଭାପତି
# ସାରଙ୍ଗଧର ଦାସଙ୍କ ନିର୍ବାଚନ ନିବେଦନ

ନୟାଗଡ ରାଜ୍ୟର ସମସ୍ତ ଭୋଟର ଭାଇଭଉଣୀମାନଙ୍କୁ ମୋର ବିନୀତ ନିବେଦନ ସେମାନେ ଗତ ଦଶବର୍ଷ ମଧ୍ୟରେ ଯେଉଁ ସଂଗଠନ ଶକ୍ତି ଦେଖାଇଛନ୍ତି, ୧୯୪୬ରେ ଗୋଡିପଡା ଓ ନୂଆଗାଁଠାରେ ଯେଉଁ ନିର୍ଭିକତା ଶାନ୍ତି ଶୃଙ୍ଖଳା ଦ୍ୱାରା ସମସ୍ତଗଡଜାତବାସୀଙ୍କୁ ବାଟଦେଖାଇଛନ୍ତି ସେଥିରେ ସେ ବାହାରୁ ନିମନ୍ତ୍ରିତ ଅତିଥିମାନଙ୍କୁ ମୋହିତ କରିନେଇଛନ୍ତି । ରାଜ୍ୟ ତମାମ ପ୍ରତି ଗାଁରେ ପଞ୍ଚାୟତ ସ୍ଥାପନ କରି ମହାତ୍ମାଗାନ୍ଧିଙ୍କ ବାଟରେ ସଙ୍ଗଠନର ଯେଉଁ ମୂଳଦୁଆ ଥାପି ଦେଇଛନ୍ତି ସେଥିପାଇଁ ପ୍ରତ୍ୟେକେ ଚଳିତ ଏପ୍ରିଲ ମାସ ୧୮ ତାରିଖ ଠାରୁ ୨୩ ତାରିଖ ମଧ୍ୟରେ ତାଙ୍କ ନିଜନିଜ ଥାନା ଅଫିସକୁ ଯାଇ ସେଠାରେ ପୋଲିଂ ବୁଥ୍‌ରେ ପ୍ରଜାମଣ୍ଡଳ ପ୍ରାର୍ଥୀମାନଙ୍କ ବାକ୍‌ସରେ ଭୋଟ ଦେଇ ଦରବାରକୁ ଦେଖାଇ ଦିଅନ୍ତୁ ଯେ ରାଜ୍ୟର ସମସ୍ତ ଭୋଟର ପ୍ରଜାମଣ୍ଡଳକୁ ଟାଣୁଆ କରି ରଖିଛନ୍ତି ।

ନିର୍ଦ୍ଧାରିତ ଦିବସରେ ମନୋନୟନ ପତ୍ର ଦାଖଲ ଓ ଯାଞ୍ଚ ହେବାପରେ ଦେଖାଗଲା ଶ୍ରୀଧର ଦାଶ ଓ ବାଞ୍ଛାନିଧି ସେନାପତି ନିର୍ବିବାଦରେ ନିର୍ବାଚିତ ହୋଇଛନ୍ତି । ଅନ୍ୟାନ୍ୟ ୬ ଗୋଟି ଆସନରେ ପ୍ରଜାମଣ୍ଡଳ ପ୍ରାର୍ଥୀମାନଙ୍କୁ ମୁଖ୍ୟତ ରାଜାଙ୍କ ଦ୍ୱାରା ପରିଚାଳିତ ପ୍ରଜାମଙ୍ଗଳ ପ୍ରାର୍ଥୀଙ୍କ ସହିତ ପ୍ରତିଦ୍ୱନ୍ଦିତା କରିବାକୁ ପଡୁଛି ଉକ୍ତ ଛ'ଟି ସ୍ଥାନରେ ପ୍ରଜାମଣ୍ଡଳ ପ୍ରାର୍ଥୀ ମୁନିସ୍‌ସାହେବ ଖାଁ, ଦୀନବନ୍ଧୁ ରଥ, କାଶୀନାଥ ଜାରିକ ସାଧାରଣ ସ୍ଥାନରୁ ଓ ସୁଦର୍ଶନ ପଣ୍ଡି ବଣିକ ସ୍ଥାନ, ରଘୁନାଥ ଯାନି ଆଦିବାସୀ ହରିଜନ ସ୍ଥାନ ଓ ଦୀନବନ୍ଧୁ ନାୟକ ଶିକ୍ଷିତ ପେଶାଦାର ମଣ୍ଡଳି ସ୍ଥାନରୁ ନିର୍ବାଚିତ ହେଲେ । ପରେ ରାଜା ତାଙ୍କ ପକ୍ଷରୁ ୨ଜଣଙ୍କୁ ସଭ୍ୟ ମନୋନୀତ କଲେ । ମୁରାରୀ ତ୍ରିପାଠୀ ରାଜାଙ୍କଦ୍ୱାରା ବିଧାନସଭାର ସ୍ପିକର ନିଯୁକ୍ତି ହେଲେ । ସମାଜସେବୀ ଲିଙ୍ଗରାଜ ମିଶ୍ର ମଧ୍ୟ ଜଣେ ମନୋନୀତ ସଭ୍ୟ ହୋଇଥିଲେ । ନିର୍ବାଚନରେ କେବଳ ଶିକ୍ଷିତ ପେଶାଦାରମଣ୍ଡଳୀ ପ୍ରାର୍ଥୀଙ୍କ ବ୍ୟତିତ ଆଉ କାହାରି ଅମାନତ ରହିଲାନାହିଁ । ପ୍ରଜାମଣ୍ଡଳ ଲୋକଙ୍କ ସହିତ ଓତପ୍ରୋତ

ଭାବେ ମିଶି ରହିଥିବାରୁ ଏହି ନିର୍ବାଚନରେ ମାତ୍ର ୮୬୦୦ଙ୍କା ଖର୍ଚ୍ଚ କରିବାକୁ ପଡିଥିଲା । ଏଥିରେ ଜନସେବା ଓ ସଙ୍ଗଠନ ଶକ୍ତିର ପରାକାଷ୍ଠା ପ୍ରତିପାଦିତ ହୋଇଗଲା । ତା ୧୫–୫–୪୬ ଦିନ ପ୍ରଜାମଣ୍ଡଳ ସଭାପତିଙ୍କ ଆହ୍ୱାନ କ୍ରମେ ପ୍ରଜାମଣ୍ଡଳ ନିର୍ବାଚିତ ଆସେମ୍ବ୍ଲି ସଭ୍ୟମାନଙ୍କର ଏକ ବୈଠକ ଅନୁଷ୍ଠିତ ହେଲା । ପ୍ରଜାମଣ୍ଡଳର ସଭାପତି ଶ୍ରୀଧର ଦାଶ ଆସେମ୍ବ୍ଲି ଦଳର ଦଳପତି ଓ ବାଞ୍ଛାନିଧି ସେନାପତି ଉପଦଳପତି ଭାବେ ନିର୍ବାଚିତ ହେଲେ ।

ପ୍ରଜାମଣ୍ଡଳ ଆସେମ୍ବ୍ଲି ଦଳର ନେତା ନିର୍ବାଚିତ ହେବାପରେ ଦଳପତି ଶ୍ରୀଧର ଦାଶ ମନ୍ତ୍ରୀମଣ୍ଡଳ ଗଠନ କରିବାପାଇଁ ରାଜାଙ୍କୁ ଅନୁରୋଧ କଲେ । ରାଜା ପ୍ରଜାମଣ୍ଡଳର ଦାବି ପ୍ରତି ନିୟମସଙ୍ଗତଭାବେ କାର୍ଯ୍ୟ ନକରି ପ୍ରଜାମଣ୍ଡଳ ନେତାଙ୍କୁ ମନ୍ତ୍ରୀମଣ୍ଡଳ ଗଠନ କରିବାର ସୁଯୋଗ ଦେଲେନାହିଁ । ନିର୍ବାଚନରେ ନିଜର ମତ ପ୍ରକଟିତ ହେବାପରେ ପ୍ରଜାମଣ୍ଡଳ ମଧ୍ୟ ରାଜାଙ୍କର ଏଭଳି ଏକ କ୍ଷମତାହୀନ ମନ୍ତ୍ରୀମଣ୍ଡଳ ପାଇଁ ବ୍ୟଗ୍ରତା ପ୍ରକାଶ ନକରି ସ୍ୱକର୍ମପନ୍ଥାରେ ଅବତୀର୍ଣ୍ଣ ହେଲେ ।

ବ୍ରିଟିଶ ପାର୍ଲିମେଣ୍ଟରେ ଭାରତ ସ୍ୱାଧୀନତା ଆଇନ ଏତିକିବେଳେ ପାସ୍ ହେଲା । ଏହି ଆଇନ ଯୋଗୁଁ ଭାରତବର୍ଷରେ ଭାରତ ଓ ପାକିସ୍ଥାନ ନାମରେ ଦୁଇଟି ସାର୍ବଭୌମ ଦେଶ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଭାରତରେ ଥିବା ୬୬୨ ଦେଶୀୟ ରାଜ୍ୟର ରାଜା ମହାରାଜା ଓ ନବାବମାନେ ସାର୍ବଭୌମ କ୍ଷମତାର ଅଧିକାରୀ ହୋଇଗଲେ । ଗଡଜାତମାନଙ୍କର ୮କୋଟି ଲୋକଙ୍କ ସମ୍ପର୍କରେ ଉକ୍ତ ଆଇନରେ କିଛି ନଥିଲା । ଦେଶସାରା ଏଭଳି ତୀବ୍ର ରାଜନୈତିକ ଘନଘଟା ଲାଗିଥିବାବେଳେ ଗଡଜାତ ଲୋକଙ୍କ କଥା କେହି ବିଚାର କରୁନଥିଲେ । ଏଣୁ ଗଡଜାତ ଲୋକେ ନିଜର ଅଧିକାର ସାବ୍ୟସ୍ତ ପାଇଁ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନରେ ଲାଗିପଡିଲେ ।

ନିର୍ବାଚନରେ ନୟାଗଡ ପ୍ରଜାମଣ୍ଡଳ ରାଜନ୍ୟବର୍ଗଙ୍କ ସହିତ କଳ୍ପିତ ରାଷ୍ଟ୍ରସଂଘର ବିରୋଧକରି ଗଡଜାତଗୁଡ଼ିକର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ଉପରେ ନିର୍ବାଚନ ଲଢି ସମସ୍ତ ସ୍ଥାନରେ ଜୟଯୁକ୍ତ ହେବାରୁ ରାଷ୍ଟ୍ରସଂଘ ବା ୟୁନିୟନ ଗଠନ କରିବାପାଇଁ ଚକ୍ରାନ୍ତ ଚଳାଇଥିବା ରାଜାମହାରାଜାଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟିହେଲା । ଗଡଜାତର ପ୍ରଜାମଣ୍ଡଳମାନଙ୍କ ମଧ୍ୟରେ ଏଥିପାଇଁ ବିପୁଳ ଆନନ୍ଦ ପ୍ରକାଶ ପାଇଲା । ହିନ୍ଦିଭାଷୀ ୩୬ଗଡର ଗଡଜାତ ଓ ଓଡ଼ିଶା ଗଡଜାତର ପ୍ରଜାମଣ୍ଡଳମାନେ ନୟାଗଡ ପ୍ରଜାମଣ୍ଡଳକୁ ଅଭିବାଦନ ଜ୍ଞାପନ

କଲେ । ଓଡ଼ିଆଭାଷୀ ଗଡ଼ଜାତଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣ ପାଇଁ ଯେ ଏଭଳି ଆନ୍ଦୋଳନ ହେଉଥିଲା । ସେହିଗତ ଅଞ୍ଚଳର ହିନ୍ଦିଭାଷୀ ପ୍ରଜାମଣ୍ଡଳମାନେ ସେହିଭଳି ତାଙ୍କ ରାଜ୍ୟକୁ ହିନ୍ଦିଭାଷୀ ମଧ୍ୟପ୍ରଦେଶ ସହିତ ସାମିଲ କରିବାକୁ ଆନ୍ଦୋଳନ କରୁଥିଲେ ।

ନୟାଗଡ଼ ରାଜ୍ୟ ବିଧାନସଭାର ସମସ୍ତ ନିର୍ବାଚନ ମଣ୍ଡଳୀରେ ପ୍ରଜାମଣ୍ଡଳ ପ୍ରାର୍ଥୀମାନେ ଜୟଯୁକ୍ତ ହେବାରୁ ତା୪-୫-୪୭ଦିନଟିକୁ ପ୍ରଜାମଣ୍ଡଳର ବିଜୟଦିବସ ରୂପେ ପାଳନ କରାଗଲା । ପ୍ରୋକ୍ତଦିନ ରାଜ୍ୟର ବଡ଼ବଡ଼ ଗ୍ରାମମାନଙ୍କରେ ହଜାର ହଜାର ଲୋକ ଜମାହୋଇ ଶୋଭାଯାତ୍ରା ଓ ସଭାକରି ବିଜୟଦିବସ ପାଳନ କରିଥିଲେ । ତା ୨୯-୪-୪୭ ପ୍ରଜାମଣ୍ଡଳ କାର୍ଯ୍ୟକାରୀକମିଟି ମେ ମାସ ୨୯ ଓ ୩୦ ଦୁଇଦିନ ଇଟାମାଟିଠାରେ ପ୍ରଜାମଣ୍ଡଳ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବାପାଇଁ ପ୍ରସ୍ତାବ କଲେ । ଉକ୍ତ ପ୍ରସ୍ତାବମତେ ନୟାଗଡ଼ ଥାନା ପ୍ରଜାମଣ୍ଡଳ କମିଟିର ସଭାପତି ମୁନ୍‌ସିସାହେବ ଖାଁଙ୍କ ସଭାପତିତ୍ୱରେ ଏକ ଅଭ୍ୟର୍ଥନା ସମିତି ଗଠନ କରାଗଲା । ଜଗନ୍ନାଥ ବେହେରା ଓ ଭ୍ରମରବର ମାଝୀ ଅଭ୍ୟର୍ଥନା ସମିତିର ଯୁଗ୍ମ ସମ୍ପାଦକ ଭାବେ ନିର୍ବାଚିତ ହେଲେ । ନୟାଗଡ଼ ଥାନା ପ୍ରଜାମଣ୍ଡଳ କମିଟିର ସମସ୍ତ ସଭ୍ୟ ଏବଂ ଇଟାମାଟି ଗ୍ରାମର ବାଞ୍ଛାନିଧି ପଣ୍ଡା, ଚିନ୍ତାମଣି ବରଡ଼ ପ୍ରମୁଖ ଅଭ୍ୟର୍ଥନା କମିଟିର ସଭ୍ୟଭାବେ ମନୋନୀତ ହୋଇଥିଲେ । ତା ୧୭-୫-୪୭ଦିନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ବୈଠକ ବସି ଅଧିବେଶନପାଇଁ ପ୍ରସ୍ତାବ ଚିଠା କରି ଗ୍ରହଣ କରିଥିଲେ । ଅଭ୍ୟର୍ଥନା କମିଟିର ବୈଠକ ହୋଇ ଅଧିବେଶନର ଆୟୋଜନ ପାଇଁ ବିଚାରଆଲୋଚନା କରିଥିଲେ ୯ବଂ ପ୍ରଜାମଣ୍ଡଳର ଅଧିବେଶନ ପୂର୍ବ ନିର୍ଦ୍ଧାରିତ ଦିବସରେ ନହୋଇ ଜୁନ୍ ୧ ଏବଂ ୨ ତାରିଖରେ ହେବାର ସ୍ଥିର ହେଲା ।

—o—

# ନୟାଗଡ଼ ପ୍ରଜାମଣ୍ଡଳର ୧୦ମ ବାର୍ଷିକ ବା ୪ର୍ଥ ଅଧିବେଶନ

ଅଭ୍ୟର୍ଥନା ସମିତି ମେ ମାସ ଶେଷ ସୁଦ୍ଧା ପ୍ରତିନିଧି ନିବାସ, ସଭାମଣ୍ଡପ ଏବଂ ପ୍ରଦର୍ଶନୀ ପାଇଁ ଆବଶ୍ୟକୀୟ ଗୃହ ନିର୍ମାଣ କାର୍ଯ୍ୟ ଶେଷ କରିଥିଲେ ଏବଂ ଲକ୍ଷେ ଲୋକଙ୍କର ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ । ତା ୧-୬-୪୭ ଦିନ ସକାଳୁ ଏକ ବିରାଟ ଶୋଭାଯାତ୍ରା ଇଟାମାଟି ଗ୍ରାମ ପରିକ୍ରମା କରି ସଭାମଣ୍ଡପରେ ଉପସ୍ଥିତ ହେବାପରେ ପୂର୍ବାହ୍ଣ ୮ ଘଣ୍ଟା ସମୟରେ ପ୍ରଜାମଣ୍ଡଳର ନବନିର୍ବାଚିତ ସଭାପତି ଶ୍ରୀଧର ଦାଶ ବିରାଟ ଜନସମାଗମ ମଧ୍ୟରେ ପତାକା ଉତ୍ତୋଳନ କରି ଭବିଷ୍ୟତ ଆନ୍ଦୋଳନ ପାଇଁ ପ୍ରସ୍ତୁତ ରହିବାକୁ ଆହ୍ୱାନ ଦେଇଥିଲେ । ପତାକା ଉତ୍ତୋଳନ ପରେ ୫ ସହସ୍ରାଧିକ ଯୁବ ସ୍ୱେଚ୍ଛାସେବକ ବାହିନୀ ସତ୍ୟବାଦୀ ମିଶ୍ର, ଭଗିରଥୀ ମିଶ୍ର ଓ ବାସୁଦେବ ମହାପାତ୍ରଙ୍କ ନେତୃତ୍ୱରେ ମାର୍ଚ୍ଚ କରି ପ୍ରଜାମଣ୍ଡଳ ସଭାପତିଙ୍କୁ ଅଭିବାଦନ ଜ୍ଞାପନ କରିଥିଲେ । ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ବୈଠକ ବସି ଅଧିବେଶନର ଆଲୋଚନାପାଇଁ ଆସିଥିବା କେତେକ ପ୍ରସ୍ତାବ ଗ୍ରହଣ କରିଥିଲେ । ଅପରାହ୍ଣ ୭ ଘଣ୍ଟା ସମୟରେ ଓଡ଼ିଶା ଗଡ଼ଜାତ ଅଞ୍ଚଳ କାଉନ୍‌ସିଲ୍‌ର ସଭାପତି ଶ୍ରୀ ସାରଙ୍ଗଧର ଦାସ ପ୍ରଜାମଣ୍ଡଳ ସଭାପତିଙ୍କ ଅନୁରୋଧକ୍ରମେ ପ୍ରଜାମଣ୍ଡଳର ୪ର୍ଥ ଅଧିବେଶନ ଉଦ୍‌ଘାଟନ କରି ବର୍ତ୍ତମାନ ଦେଶର ପରିସ୍ଥିତି ଓ ଭବିଷ୍ୟତରେ ଯେଉଁ ସଙ୍କଟମୟ ପରିସ୍ଥିତି ଆସିବା ଦେଖାଗଲାଣି ସେଥିପାଇଁ ସମସ୍ତେ ସକ୍ରିୟ ଏବଂ ସତର୍କ ରହିବାକୁ ଆହ୍ୱାନ ଦେଇଥିଲେ । ପ୍ରଜାମଣ୍ଡଳର ସଭାପତି ଶ୍ରୀ ଶ୍ରୀଧର ଦାଶ ଅଧିବେଶନରେ ସଭାପତିତ୍ୱ କରିଥିଲେ । ସୋନପୁର, ବୌଦ୍ଧ, ଢେଙ୍କାନାଳ, ନୀଳଗିରି, ଖଣ୍ଡପଡ଼ା, ଦଶପଲ୍ଲା ଓ ରଣପୁର ପ୍ରଜାମଣ୍ଡଳମାନଙ୍କର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଅଧିବେଶନରେ ଯୋଗ ଦେଇଥିଲେ । ଉଦ୍‌ଘାଟନ ପରେ ଅଭ୍ୟର୍ଥନା ସମିତିର ସମ୍ପାଦକ ସ୍ୱାଗତ ଅଭିଭାଷଣ ପାଠ କରିଥିଲେ । ଏହାପରେ ମୃତ୍ୟୁ ଲଭିଥିବା ପ୍ରଜାମଣ୍ଡଳ କର୍ମୀ ଗୋପୀନାଥ ପରିଡ଼ା, ରଘୁନାଥ ତ୍ରିପାଠୀ, ସୋନପୁରର କର୍ମୀ ଗୁରୁବାରୀ ମେହେର ଏବଂ ବିହାର ଶ୍ରମିକ ଆନ୍ଦୋଳନର ରଥୀ ଅଧ୍ୟାପକ ଅବ୍‌ଦୁଲ ବାରିଙ୍କ ମୃତ୍ୟୁରେ ସଭାପତିଙ୍କ ପକ୍ଷରୁ ଶୋକ ପ୍ରସ୍ତାବ ଆଗତ କରାଯାଇ ସର୍ବସମ୍ମତିକ୍ରମେ ଗୃହୀତ ହେବାପରେ ଅଧିବେଶନ ତା ୨-୬-୪୭କୁ ସ୍ଥଗିତ ରହିଲା ।

ତା ୨-୬-୪୭ ପୂର୍ବାହ୍ଣ ୭ ଘଣ୍ଟା ସମୟରୁ ବିଷୟ ନିର୍ବାଚନ କମିଟିର ବୈଠକ ହୋଇ ଅଧିବେଶନପାଇଁ କାର୍ଯ୍ୟକାରୀ କମିଟି ଗ୍ରହଣ କରିଥିବା ପ୍ରସ୍ତାବମାନ ଗ୍ରହଣ କରିଥିଲେ । ଅପରାହ୍ଣ ୪ ଘଣ୍ଟା ସମୟରେ ୫୦ ହଜାର ଲୋକଙ୍କ ଉପସ୍ଥିତିରେ ପ୍ରଜାମଣ୍ଡଳର ଖୋଲାଅଧିବେଶନ ଆରମ୍ଭ ହେଲା । ପ୍ରଜାମଣ୍ଡଳର ସମ୍ପାଦକ ଲକ୍ଷ୍ମଣ ମହାରଣା ବାର୍ଷିକ ବିବରଣୀ ପାଠକରି ଗ୍ରାମ

ପଞ୍ଚାୟତ ଏବଂ ପ୍ରଜାମଣ୍ଡଳ ଯୁବବାହିନୀର ବିବରଣୀ ଉପସ୍ଥାପିତ କରିଥିଲେ । ବିପୁଳ ହର୍ଷଧ୍ୱନି ମଧ୍ୟରେ ସମ୍ପାଦକୀୟ ବିବରଣୀ ବିନାବାଧାରେ ଗୃହୀତ ହୋଇଥିଲା । ପ୍ରଜାମଣ୍ଡଳ ସଭାପତିଙ୍କ ଅନୁରୋଧ କ୍ରମେ ଶ୍ରୀ ବାଞ୍ଛାନିଧି ସେନାପତି ୯କ ରାଜନୈତିକ ପ୍ରସ୍ତାବ ଆଗତ କରି କହିଲେ— ୧ମ ପ୍ରସ୍ତାବ—୧୯୪୮ ମସିହା ଜୁନ୍ ମାସରେ ଭାରତୀୟ ଗଡ଼ଜାତ ସମେତ ସମସ୍ତ ଭାରତ ବର୍ଷ ଯେପରି ଗୋଟିଏ ସ୍ୱାଧୀନଦେଶ ହୋଇରହିପାରିବ, ସେଥିପାଇଁ ଏକଚରମ ଆନ୍ଦୋଳନରେ ଭାଗନେବା ଉଦ୍ଦେଶ୍ୟରେ ଗଡ଼ଜାତମାନଙ୍କର ପ୍ରଜାମଣ୍ଡଳ ଭଳି ଲୋକପ୍ରତିନିଧି ସଂସ୍ଥାସବୁ ତାଙ୍କ ଲୋକଙ୍କୁ ଏକତାବଦ୍ଧ ଓ ସଙ୍ଗଠିତ କରି ତାଙ୍କର ଶକ୍ତିକୁ ଶୃଙ୍ଖଳିତ କରିବାପାଇଁ ଏବଂ ସବୁମତେ ପ୍ରସ୍ତୁତ ହେବାପାଇଁ ଅଖିଳଭାରତ ଦେଶୀୟରାଜ୍ୟ ଲୋକପରିଷଦର ଗୋଆଳିୟର ଅଧିବେଶନ ଆମକୁ ଡାକଦେଇ ଯେଉଁ ପ୍ରସ୍ତାବ ଗ୍ରହଣ କରିଛନ୍ତି, ତାକୁ ନୟାଗଡ଼ର ପ୍ରଜାମଣ୍ଡଳର ଏହି ୪ର୍ଥ ଅଧିବେଶନ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଛନ୍ତି । ତଦନୁଯାୟୀ ଏହି ଅଧିବେଶନ ଏ ନୟାଗଡ଼ ଦରବାରଙ୍କଠାରେ ଦୃଢ଼ଦାବି କରୁଛିଯେ (କ) ୧୯୪୭ ଡିସେମ୍ବର ୩୧ତାରିଖ କିମ୍ବା ତତ୍‌ପୂର୍ବ କୌଣସି ନିର୍ଦ୍ଦିଷ୍ଟ ତାରିଖରେ ନୟାଗଡ଼ରେ ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା କରିବେ ବୋଲି କଳିତ ଜୁନ୍ ମାସ ମଧ୍ୟରେ ରାଜା ଘୋଷଣା କରନ୍ତୁ । [ଖ] ତହିଁ ସଙ୍ଗେ ସଙ୍ଗେ ସାବାଳକ ଭୋଟ ଦ୍ୱାରା ବିଧିମତ ନିର୍ବାଚନରେ ନିର୍ବାଚିତ ଲୋକପ୍ରତିନିଧିମାନଙ୍କ ଦ୍ୱାରା ଶାସନ ବିଧାନ ରଚନା କରିବାର ବ୍ୟବସ୍ଥା କରନ୍ତୁ । (ଗ) ଏଥିରେ ରାଜାଙ୍କର ଆନ୍ତରିକତା ନିଦର୍ଶନ ସ୍ୱରୂପ ଯେଉଁ ବେସରକାରୀ ବ୍ୟକ୍ତି ଉପରେ ଲୋକଙ୍କର ବିଶ୍ୱାସ ଓ ଆସ୍ଥା ରହିଛି, ସେହିମାନଙ୍କୁ ନେଇ ଏକ ମଧ୍ୟବର୍ତ୍ତିକାଳୀନ ଜନପ୍ରିୟ ମନ୍ତ୍ରୀମଣ୍ଡଳ ଗଢି ଶାସନ ପରିଚାଳନାର ପ୍ରତ୍ୟକ୍ଷ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରନ୍ତୁ ।

ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନର ଗୁରୁଭାର ଗ୍ରହଣ କରିବାପାଇଁ ସବୁପ୍ରକାର ପ୍ରସ୍ତୁତ ହେବା ସକାଶେ ଏହି ଅଧିବେଶନ ନୟାଗଡ଼ର ଜନସାଧାରଣଙ୍କୁ ଆହ୍ୱାନ କରୁଛି ଯଦିବା ନୟାଗଡ଼ ଦରବାର ନିର୍ଦ୍ଦିଷ୍ଟ ସମୟ ଭିତରେ ଉପରୋକ୍ତ ଘୋଷଣା ନ କରନ୍ତି ତେବେ ଆମ ରାଜ୍ୟରେ ଗୋଟିଏ ଚରମ ଆନ୍ଦୋଳନ କରିବାକୁ ହେବ ଏବଂ ୧୯୪୮ ମସିହା ବ୍ରିଟିଶ ଶକ୍ତି ଭାରତ ବର୍ଷ ଛାଡ଼ିଯିବାପରେ ଯେଉଁ ସାର୍ବ- ଭୌମ କ୍ଷମତା ଗଡ଼ଜାତ ରାଜ୍ୟମାନଙ୍କୁ ଫେରିଆସିବା କଥା ତାକୁ ଜନତା ତୁରନ୍ତ ଦଖଲ କରିବା ଉଦ୍ଦେଶ୍ୟରେ ଆଜଠୁଁ ସବୁମତେ ପ୍ରସ୍ତୁତ ହେବା ଜରୁରୀ ଆବଶ୍ୟକ । ଏସବୁ ଦୃଷ୍ଟିରୁ ସଂପ୍ରତି ଓଡିଶା ଓ ଛତିଶଗଡ଼ ଅଞ୍ଚଳ କାଉନ୍‌ସିଲ୍‌ରେ ରାଜନନ୍ଦଗାଓଁ ବୈଠକରେ ଗୃହୀତ କାଉନ୍‌ସିଲ୍ ଅଫ୍ ଆକ୍‌ସନକୁ ପୂର୍ଣ୍ଣ ସମର୍ଥନ କରୁଅଛି ଏବଂ କାଉନ୍‌ସିଲ୍‌ର ନିର୍ଦ୍ଦେଶକୁ କାର୍ଯ୍ୟରେ ପରିଣତ କରିବା ସକାଶେ ଆବଶ୍ୟକୀୟ ଉପାୟ ଅବଲମ୍ବନ କରିବାକୁ ଏହି ଅଧିବେଶନ ନୟାଗଡ଼ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିକୁ ପୂର୍ଣ୍ଣ କ୍ଷମତା ଦେଉଛି । ଏହି ଅଧିବେଶନ ନୟାଗଡ଼ ଜନସାଧାରଣଙ୍କୁ ପରାମର୍ଶ ଦେଉଛି ଯେ ସେମାନେ ଏହି ଘଡ଼ିସନ୍ଧି ବେଳେ କାର୍ଯ୍ୟକାରୀ କମିଟିର ନିର୍ଦ୍ଦେଶକୁ ପୂର୍ଣ୍ଣପ୍ରାଣରେ ଅନୁସରଣ କରିବାପାଇଁ

ଧୈର୍ଯ୍ୟ ସହକାରେ ଶୃଙ୍ଖଳିତ ଓ ସଙ୍ଗଠିତ ହୋଇରହନ୍ତୁ । ଶ୍ରୀ ନାରାୟଣ ନନ୍ଦଙ୍କ ସମର୍ଥନ ପରେ ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । କୁବେର ସାହୁଙ୍କ ପ୍ରସ୍ତାବ ଓ ଉଦୟନାଥ ପୃଷ୍ଟି, ଶୁକ୍ର ବେହେରାଙ୍କ ସମର୍ଥନକ୍ରମେ ୩ୟ ପ୍ରସ୍ତାବ ବିଚାରପାଇଁ ଅଣାଗଲା । ୩ୟ ପ୍ରସ୍ତାବ—ବିଭିନ୍ନ ସୂତ୍ରରୁ ସମ୍ବାଦ ମିଳୁଛି ଯେ ପଲିଟିକାଲ ଡିପାର୍ଟମେଣ୍ଟ ହାତରେ ଯେଉଁ କ୍ଷମତା ଥିଲା ସେହି ଡିପାର୍ଟମେଣ୍ଟ ଉଠି ଯାଉଥିବାରୁ ଭାରତ ସରକାର ତାକୁ ଏଣିକି ରାଜାମାନେ ଗଢିଥିବା ସେଣ୍ଟ୍ରାଲ ବୋର୍ଡ ଅଫ୍ କଣ୍ଟ୍ରୋଲ (Central Board of Control) ହାତରେ ସମର୍ପି ଦେଉଛନ୍ତି । ସାର୍ବଭୌମ କ୍ଷମତା ପାଇବାକୁ ପ୍ରକୃତରେ ପ୍ରଜାମାନେ ହକ୍‌ଦାର ଅଟନ୍ତି । ରାଜାମାନେ ନୁହନ୍ତି । ଏହି ସେଣ୍ଟ୍ରାଲ ବୋର୍ଡ ଅଫ୍ କଣ୍ଟ୍ରୋଲରେ ଲୋକପ୍ରତିନିଧି ନଥିବାରୁ ଏହି ବୋର୍ଡ ଯାହା ନିୟମକାନୁନ୍ କରିବେ, ପ୍ରଜା—ସାଧାରଣ ସେଥିରେ ଆବଦ୍ଧ ହୋଇ ରହିପାରିବେନାହିଁ । ଏହି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେବାପରେ ଅନ୍ୟାନ୍ୟ ୮ଟି ପ୍ରସ୍ତାବ ଗୃହୀତ ହୋଇ ବନ୍ଦେମାତରମ୍ ସଙ୍ଗୀତଗାନ ପରେ ପ୍ରଜାମଣ୍ଡଳ ଅଧିବେଶନ ଭାଙ୍ଗ ହେଲା । ସମସ୍ତ ପ୍ରସ୍ତାବ ଗୃହୀତ ହେବାପରେ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ଗଠନ କରାଗଲା ବୋଲି ସଭାପତି ଶ୍ରୀ ଶ୍ରୀଧର ଦାଶ ଘୋଷଣା କଲେ । ଲକ୍ଷ୍ମଣ ମହାରଣା ଉପସଭାପତି, କୁବେର ସାହୁ ସମ୍ପାଦକ, ଉଦୟନାଥ ପୃଷ୍ଟି କୋଷାଧ୍ୟକ୍ଷ, ଶୁକ୍ର ବେହେରା, ମୁନ୍‌ସି ସାହେବ ଖାଁ, ବାଞ୍ଛାନିଧି ସେନାପତି, ଆନନ୍ଦଚନ୍ଦ୍ର ସ୍ୱାଇଁ, ରଘୁନାଥ ଜାନି, ଦାମୋଦର ବେହେରା, ଭରତ ସାହୁ ଓ ପୂର୍ଣ୍ଣଚନ୍ଦ୍ର ମଲିକ, ବିନାୟକ ମିଶ୍ରଙ୍କୁ ସଭ୍ୟ ମନୋନୀତ କରାଯାଇଥିଲା ।

ପ୍ରଜାମଣ୍ଡଳ ଅଧିବେଶନ ସମାପ୍ତ ହେବାପରେ ପରେ ନୟାଗଡର ୬ଶହ ଗ୍ରାମ ପଞ୍ଚାୟତର ବାର୍ଷିକ ସମ୍ମିଳନୀ ଅଧିବେଶନ ପେଣ୍ଡାଲରେ ଲକ୍ଷ୍ମଣ ମହାରଣାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ପ୍ରଜାମଣ୍ଡଳର ସଭାପତି ସମ୍ମିଳନୀ ଉଦ୍‌ଘାଟନ କରିଥିଲେ ଏବଂ ପ୍ରଜାମଣ୍ଡଳର ସମ୍ପାଦକ କୁବେର ସାହୁ ବାର୍ଷିକ ବିବରଣୀ ପାଠକରି ଗତବର୍ଷକର ଗ୍ରାମ ପଞ୍ଚାୟତ କାର୍ଯ୍ୟ ସମ୍ପର୍କରେ ସୂଚନା ଦେଇଥିଲେ । ବର୍ଷକ ମଧ୍ୟରେ ପଞ୍ଚାୟତମାନେ ୩୬୬୧ଗୋଟି ମୋକଦ୍ଦମା ନିଷ୍ପତ୍ତି କରିଥିଲେ । ୧୭ଗୋଟି ପୁରୁଣା ପୋଖରୀର ପଙ୍କୋଦ୍ଧାର କରି—ଥିଲେ । ଗ୍ରାମ ଦାଣ୍ଡମାନ ମରାମତି କରାଇବା ସଙ୍ଗେ ସଙ୍ଗେ ୪୧ମାଇଲ ନୂତନ ରାସ୍ତାମଧ୍ୟ ନିର୍ମାଣ କରାଇଥିଲେ । ଏଥିଲାଗି ସମ୍ପାଦକ ପଞ୍ଚାୟତମାନଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ ।

ବର୍ତ୍ତମାନର ପଞ୍ଚାୟତର ବର୍ତ୍ତମାନ ଯାହା କ୍ଷମତା ଅଛି, ତାକୁ ବଢାଇ ଗ୍ରାମର ସମସ୍ତ ଦାୟିତ୍ୱ ପଞ୍ଚାୟତ ହାତରେ ଅର୍ପଣ କରିବାପାଇଁ ଏକ ପ୍ରସ୍ତାବ ଆସି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଆସନ୍ତା ପଞ୍ଚାୟତ ନିର୍ବାଚନ ପରେ ଏହି ପ୍ରସ୍ତାବର ବିଚାର କରାଯିବ ବୋଲି ପ୍ରଜାମଣ୍ଡଳ ସଭାପତି କହିଥିଲେ । ଅନ୍ୟାନ୍ୟ କାର୍ଯ୍ୟକ୍ରମ ସରିବାପରେ ରାତି ୧୨ଟା ସମୟରେ ସମ୍ମିଳନୀ ଉଦ୍‌ଯାପିତ ହେଲା ।

ଃ୦ଃ

# ଭାରତର ପ୍ରଥମ ସ୍ୱାଧୀନତା ଦିବସ ଓ ଗଡଜାତ

ଇଂରେଜ ସରକାର ଭାରତବର୍ଷକୁ ସ୍ୱାଧୀନତା ଦେବାପାଇଁ ଆଇନ ପାଶ୍ କରି ତା ୧୫।୮।୪୬ଦିନ ଔପନିବେଶିକ ସ୍ୱାଧୀନତା ଦେବା ସଙ୍ଗେ ସଙ୍ଗେ କ୍ଷମତା ହସ୍ତାନ୍ତର କରିବାପାଇଁ ଘୋଷଣା କଲେ । ଉକ୍ତ ଆଇନରେ ଗଡଜାତମାନଙ୍କର ଆଠକୋଟି ଲୋକଙ୍କର ସାର୍ବଭୌମ କ୍ଷମତାକୁ ଇଂରେଜ ସରକାର ଅସ୍ୱୀକାର କରି ଉକ୍ତ ଅଧିକାର ୬୬୨ଜଣ ରଜାଙ୍କ ହସ୍ତରେ ଅର୍ପଣ କରିଦେଲେ । ରଜାମାନେ ଏହି ସୁବର୍ଣ୍ଣ ସୁଯୋଗରେ ଭାରତ ଓ ପାକିସ୍ଥାନଭଳି ଏକ ସ୍ୱାଧୀନ ରାଷ୍ଟ୍ର ଗଠନ କରିବାର କଳ୍ପନାକରି ଯୋଜନାମାନ ପ୍ରସ୍ତୁତ କରିବାରେ ଲାଗିଲେ । ଗଣତନ୍ତ୍ରର ଧ୍ୱଜାଧାରୀ, ଇଂରେଜ ସରକାରଙ୍କର ଏଭଳି ଅଗଣତାନ୍ତ୍ରିକ ଅପକୌଶଳକୁ ପଣ୍ଡ କରିବାପାଇଁ ଗଡଜାତମାନଙ୍କରେ ପ୍ରବଳ ଜନବିକ୍ଷୋଭ ପ୍ରକାଶ ପାଇଲା । ଇଂରେଜ ସରକାର ଛାଡଯାଇଥିବା ସାର୍ବଭୌମ କ୍ଷମତାକୁ ଯେ କୌଣସି ଉପାୟରେ ଲୋକମାନଙ୍କ ହାତକୁ ଆଣିବାପାଇଁ ପ୍ରଜାମଣ୍ଡଳଗୁଡିକ ପ୍ରସ୍ତୁତ ହୋଇ ରହିବାକୁ ନିଖିଳଭାରତ ଲୋକପରିଷଦ ନିର୍ଦ୍ଦେଶ ଦେବାରୁ ନୟାଗଡ ପ୍ରଜାମଣ୍ଡଳ ଚରମ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହୋଇ ରହିବାକୁ ନୟାଗଡର ଜନସାଧାରଣଙ୍କୁ ନିର୍ଦ୍ଦେଶ ଦେଲେ ।

ପ୍ରଜାମଣ୍ଡଳର ଇଟାମାଟି ଅଧିବେଶନରେ ଗୃହୀତ ପ୍ରସ୍ତାବକୁ ତୁରନ୍ତ କାର୍ଯ୍ୟକାରୀ କରାଇବା ପାଇଁ ଏବଂ ସଙ୍ଗେ ସଙ୍ଗେ ନିର୍ବାଚିତ ପ୍ରତିନିଧିମାନଙ୍କୁ ମଧ୍ୟବର୍ତ୍ତୀକାଳୀନ କ୍ଷମତା ହସ୍ତାନ୍ତର କରିବାପାଇଁ ପ୍ରଜାମଣ୍ଡଳ ସଭାପତି ନୟାଗଡ ରଜାଙ୍କୁ ଦାବିପତ୍ର ଦେଲେ । ରଜା କୌଣସି ଉତ୍ତର ନଦେଇ ନିରବ ରହିବାରୁ ପ୍ରଜାମଣ୍ଡଳ ପକ୍ଷରୁ ପୁନର୍ବାର ସ୍ମାରକପତ୍ର ଦିଆଗଲା । ସ୍ମାରକପତ୍ରର ଉତ୍ତର ନ ମିଳିବାରୁ ପ୍ରଜାମଣ୍ଡଳର ସଭାପତି ତା ୨୯।୬।୪୭

ଦିନ ଏକ ଚରମପତ୍ର ଦେଇ ରାଜାଙ୍କୁ ଜଣାଇଦେଲେ ଯେ, ଇଟାମାଟି ଅଧିବେଶନରେ ଗୃହୀତ ପ୍ରସ୍ତାବମତେ ସପ୍ତାହକ ମଧ୍ୟରେ ରାଜା ଯଦ୍ୟପି କୌଣସି କାର୍ଯ୍ୟକ୍ରମ ଗ୍ରହଣ ନ କରନ୍ତି ତା'ହେଲେ ପ୍ରଜାମଣ୍ଡଳ ନିଜ ଅଧିକାର ପ୍ରୟୋଗ କରିବାକୁ ବାଧ୍ୟ ହେବେ ଏବଂ ଭବିଷ୍ୟତରେ ଯେଉଁ ଅପ୍ରୀତିକର ପରିସ୍ଥିତି ଦେଖାଦେବ ସେଥିପାଇଁ ରାଜା ଦାୟୀ ରହିବେ ।

ଦେଶର ରାଜନୈତିକ ପରିସ୍ଥିତି ଦିନକୁଦିନ ଦ୍ରୁତଗତିରେ ବଦଳିବାରେ ଲାଗିଥାଏ । କେତେବେଳେ କ'ଣ ହେବ ସ୍ପଷ୍ଟଭାବେ ଜଣା-ପଡୁନଥାଏ । ଏହି ପରିପ୍ରେକ୍ଷୀରେ ଭାରତ ପାଇଁ ନୂଆ ସମ୍ବିଧାନ ପ୍ରଣୟନ ପାଇଁ ସଭ୍ୟ ନିର୍ବାଚନ ପାଇଁ ଭୋଟ ଗ୍ରହଣ କରାଗଲା । ବ୍ରିଟିଶ ଶାସିତ ଅଞ୍ଚଳରୁ ତାଙ୍କ ପ୍ରାଦେଶିକ ବିଧାନସଭା ସଭ୍ୟ ମନୋନୟନ କଲେ । ଗଡ଼ଜାତମାନଙ୍କ ପାଇଁ ଯେଉଁ ସଭ୍ୟ ନିର୍ବାଚିତ ହେବେ ତା' ମଧ୍ୟରୁ ଅଧେ ରାଜାଙ୍କ ଦ୍ୱାରା ଓ ଅଧେ ଲୋକ ପ୍ରତିନିଧିମାନଙ୍କ ଦ୍ୱାରା ନିର୍ବାଚିତ ହେବା ଧାର୍ଯ୍ୟ ହୋଇଥିବାରୁ ମୟୂରଭଞ୍ଜ ବ୍ୟତିତ ଅନ୍ୟ ଓଡ଼ିଆଭାଷୀ ୨୪ ଗଡ଼ଜାତରୁ ୪ଜଣ ପ୍ରତିନିଧି ସମ୍ବିଧାନ ସଭାକୁ ଯିବାପାଇଁ ସ୍ଥିର ହୋଇଥାଏ । ଏଥିପାଇଁ ୨ଜଣ ଲୋକପ୍ରତିନିଧି ନିର୍ବାଚିତ ହେବାରି ସ୍ଥିର ହୋଇଥାଏ । ରାଜାମାନେ ତାଙ୍କ ଦୁଇଜଣଙ୍କ ନାମ ସୁପାରିଶ କଲାପରେ ତାଙ୍କ ଦ୍ୱାରା, ମନୋନୀତ ଭୋଟରମାନଙ୍କ ଦ୍ୱାରା, ଅନ୍ୟ ଦୁଇଜଣ ନିର୍ବାଚିତ ହେବାର ସ୍ଥିରକରି ଭୋଟ୍ କରାଇଲେ। ଆମ ପ୍ରଜାମଣ୍ଡଳମାନଙ୍କ ପକ୍ଷରୁ ଶ୍ରୀ ସାରଙ୍ଗଧର ଦାସ ଓ ଯୁଧିଷ୍ଠିର ମିଶ୍ର ପ୍ରାର୍ଥୀହେଲେ ଓ ବହୁ ଅଧିକ ଭୋଟ୍‌ରେ ନିର୍ବାଚିତ ହେଲେ । ରାଜାମାନଙ୍କ ମଧ୍ୟରେ କ୍ଷମତା କବଳ ଲାଗି ତାଙ୍କ ପକ୍ଷରୁ ବହୁ ପ୍ରାର୍ଥୀ ଠିଆକରାଇ ପରିଶେଷରେ ସମସ୍ତେ ପରାସ୍ତ ହୋଇ ନିଜର କ୍ଷମତାଲିପ୍‌ସା ପ୍ରମାଣ କରାଇ ଦେଇଥିଲେ ।

ଓଡ଼ିଶା ଗଡ଼ଜାତଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଏକ ବୃହତ୍ତର ଓଡ଼ିଶା ଗଠନର ଉଦ୍ଦେଶ୍ୟ ରଖି ଓଡ଼ିଶାର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ବିଭିନ୍ନ କ୍ଷମତାଶୀଳ ଲୋକମାନଙ୍କ ସହିତ ଆଲୋଚନା ଚଳାଇଥା'ନ୍ତି । ତତ୍‌କାଳୀନ କନଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିର ପରାମର୍ଶଦାତା ବି.ଏନ. ରାଓ ରାଜାମାନଙ୍କୁ ଓଡ଼ିଶା ରାଜ୍ୟ ବିଧାନସଭାକୁ ପ୍ରତିନିଧି ଭାବେ ନେବାପାଇଁ ଯେଉଁ ପରାମର୍ଶ ଦେଲେ ଶ୍ରୀଯୁକ୍ତ ମହତାବ ଉକ୍ତ ବିଷୟ ରାଜ୍ୟ ପ୍ରଜାପରିଷଦର ସଭାପତି ଡଃ. ପଟ୍ଟାଭି ସିତାରାମାୟାଙ୍କୁ

ଜଣାଇବାରୁ ସେ ଏହା ପ୍ରତ୍ୟାଖ୍ୟାନ କରିବାରୁ ଏହି ପ୍ରସ୍ତାବ ଏଡିକିରେ ରହିଲା । ଏହାପରେ ଶ୍ରୀଯୁକ୍ତ ମହତାବ ପ୍ରସ୍ତାବ କଲେ ଯେ, ବର୍ମାର ରାଜ୍ୟ-ଗୁଡିକ ଯେଉଁଳି ଚୁକ୍ତିବଦ୍ଧ ହୋଇ ରାଷ୍ଟ୍ରସଂଘ ଶାସନ ଚଳାଇଛନ୍ତି ଗଡଜାତଗୁଡ଼ିକ ସେହି ନୀତିରେ ଓଡ଼ିଶା ପ୍ରଦେଶ ସହିତ ସମ୍ପର୍କ ରଖନ୍ତୁ ଏବଂ ଯାତାୟତ, ଶିକ୍ଷା, ସର୍ବସାଧାରଣ ସ୍ୱାସ୍ଥ୍ୟ, ପ୍ରାଦେଶିକ ପୋଲିସ୍ ବିଭାଗ, ଅବକାରୀ, ଜଙ୍ଗଲ ଏବଂ ଯୋଜନା (କୃଷି ଓ ଶିଳ୍ପ) ଗୁଡ଼ିକୁ ସାଧାରଣ ଶାସନ ଅନ୍ତର୍ଭୁକ୍ତ ହେବ । ଅନ୍ୟ କୌଣସି ବିଷୟ ସାଧାରଣ ଶାସନାଧୀନ କରିବାକୁ ହେଲେ ଉଭୟପକ୍ଷଙ୍କ ସନ୍ଧ ସର୍ତ୍ତମତେ ପରିବର୍ତ୍ତିତ ହେବ । ଏଭଳି ପ୍ରସ୍ତାବ କି ପ୍ରକାର ଏବଂ ଏହା କିପରି କାର୍ଯ୍ୟକାରୀ ହେବ, ତାହା କିଛି ସ୍ପଷ୍ଟଭାବେ ଜଣାପଡୁନଥାଏ । ମହତାବଙ୍କର ଉକ୍ତ ପ୍ରସ୍ତାବ ରାଜାମାନେ ଗ୍ରହଣ କରିଥିଲେ ସେମାନେ ଜମିଦାରୀ ଅବସ୍ଥାକୁ ଖସି ଆସିଥା'ନ୍ତେ ମାତ୍ର ଉକ୍ତ ପ୍ରସ୍ତାବ ରାଜାମାନେ ଗ୍ରହଣ କଲେନାହିଁ । ମହତାବଙ୍କର ଏଭଳି ମନମୁଖୀ ପ୍ରସ୍ତାବକୁ ଓଡ଼ିଶା ଗଡଜାତ ପ୍ରଜାମଣ୍ଡଳ-ମାନେ ମଧ୍ୟ ଜୋର୍ ବିରୋଧ କଲେ । ଏପରିକି ଉକ୍ତ ପ୍ରସ୍ତାବ ଗ୍ରହଣ କରାଗଲେ ଏହା ବିରୁଦ୍ଧରେ ଆନ୍ଦୋଳନ ହେବାପାଇଁ ଅନେକ ଧମକ ଦେଲେ ।

ଭାରତ ବଡଲାଟଙ୍କ ଦ୍ୱାରା କାର୍ଯ୍ୟସାଧନ ଉପାୟ ଘୋଷିତ ହେଲା । ଏତଦ୍ୱାରା ବୈଦେଶିକ ଦେଶରକ୍ଷା ଓ ଯାତାୟତ ବିଭାଗଗୁଡ଼ିକ ଭାରତ ସରକାରଙ୍କ ହାତରେ ରହିବ । ଅନ୍ୟ ସମସ୍ତ ବିଷୟରେ ରାଜା-ମାନଙ୍କର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରହିବ । ଦେଶୀୟରାଜ୍ୟ ରାଜାମାନେ ଅଳ୍ପବହୁତେ ଏହି ନୀତିକୁ ଗ୍ରହଣ କରିବାକୁ ରାଜିହୋଇ ଅନେକେ ଏଭଳି ଏକ ଏଗ୍ରିମେଣ୍ଟ୍‌ରେ ସ୍ୱାକ୍ଷର କଲେ । ଏଥିସହିତ ଆଭ୍ୟନ୍ତରୀଣ ଶାସନର ପୂର୍ଣ୍ଣାଧିକାରୀ ହୋଇ ମନମୁଖୀ ଶାସନ ଶାସକକୁ ରଖିରଖିବା ଉଦ୍ଦେଶ୍ୟରେ ରାଜନ୍ୟ ମଣ୍ଡଳୀ ନାନା ଚେଷ୍ଟା ଏବଂ ଚକ୍ରାନ୍ତ ଚଳାଇଥା'ନ୍ତି । ସର୍ବଭାରତୀୟ ସ୍ତରରେ ନେତାମାନେ ଗଡଜାତ ସମ୍ପର୍କରେ ପୂର୍ଣ୍ଣ ନିରବତା ଅବଲମ୍ବନ କଲାଭଳି ଜଣାପଡୁଥାଏ । ଦେଶୀୟ ରାଜ୍ୟ ପ୍ରଜାପରିଷଦ ମଧ୍ୟ କୌଣସି ମତାମତ ଦେଇନଥାନ୍ତି । ତେଣୁ ଗଡଜାତମାନଙ୍କର ରାଜନୈତିକ ଅବସ୍ଥା ସନ୍ଦିହାନ ହୋଇରହିଥାଏ । ତେଣୁ ଗଡଜାତ ପ୍ରଜାମଣ୍ଡଳମାନେ ଭବିଷ୍ୟତର ଯେକୌଣସି ଅବସ୍ଥାର ସମ୍ମୁଖୀନ ହେବାପାଇଁ ନିଜପକ୍ଷରୁ ଜୋର୍‌ସୋର୍‌ରେ କାର୍ଯ୍ୟ କରୁଥା'ନ୍ତି ।

ଏଭଳି ସନ୍ଦିହାନ ପରିସ୍ଥିତିରେ ପ୍ରଜାମଣ୍ଡଳ ୪ର୍ଥ ଅଧିବେଶନକୁ ଭୀତିକରି ପ୍ରଜାମଣ୍ଡଳ ସଭାପତି ରାଜାଙ୍କୁ ଚରମପତ୍ର ଦେବାରୁ ଭବିଷ୍ୟତ ଶାସନ ସମ୍ପର୍କରେ ଆଲୋଚନା କରିବାପାଇଁ ନୟାଗଡର ରାଜା ପ୍ରଜାମଣ୍ଡଳ ସଭାପତିଙ୍କୁ ନିମନ୍ତ୍ରଣ କଲେ । ତା ୧୦।୭।୪୭ଦିନ ପ୍ରଜାମଣ୍ଡଳ ସଭାପତି ଶ୍ରୀଧର ଦାଶ ଓ ପୂର୍ବତନ ସଭାପତି ବାଞ୍ଛାନିଧି ସେନାପତି ରାଜାଙ୍କ ସହିତ ଆଲୋଚନା ପାଇଁ ଗଲେ । ଦୁଇଦିନ ବୈଠକପରେ ରାଜା ପୂର୍ଣ୍ଣଦାୟିତ୍ୱ-ମୂଳକ ଶାସନ ପ୍ରତିଷ୍ଠା କରିବାପାଇଁ ରାଜିହୋଇ ଏଥିପାଇଁ ସମୟ ରଖିଲେ । ମାତ୍ର ନିର୍ବାଚିତ ପ୍ରତିନିଧିମାନଙ୍କ ହାତକୁ ଶାସନ କ୍ଷମତା ହସ୍ତାନ୍ତର କରିବା ପାଇଁ ରାଜିହୋଇ ନବଗଠିତ ମନ୍ତ୍ରୀମଣ୍ଡଳରେ ତାଙ୍କ ଭାଇ ବୃନ୍ଦାବନ ଚନ୍ଦ୍ର ସିଂହଙ୍କୁ ପ୍ରଧାନମନ୍ତ୍ରୀ ଭାବେ ସ୍ଥାନ ଦେବାପାଇଁ କହିଲେ ଏବଂ ସେ ନିଜେ ମନ୍ତ୍ରୀପରିଷଦର ଚେୟାରମ୍ୟାନ ହୋଇ ରହିବାପାଇଁ ପ୍ରସ୍ତାବ ଦେଲେ । ଉକ୍ତ ବିଷୟ ପ୍ରଜାମଣ୍ଡଳ ସହିତ ପରାମର୍ଶ କଲାପରେ ଯାହା ସ୍ଥିର ହେବ ତାହା ଜଣାଇବାକୁ କହି ପ୍ରଜାମଣ୍ଡଳ ନେତା ଦ୍ୱୟ ଫେରି ଆସିଲେ ।

ତା ୧୬।୭।୪୭ଦିନ ପ୍ରଜାମଣ୍ଡଳର ଏକ ସ୍ୱତନ୍ତ୍ର ଅଧିବେଶନ ଅନୁଷ୍ଠିତ ହେଲା । ରାଜାଙ୍କ ସହିତ ହୋଇଥିବା ଆଲୋଚନାର ସବିଶେଷ ବିବରଣୀ ସଭାପତି, ବିଚାର ପାଇଁ ଉପସ୍ଥାପିତ କଲେ । ବହୁ ଆଲୋଚନା ପରେ ସ୍ଥିର ହେଲା ଯେ ଇଂରେଜ ସରକାର ୧୯୪୮ ମସିହା ଜୁନ୍ ପୂର୍ବରୁ ଭାରତ ଛାଡି ଚାଲିଯାଉଥିବାରୁ ନ୍ୟାୟତଃ ସମସ୍ତ ରାଜନୈତିକ କ୍ଷମତା ଲୋକଙ୍କ ହାତକୁ ଆସୁଅଛି । ସେହି କାରଣରୁ ସମଗ୍ର ଭାରତବର୍ଷ ଯେପରି ଗୋଟିଏ ସ୍ୱାଧୀନ ଦେଶ ହୋଇ ରହିପାରିବ, ସେଥିପାଇଁ ଚରମ ଆନ୍ଦୋଳନ କରାଯିବା ନିମନ୍ତେ ଦେଶୀୟ ରାଜ୍ୟ ଲୋକପରିଷଦ ଯେଉଁ ପ୍ରସ୍ତାବ ଗ୍ରହଣ କରିଛନ୍ତି ତାହା ପ୍ରଜାମଣ୍ଡଳର ଇଟାମାଟି ଅଧିବେଶନରେ ସମର୍ଥିତ ହୋଇଯାଇଅଛି । ଏଣୁ (କ) ୧୯୪୭ ମସିହା ଡିସେମ୍ବର ମାସ ୩୧ ତାରିଖ କିମ୍ବା ତତ ପୂର୍ବରୁ କୌଣସି ନିର୍ଦ୍ଦିଷ୍ଟ ତାରିଖରେ ନୟାଗଡର ପୂର୍ଣ୍ଣଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା କରିବେ ବୋଲି ରାଜା ଘୋଷଣା କରନ୍ତୁ । (ଖ) ସାବାଳକ ଭୋଟଦ୍ୱାରା ବିଧିବଦ୍ଧ ନିର୍ବାଚନରେ ନିର୍ବାଚିତ ଲୋକପ୍ରତିନିଧିଙ୍କ ଦ୍ୱାରା ଶାସନ ବିଧାନ ରଚନା କରିବାର ବ୍ୟବସ୍ଥା କରନ୍ତୁ ଏବଂ ଏଥରେ ରାଜାଙ୍କର ଆନ୍ତରିକତାର ନିଦର୍ଶନ ସ୍ୱରୂପ ଯେଉଁ ବେସରକାରୀ ବ୍ୟକ୍ତି ଉପରେ ଲୋକମାନଙ୍କର ଆସ୍ଥା ଓ ବିଶ୍ୱାସ ରହିଛି ସେହିମାନଙ୍କୁ ନେଇ ଏକ

ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରୀମଣ୍ଡଳ ଗଠନ କରି ଶାସନ ପରିଚାଳନାର ପ୍ରତ୍ୟେକ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରନ୍ତୁ । ଏସବୁ ବ୍ୟବସ୍ଥାକୁ କାର୍ଯ୍ୟରେ ପରିଣତ କରିବା ନିମିତ୍ତ ଏ ଅଧିବେଶନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିକୁ ସମ୍ପୂର୍ଣ୍ଣ କ୍ଷମତା ଅର୍ପଣ କରୁଛନ୍ତି । ଏହାକୁ ଭିତ୍ତିକରି ମଧ୍ୟବର୍ତ୍ତୀକାଳୀନ ଶାସନର ପରିଚାଳନା ନିମିତ୍ତ ନିର୍ବାଚିତ ବିଧାୟକ ଶ୍ରୀଧର ଦାଶ, ବାଞ୍ଛାନିଧି ସେନାପତିଙ୍କ ସହିତ ମନୋନୀତ ସଭ୍ୟ ବୃନ୍ଦାବନ ଚନ୍ଦ୍ର ସିଂହଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଠିତ ହେଉ ଏବଂ ରାଜା ମନ୍ତ୍ରୀମଣ୍ଡଳର ଚେୟାରମ୍ୟାନ ରହନ୍ତୁ । ପୁଣି ପ୍ରଜାମଣ୍ଡଳ ନୟାଗଡ ରାଜାଙ୍କୁ ଅନୁରୋଧ କରିନ୍ତି ଯେ, ନିକଟ ଭବିଷ୍ୟତରେ ପୂର୍ବଭାରତୀୟ ଗଡଜାତ ପ୍ରଜାମାନେ ଲୋକମତକୁ ଉପେକ୍ଷା କରି ୟୁନିୟନ ଗଠନ କରିବାର ଯେଉଁ ହୀନ ଉଦ୍ୟମ ଚଳାଇଛନ୍ତି ନୟାଗଡ ରାଜା ଉକ୍ତ ୟୁନିୟନ ଗଠନ ସହିତ ନିଜକୁ ସଂପୃକ୍ତ ନ କରନ୍ତୁ କିମ୍ବା ଲୋକମତଦ୍ୱାରା ପରିଚାଳିତ ହେବାପାଇଁ ରାଜାମାନଙ୍କୁ ପରାମର୍ଶ ଦିଅନ୍ତୁ । ଏହା ସମ୍ଭବ ନହେଲେ ୟୁନିୟନମାନଙ୍କ ସହିତ ସକଳ ସମ୍ପର୍କ ଛିନ୍ନକରି ଦିଅନ୍ତୁ । ଓଡଗାଁ ଅଧିବେଶନରେ ଗୃହୀତ ପ୍ରସ୍ତାବ ରାଜାଙ୍କୁ ଜଣାଇଦେବା ପରେ ରାଜା ତଦନୁଯାୟୀ କାର୍ଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ । ନୟାଗଡରେ ଘଟିଯାଉଥିବା ରାଜନୀତିକ ପରିସ୍ଥିତି ସମ୍ପର୍କୀୟ ସମସ୍ତ ଘଟଣାବଳୀ ଅଲ୍ ଇଣ୍ଡିଆ କାଉନ୍ସିଲର ସଭାପତିଙ୍କୁ ଜଣାଇ ତାଙ୍କ ପରାମର୍ଶମତେ ପ୍ରଜାମଣ୍ଡଳ କାର୍ଯ୍ୟ ଆଗେଇ ଚାଲିଥାଏ । ନୟାଗଡରେ ହେବାକୁ ଯାଉଥିବା ଶାସନତାନ୍ତ୍ରିକ ପରିବର୍ତ୍ତନ ବିଷୟ ସାରଙ୍ଗଧର ଦାସ ଅଲ୍ ଇଣ୍ଡିଆ କାଉନ୍ସିଲର ସଭାପତିଙ୍କୁ ଅବଗତ କରାଇବାରୁ ସେ ନିଖିଳଭାରତ ଦେଶୀୟ ରାଜ୍ୟ ପ୍ରଜାପରିଷଦଙ୍କ ପରାମର୍ଶକ୍ରମେ ନୟାଗଡ ପ୍ରଜାମଣ୍ଡଳ ମଧ୍ୟବର୍ତ୍ତୀକାଳୀନ ସରକାରରେ ଯୋଗଦେବାପାଇଁ ଅନୁମତି ଦେଇଥିଲେ । ଦୁଃଖର ବିଷୟ ରାଜା ତାଙ୍କ ପ୍ରତିଶ୍ରୁତି ରକ୍ଷାକରି ପାରିଲେନାହିଁ । ତେଣୁ ପ୍ରଜାମଣ୍ଡଳ ସରକାରରେ ଯୋଗଦେବାକୁ ମନାକରିଦେଲେ ।

ତା ୧୪।୮।୪୭ଦିନ ମଧ୍ୟରାତ୍ରି ପରେ ତା ୧୫।୮।୪୭ ଆରମ୍ଭ ସମୟରେ ଇଂରେଜ ସରକାରଙ୍କ ପ୍ରତିନିଧି ବଡଲାଟ୍ ଲର୍ଡ ମାଉଣ୍ଟ୍ ବ୍ୟାଟେନ୍ ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରୀପରିଷଦ ହାତରେ କ୍ଷମତା ଅର୍ପଣ କଲେ । ସେହି ସମୟରୁ ଦେଶୀୟ ରାଜ୍ୟ ରାଜା-ମାନେ ମଧ୍ୟ ସାର୍ବଭୌମ କ୍ଷମତାର ଅଧିକାରୀ ହୋଇଗଲେ ।

ତା ୧୫।୮।୪୭ ରେଚ୍ଚୁ ଭରତ ପାକିସ୍ଥାନ ସହିତ ୬୬୨ଟି ଦେଶୀୟ ରାଜ୍ୟ ସବୁ ଗୋଟିଏ ଗୋଟିଏ ରାଷ୍ଟ୍ରରୂପେ ଭରତ ଭୂଇଁରେ ଆତ୍ମପ୍ରକାଶ କଲେ । ଗୋଟିଏ ଭରତ ୬୬୪ଟି ଦେଶରେ ପରିଣତ ହେଲା । ଗାନ୍ଧିଜୀଙ୍କ ସ୍ୱପ୍ନର ଭରତର କଳ୍ପନାକୁ ଚୁର୍ ମାର୍ କରିଦେଲେ ।

ଭରତ ପାକିସ୍ଥାନର ଜନତା ପ୍ରବଳ ଉତ୍ସାହ ଉନ୍ମାଦନାର ସହିତ ସ୍ୱାଧୀନତା ଦିବସର ଆନନ୍ଦ ଅନୁଭବ କଲାବେଳେ ଭରତର ୬୬୨ଟି ଗଡ଼ଜାତର ଜନସାଧାରଣ ଓ ତା'ର ଶାସକବୃନ୍ଦ ଏହି ପରିପ୍ରେକ୍ଷୀରେ ସାମନାସାମନି ହେଲାପରି ବୋଧହେଲା । ନୟାଗଡ଼ ରାଜା ତାଙ୍କ ପକ୍ଷରୁ ନିରଡ଼ମ୍ବରଭବେ ବାଧ୍ୟବାଧକତା ସ୍ୱବେ ଏହି ଉତ୍ସବ ପାଳନ କଲାବେଳେ ଇତିପୂର୍ବରୁ ନୟାଗଡ଼ ପ୍ରଜାମଣ୍ଡଳ ପକ୍ଷରୁ ସ୍ୱାଧୀନତା ଘୋଷଣାକରି ଏହି ଉତ୍ସବକୁ ରାଜ୍ୟର ସମସ୍ତ ପଞ୍ଚାୟତ ହେଡକ୍ୱାଟର, ଥାନା ହେଡକ୍ୱାଟର-ମାନଙ୍କରେ ମହାସମାରୋହର ସହିତ ପାଳନ କରିଥିଲେ ଓ ପ୍ରଜାମଣ୍ଡଳର ନିଳକୁରୁତା ବାହିନୀ ହଜାର ହଜାର ଯୁବକଦଳ ଭବିଷ୍ୟତ ସଂଗ୍ରାମ ନିମିତ୍ତ ଶପଥ ନେଇଥିଲେ । ସେହିଦିନଠାରୁ ଭରତ ପାକିସ୍ଥାନ ଭଳି ନୟାଗଡ଼କୁ ସ୍ୱାଧୀନ ରାଷ୍ଟ୍ରଭବେ ଘୋଷଣା କରି ସମସ୍ତ ରାଜକାର୍ଯ୍ୟ ନୟାଗଡ଼ ପ୍ରଜାମଣ୍ଡଳ ଗ୍ରହଣ କରିବା କଥା ପ୍ରଜାମଣ୍ଡଳର ଘୋଷଣାପତ୍ର ଲୋକଙ୍କଦ୍ୱାରା ସମର୍ଥିତ ହୋଇପାରିଲା ।

ପ୍ରଜାମଣ୍ଡଳର ଏଭଳି ଦୁର୍ଦ୍ଧର୍ଷ ଘୋଷଣା ଓ ଶପଥ, ତତ୍କାଳୀନ ପରିସ୍ଥିତିରେ, ରାଜା ଉଦ୍ବିଗ୍ନ ହୋଇ ଭବିଷ୍ୟତ ଶାସନ ସମ୍ପର୍କରେ ଆଲୋଚନା କରିବାପାଇଁ ପ୍ରଜାମଣ୍ଡଳ ସଭପତି ଶ୍ରୀଧର ଦାଶଙ୍କୁ ନିମନ୍ତ୍ରଣ କଲେ । ରାଜା କୃଷ୍ଣଚନ୍ଦ୍ର ସିଂହଙ୍କର ନିମନ୍ତ୍ରଣ ପାଇବାପରେ ସଭପତି ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ଡାକି ବହୁ ଆଲୋଚନା ପରେ ରାଜାଙ୍କ ନିମନ୍ତ୍ରଣ ରକ୍ଷାକରିବା ସ୍ଥିର ହେଲା ଓ ପ୍ରଜାମଣ୍ଡଳ ସଭପତିଙ୍କୁ ସହାୟ କରିବା ପାଇଁ ଶ୍ରୀ ବାଞ୍ଛାନିଧି ସେନାପତି ଓ ମୁନ୍ସିସାହେବ ଖାଁଙ୍କୁ ତାଙ୍କ ସହ ଆଲୋଚନାରେ ଭଗନେବା ପାଇଁ ପଠାଇବାର ବ୍ୟବସ୍ଥା ସ୍ଥିର ହେଲା ।

ପ୍ରଜାମଣ୍ଡଳ ପ୍ରତିନିଧି ଓ ସଭପତିଙ୍କ ସହ ରାଜାଙ୍କର ଦୀର୍ଘ ଆଲୋଚନା ପରେ ସ୍ଥିରହେଲା ୧୯୪୮ ସେପ୍ଟେମ୍ବର ପୂର୍ବରୁ ରାଜା ଲୋକଙ୍କଦ୍ୱାରା ନିର୍ବାଚିତ ବ୍ୟକ୍ତିମାନଙ୍କୁ ନେଇ ଏକ ସମ୍ବିଧାନ ପ୍ରଣୟନ

ସଭା ଗଠନ କରିବେ ଓ ସମ୍ବିଧାନ ସଭା ଯେଉଁଳି ସମ୍ବିଧାନ ପ୍ରଣୟନ କରିବେ, ରାଜା ତଦନୁସାରେ କ୍ଷମତା ହସ୍ତାନ୍ତର କରିବେ । ଏହା ନିଜ ଦଳ ସ୍ୱରୂପ ପ୍ରଜାମଣ୍ଡଳ ହାତରେ ମଧ୍ୟବର୍ତ୍ତୀକାଳୀନ କ୍ଷମତା ହସ୍ତାନ୍ତର କରିବେ । ତା ୧୪।୮।୪୭ ସିନେଟ୍ ପ୍ରତିଷ୍ଠାପାଇଁ ଯେଉଁ ଘୋଷଣା କରି ନିଜର କ୍ଷମତା ଜାରି କରିବାର ପୂର୍ଣ୍ଣସୁଯୋଗ ରଜା ରଖିଥିଲେ, ସେ ତାହା ଅଯଥା ପ୍ରୟୋଗ କରିବେ ନାହିଁ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଲେ । ତାଙ୍କ ଭାଇ ବୃନ୍ଦାବନ ଚନ୍ଦ୍ର ସିଂହଙ୍କ ସହିତ ପ୍ରଜାମଣ୍ଡଳର ଦୁଇଜଣ ସଭ୍ୟଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଠନ କରିବାର ସ୍ଥିରହେଲା । ରଜା ଏବଂ ପ୍ରଜାମଣ୍ଡଳ ଭିତରେ ଯେଉଁ ନିଷ୍ପତ୍ତି ହେଲା, ତାକୁ ଭିତ୍ତିକରି ରଜା ତା ୨୫।୮।୪୭ରେ ଏକ ଘୋଷଣା ପ୍ରକାଶ କଲେ ।

ରଜାଙ୍କ ଘୋଷଣା ପ୍ରକାଶ ପାଇବାପରେ ପ୍ରଜାମଣ୍ଡଳର ନିର୍ଦ୍ଦେଶକ୍ରମେ ପ୍ରଜାମଣ୍ଡଳ ଆସେମ୍ବ୍ଲି ଦଳର ନେତା ଓ ଉପନେତା କ୍ରମାନ୍ୱୟେ ଶ୍ରୀଧର ଦାଶ ଓ ବାଞ୍ଛାନିଧି ସେନାପତି ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରୀମଣ୍ଡଳରେ ଯୋଗଦେଲେ । ତା ୧୦।୯।୪୭ଦିନ ଶ୍ରୀ ବୃନ୍ଦାବନ ଚନ୍ଦ୍ର ସିଂହ, ଶ୍ରୀଧର ଦାଶ ଓ ବାଞ୍ଛାନିଧି ସେନାପତି ପ୍ରମୁଖ ମନ୍ତ୍ରୀତ୍ରବେ ଶପଥ ଗ୍ରହଣକରି ଶାସନ ଦାୟିତ୍ୱ ଗ୍ରହଣ କଲେ । ଶପଥ ଗ୍ରହଣ ପରେ ମନ୍ତ୍ରୀମଣ୍ଡଳର ବୈଠକ ବସାଇ ବିଭାଗ ବଣ୍ଟନ କରଗଲା । ପ୍ରଧାନମନ୍ତ୍ରୀ ବୃନ୍ଦାବନ ଚନ୍ଦ୍ର ସିଂହ ପୋଲିସ୍ ବିଭାଗ ସହିତ ସାମାନ୍ୟ କିଛି ବିଭାଗର ଦାୟିତ୍ୱ ଗ୍ରହଣ କଲେ । ଅବଶିଷ୍ଟ ସମସ୍ତ ବିଭାଗ ମନ୍ତ୍ରୀ ଶ୍ରୀଧର ଦାଶ ଓ ବାଞ୍ଛାନିଧି ସେନାପତିଙ୍କ ଦାୟିତ୍ୱରେ ରହିଲା । ଚୁକ୍ତିମତେ ମନ୍ତ୍ରୀମାନେ ନିଜ ନିଜ ବିଭାଗ ଉପରେ ସଂପୂର୍ଣ୍ଣ ଅଧିକାରୀ ରହିଲେ । ପ୍ରଧାନମନ୍ତ୍ରୀ କୌଣସି ବିଭାଗରେ ହସ୍ତକ୍ଷେପ କରିବାର ଅଧିକାର ନଥିଲା ବା ସେ ଇସ୍ତଫା ଦେଲେ ମନ୍ତ୍ରୀମଣ୍ଡଳ ଭାଙ୍ଗିବାର ସୁଯୋଗ ନଥିଲା ।

ମନ୍ତ୍ରୀମାନେ କ୍ଷମତା ଗ୍ରହଣକରି ଦେଖନ୍ତି ଯେ ରଜା ରାଜକୋଷକୁ ଶୂନ୍ୟକରି ଦେଇଛନ୍ତି । ଅଭିଜ୍ଞ ରାଜକର୍ମଚାରୀମାନଙ୍କୁ ବାଧ୍ୟତାମୂଳକ ଭାବେ ଅବସର ଦେଇ ତାଙ୍କ ଜାଗାରେ ତାଙ୍କ ନିଜପକ୍ଷର ନୂତନ ଲୋକଙ୍କୁ ରାଜ୍ୟର ବଡ ବଡ ପୋଷ୍ଟମାନଙ୍କରେ ପ୍ରତିଷ୍ଠିତ କରିଛନ୍ତି । କେତେକ ବଡ ବଡ ଗ୍ରାମ ତାଙ୍କ ଭକ୍ତ ବିରାଦରମାନଙ୍କ ନାମରେ ରେକର୍ଡ କରାଇ

ନେଇଛନ୍ତି । ରାଜକର୍ମଚାରୀମାନେ ରାଜାଙ୍କ ପକ୍ଷରହି ପ୍ରଜାମଣ୍ଡଳ ମନ୍ତ୍ରୀମାନଙ୍କୁ ସହଯୋଗ ପୂରମାତ୍ରାରେ କରୁନାହାନ୍ତି । ଏତଦ୍ୱାରା ରାଜା ମନ୍ତ୍ରୀମାନଙ୍କୁ ଅପଦସ୍ଥ କରିବାର କଳ୍ପନା କରିଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ମାତ୍ର ନୟାଗଡର ଜନତା ପ୍ରଜାମଣ୍ଡଳ ସାଙ୍ଗରେ ଥିବାରୁ ମନ୍ତ୍ରୀମାନେ କୌଣସି ଶୋଚନା ନକରି ରାଜକାର୍ଯ୍ୟ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ମିଶ୍ରଣ କାର୍ଯ୍ୟକୁ ସାମନାରେ ରଖି ସଂଗଠନକୁ ଦୃଢକରିବାରେ ଲାଗିଲେ । ଲୋକଙ୍କର ପୂର୍ଣ୍ଣ ସମର୍ଥନ ମନ୍ତ୍ରୀମଣ୍ଡଳ ପ୍ରତି ଥିବାରୁ ରାଜକର୍ମଚାରୀମାନେ ବାଧ୍ୟହୋଇ ପରିଶେଷରେ ସହଯୋଗ କରିଥିଲେ । ଘୋର ରାଜନୈତିକ ଘନଘଟା ମଧ୍ୟରେ ମାତ୍ର ୨୦ଦିନ କାର୍ଯ୍ୟ ସମ୍ପାଦନ ମଧ୍ୟରେ ନୟାଗଡ଼ ରାଜ୍ୟକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବାପାଇଁ ମନ୍ତ୍ରୀଦ୍ୱୟ ରାଜାଙ୍କ ଉପରେ ଚାପ ପକାଉଥା'ନ୍ତି । ଏହା ସହିତ ଲୋକଙ୍କର ସୁବିଧା ପାଇଁ ହରିଜନ, ଆଦିବାସୀ ଓ ନାରୀଶିକ୍ଷାର ପ୍ରସାର ଉଦ୍ଦେଶ୍ୟରେ ହାଇସ୍କୁଲ ପଢା ଶେଷ ପର୍ଯ୍ୟନ୍ତ ଏମାନଙ୍କର ସ୍କୁଲ ଦରମାଛାଡ଼ କରିଦେଇଥିଲେ । ଉଚ୍ଚଶିକ୍ଷା ପାଇଁ ଗରିବ ଛାତ୍ର ଯେଉଁମାନେ ଲୋକ ବୃତ୍ତି ନେଇଥିଲେ । ସେ ସବୁକୁ ଛାଡ଼କରି ଦେଇଥିଲେ । ପ୍ରାଥମିକ ଶିକ୍ଷକ ଓ ନିମ୍ନ ବେତନ-ଶ୍ରେଣୀ କର୍ମଚାରୀମାନଙ୍କର ଓଡ଼ିଶା ପ୍ରଦେଶ ସହିତ ସମାନ ହାରରେ ଦରମା ବଢାଇ ଦେଇଥିଲେ । ଜଙ୍ଗଲ ସମ୍ବନ୍ଧୀୟ କଟକଣା ଉଠାଇଦେଲେ । ପ୍ରଜାଙ୍କ ସୁବିଧାପାଇଁ କେତେକ ଶ୍ରେଣୀ ରକ୍ଷିତ ଜଙ୍ଗଲକୁ ଖେସେର ଜଙ୍ଗଲରେ ପରିଣତ କରାଗଲା । ଚରକର ଓ ଢାଟିଆଣ ବ୍ୟବସାୟ କର ଛାଡ଼ ଦିଆଗଲା । ସରଚାର୍ଜ ଛଅଣା ଟଙ୍କାକେ ଦୁଇଅଣା ଉଠାଇ ଦିଆଗଲା । ରାଜା ତାଙ୍କ ପରିବାରବର୍ଗଙ୍କୁ ବେଆଇନ ଭାବେ ଦାନକରିଥିବା ୧୯ଗୋଟି ଗ୍ରାମକୁ ଫେରାଇ ଦେବାପାଇଁ ରାଜାଙ୍କୁ ବାଧ୍ୟ କରାଯାଇଥିଲା ଓ ସେ ତାହା ଫେରାଇ ଦେଇଥିଲେ । ଲାଞ୍ଚ ପୂରାପୂରି ଉଠିଯାଇଥିଲା । ରାଜକର୍ମଚାରୀମାନେ ନିୟମିତତା ରକ୍ଷାକରି କାର୍ଯ୍ୟ କରୁଥିଲେ ।

ଶ୍ରୀଧର ଦାଶ ପ୍ରଜାମଣ୍ଡଳର ସଭାପତି ଥାଇ ମନ୍ତ୍ରୀମଣ୍ଡଳରେ ଯୋଗ ଦେଇଥିବାରୁ ଜଣେ ବ୍ୟକ୍ତି ଦୁଇଟି ଦାୟିତ୍ୱରେ ରହିବା ଉଚିତ ନୁହେଁ ମନେକରି ପ୍ରଜାମଣ୍ଡଳ ସଭାପତି ପଦରୁ ଇସ୍ତଫା ଦେଇଥିଲେ । ଏହି କାରଣରୁ ତା ୨୫।୧୦।୪୬ରେ ପ୍ରଜାମଣ୍ଡଳର ଏକ ବିଶେଷ ଅଧିବେଶନ ହୋଇ ଉପସଭାପତି ଲକ୍ଷ୍ମଣ ମହାରଣାଙ୍କୁ ସଭାପତି ଭାବେ ମନୋନୀତ

କଲେ । ଏହି ଅଧିବେଶନ ମନ୍ତ୍ରୀମଣ୍ଡଳକୁ ସାହାଯ୍ୟ ତଥା ଉପଦେଶ ଦେବାପାଇଁ ପ୍ରଜାମଣ୍ଡଳ ସଭାପତି ଲକ୍ଷ୍ମଣ ମହାରଣା, ଅଞ୍ଚଳ କାଉନ୍ସିଲର ସଭାପତି ସାରଙ୍ଗଧର ଦାସ ଓ ବିଧାୟକ ବନମାଳି ପଟ୍ଟନାୟକଙ୍କୁ ନେଇ ଏକ ପରାମର୍ଶଦାତା କମିଟି ଗଠନ କରାଯାଇଥିଲା । ବିଶେଷତଃ ମିଶ୍ରଣ ପ୍ରସ୍ତାବକୁ ରାଜନୈତିକସ୍ତରରେ କାର୍ଯ୍ୟକାରୀ କରାଇବା ଏହି କମିଟିର ପ୍ରଧାନ କାର୍ଯ୍ୟ ହୋଇଥିଲା । ବନମାଳି ପଟ୍ଟନାୟକ ଅଧିକାଂଶ ସମୟ ନୟାଗଡ଼ରେ ରହି ମିଶ୍ରଣ ପାଇଁ ଓଡ଼ିଶା ନେତୃବୃନ୍ଦ ତଥା ପ୍ରଜାମଣ୍ଡଳ ସହିତ ଯୋଗସୂତ୍ର ରଖିଥା'ନ୍ତି ଓ ଶ୍ରୀ ମହତାବଙ୍କ ପରାମର୍ଶକ୍ରମେ ମିଶ୍ରଣ ପାଇଁ ଆବଶ୍ୟକୀୟ କାର୍ଯ୍ୟ ଚାଲିଥାଏ ।

## ଛାତ୍ର ଜାଗରଣ

କଟକ ନବୀନ ନିବାସ ଛାତ୍ରାବାସରେ ନୟାଗଡ଼ର କେତେକ ଛାତ୍ର ଜାତୀୟ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିବା ବିଷୟ ଆଗରୁ କୁହାଯାଇଛି । ଗଡ଼ଜାତମାନଙ୍କରେ ଏଭଳି ଏକ ଅନିଶ୍ଚିତ ପରିସ୍ଥିତିରେ ଛାତ୍ରମାନେ ଥୟଧରି ରହିବା ସମ୍ଭବ ହେଲାନି । ଏହି ଛାତ୍ରାବାସର ଛାତ୍ରମାନଙ୍କ ପ୍ରସ୍ତାବମତେ ତା ୧୩।୧୦।୪୭ଦିନ ନୟାଗଡ଼ ଟାଉନରେ ନିଖିଳ ଓଡ଼ିଶା ଗଡ଼ଜାତ ଛାତ୍ର ସମ୍ମିଳନୀ ଅନୁଷ୍ଠିତ ହେଲା । ଗଡ଼ଜାତ ସମୂହର ହଜାର ହଜାର ଛାତ୍ରଛାତ୍ରୀ ପ୍ରତିନିଧି ଉକ୍ତ ସମ୍ମିଳନୀରେ ଯୋଗ ଦେଇଥିଲେ । ମୁନ୍‌ସି ସାହେବ୍ ଖାଁଙ୍କ ସଭାପତିତ୍ୱରେ ନୟାଗଡ଼ର ଛାତ୍ରମାନଙ୍କୁ ନେଇ ଏକ ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା । ପ୍ରଜାମଣ୍ଡଳର ମନ୍ତ୍ରୀମାନେ ଉକ୍ତ ସମ୍ମିଳନୀ କୃତକାର୍ଯ୍ୟ ହେବାପାଇଁ ସମର୍ଥନ ଦେଇଥିଲେ । ଅଞ୍ଚଳ କାଉନ୍‌ସିଲର ସଭାପତି ସାରଙ୍ଗଧର ଦାସ ଉକ୍ତ ସମ୍ମିଳନୀରେ ସଭାପତିତ୍ୱ କରି ଭବିଷ୍ୟତ ଆନ୍ଦୋଳନ ନିମିତ୍ତ ଛାତ୍ରମାନଙ୍କୁ ଆହ୍ୱାନ କରିଥିଲେ । ଉକ୍ତ ସମ୍ମିଳନୀ ରାଜାମାନଙ୍କର କଳ୍ପିତ ସ୍ୱତନ୍ତ୍ର ରାଷ୍ଟ୍ରସଙ୍ଘ ଗଠନର ତୀବ୍ର ବିରୋଧ କରି ଏକ ପ୍ରସ୍ତାବ ଗ୍ରହଣ କରିଥିଲେ । ନୟାଗଡ଼ ପ୍ରଜାମଣ୍ଡଳ ଉକ୍ତ ସମ୍ମିଳନୀ ପ୍ରତି ପୂର୍ଣ୍ଣ ସମର୍ଥନ କରି କାର୍ଯ୍ୟ କରିଥିଲେ ମଧ୍ୟ ଛାତ୍ର-ନେତା ଶ୍ରୀ ନରସିଂହ ପଟ୍ଟନାୟକ, ଶ୍ରୀ ଅକ୍ରୁର ମହାପାତ୍ର, ଶ୍ରୀ ରଘୁନାଥ ମହାପାତ୍ର ପ୍ରମୁଖ ଆଗରେ ରହି ସମସ୍ତ କାର୍ଯ୍ୟ ସମ୍ପାଦନ କରୁଥିଲେ । ପ୍ରୋକ୍ତ ସମ୍ମିଳନୀ ମଣ୍ଡପରେ ପ୍ରଥମକରି ବିଧିବଦ୍ଧ ଭାବେ ନୟାଗଡ଼ ଛାତ୍ର

ସମ୍ମିଳନୀ ଗଠନ କରାଯାଇଥିଲା । ନରସିଂହ ପଟ୍ଟନାୟକ ଏହାର ଆବାହକ ହୋଇଥିଲେ । ଶିକ୍ଷାମନ୍ତ୍ରୀ ଶ୍ରୀଧର ଦାଶ ଉକ୍ତ ସମ୍ମିଳନୀ ଉଦ୍‌ଘାଟନ କରି ଉଦ୍‌ବୋଧନ ଦେଇଥିଲେ ।

ପ୍ରଜାମଣ୍ଡଳ ମନ୍ତ୍ରୀମାନେ ଦାୟିତ୍ୱ ଗ୍ରହଣପରେ ଇଟାମାଟି ଅଧିବେଶନ ପ୍ରସ୍ତାବମତେ ନୟାଗଡ଼କୁ ଓଡ଼ିଶା ପ୍ରଦେଶ ସହିତ ମିଶାଇବା ପାଇଁ ରାଜାଙ୍କୁ ନାନାଭାବରେ ପ୍ରଭାବିତ କରିବାକୁ ଚେଷ୍ଟାକଲେ । ରାଜା କେତେବେଳେ ମିଶ୍ରଣ ପ୍ରସ୍ତାବକୁ ଗ୍ରହଣ କରନ୍ତି ତ କେତେବେଳେ ମନା କରନ୍ତି । ଏଭଳି କିଛିକାଳ ଚାଲିବାପରେ ତା ୩।୧୧।୪୭ଦିନ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ବସି ନିଷ୍ପତ୍ତି କଲେ ଯେ ରାଜା ଯଥାଶୀଘ୍ର ତାଙ୍କର ସାର୍ବଭୌମ କ୍ଷମତା ଭାରତ ସରକାରଙ୍କ ହସ୍ତରେ ଅର୍ପଣ କରନ୍ତୁ । ଏହି ମର୍ମରେ ପ୍ରଜାମଣ୍ଡଳ ସଭାପତି ଲକ୍ଷ୍ମଣ ମହାରଣା ରାଜାଙ୍କୁ ପତ୍ରଦ୍ୱାରା ଜଣାଇଦେଲେ ଯେ ସପ୍ତାହ ମଧ୍ୟରେ ରାଜା ସମସ୍ତ କ୍ଷମତା ଭାରତ ସରକାର ହସ୍ତରେ ଅର୍ପଣ କରିବାକୁ ଘୋଷଣା କରନ୍ତୁ । ଏହା ନକଲେ ଭବିଷ୍ୟତରେ ଯେଉଁ ଅପ୍ରୀତିକର ଘଟଣା ଘଟିବାର ସମ୍ଭାବନା ଦେଖା-ଦେଉଛି ରାଜା ସେଥିପାଇଁ ସଂପୂର୍ଣ୍ଣ ଦାୟୀ ରହିବେ । ଉକ୍ତ ପତ୍ର ପାଇବା ପରେ ରାଜା ଏ ସମ୍ପର୍କରେ ବିସ୍ତୃତ ଆଲୋଚନା କରିବାପାଇଁ ପ୍ରଜାମଣ୍ଡଳ ସଭାପତିଙ୍କ ସହିତ ପ୍ରଜାମଣ୍ଡଳ ମନ୍ତ୍ରୀଦ୍ୱୟଙ୍କ ସହ ତା ୨୪।୧୧।୪୭ଦିନ ଆଲୋଚନା ପାଇଁ ନିମନ୍ତ୍ରଣ କଲେ । ଆଲୋଚନା ମାଧ୍ୟମରେ ରାଜା ନିଜର ସିଭିଲ୍ ଲିଷ୍ଟ୍ ବ୍ୟତୀତ ସମସ୍ତ କ୍ଷମତା ମନ୍ତ୍ରୀ ପରିଷଦ ହାତରେ ଅର୍ପଣ କରିବାକୁ ପ୍ରସ୍ତାବ ଦେଲେ । ମାତ୍ର ପ୍ରଜାମଣ୍ଡଳ ପ୍ରତିନିଧିମାନେ ରାଜାଙ୍କ ସିଭିଲି ଲିଷ୍ଟ୍ ସହ ସମସ୍ତ କ୍ଷମତା ଏକ ଶାସନ ବିଧାୟକ ସଭା ହାତରେ ଛାଡ଼ିଦେବା ପାଇଁ ପ୍ରସ୍ତାବ ଦେଲେ । ଉକ୍ତ ବୈଠକରେ କିଛି ନିଷ୍ପତ୍ତି ହୋଇନପାରି ପୁଣି ତା ୨୭।୧୧।୪୭ଦିନକୁ ବୈଠକ ମୁଲତବି ରଖାଗଲା । ଉକ୍ତଦିନ ବୈଠକରେ ସ୍ଥିରହେଲା ରାଜା ସମସ୍ତ କ୍ଷମତା ଭାରତ ସରକାରଙ୍କ ହାତରେ ଅର୍ପଣ କରିବେ ଓ ଭାରତ ସରକାର ଯାହା ସ୍ଥିର କରିବେ ସମସ୍ତେ ସେଥିରେ ରାଜିହେବେ । ଭାରତ ସରକାରଙ୍କୁ କ'ଣ ଲେଖାଯିବ ତା'ର ଏକ ଚିଠା ପ୍ରସ୍ତୁତ କରିବାପାଇଁ ପ୍ରଜାମଣ୍ଡଳ ସଭାପତିଙ୍କୁ ଦାୟିତ୍ୱ ଦିଆଗଲା ।

ପ୍ରଜାମଣ୍ଡଳ ସହିତ ଆଲୋଚନା ଚାଲୁରହି ସମସ୍ତ ଜୌଜନ୍ୟତାକୁ ବଳିଦେଇ ରଜା ୧୯୪୮ ଅପ୍ରେଲ ମାସରେ ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା କରିବାପାଇଁ ତା ୧୧।୧୨।୪୭ଦିନ ଘୋଷଣା କଲେ । ରଜାଙ୍କର ଏଭଳି ବ୍ୟବହାରର ପ୍ରତିବାଦ କରି ପ୍ରଜାମଣ୍ଡଳ ସଭପତି ରଜାଙ୍କୁ ୭ଘଣ୍ଟା ସମୟ ଦେବାରୁ ରଜା ପୁଣି ଲେଖିଥିଲେ, ମୁଁ ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା ପାଇଁ ଘୋଷଣା କରି ପ୍ରଜାଙ୍କ ହାତରେ କ୍ଷମତା ଅର୍ପଣ କରିବାର ଘୋଷଣା କରିଅଛି । ଏଣୁ ଭରତୀୟ ଯୁକ୍ତରଷ୍ଟ୍ରକୁ କ୍ଷମତା ହସ୍ତାନ୍ତର କରିବାର ପ୍ରଶ୍ନ ଉଠୁନ ହିଁ । ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନର ରୂପରେଖ କ'ଣ ତାହା ଜଣାଇବା ନିମିତ୍ତ ରଜାଙ୍କୁ ପ୍ରଜାମଣ୍ଡଳ ସଭପତି ପୁଣି ଚିଠି ଲେଖିଲେ । ରଜା ଚିଠିପାଇ ଉତ୍ତର ଦେଲେ "ମୋ'ମ୍ୟୁନିକ୍ ଅର୍ଥାତ୍ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା ପାଇଁ ଘୋଷଣା ପ୍ରକାଶିତ ହେବା ପୂର୍ବରୁ ଆପଣ ଏବଂ ମନ୍ତ୍ରୀମାନଙ୍କ ସହ କଥା ହୋଇଅଛି । ଏ ବିଷୟରେ ଆପଣ ଅବଗତ ଅଛନ୍ତି ।" ଏଥିରୁ ଜଣାଗଲା ଯେ ସିଭିଲ୍ ଲିଷ୍ଟ୍ କଥା ଛିଣ୍ଡିଗଲେ ରଜା ଭରତ ସରକାରଙ୍କୁ କ୍ଷମତା ହସ୍ତାନ୍ତର କରିବାକୁ ଅରଜି ହେବେନାହିଁ । ଏହିକଥା ଜଣାପଡ଼ିବାରୁ ପ୍ରଜାମଣ୍ଡଳ ଏ ସମ୍ପର୍କରେ ଓଡ଼ଶା ସରକାରଙ୍କର ମତାମତ ଜାଣିବାପାଇଁ ମିଶ୍ରଣ କାର୍ଯ୍ୟକୁ ପ୍ରାଗନ୍ୱିତ କରୁଥିବା ବନମାଳି ପଟ୍ଟନାୟକ ଏମ୍: ଏଲ୍: ଏ. ଙ୍କୁ ଓଡ଼ଶାର ପ୍ରଧାନମନ୍ତ୍ରୀଙ୍କ ପରମର୍ଶ ପାଇଁ କଟକ ପଠାଇଲେ । ଶ୍ରୀଯୁକ୍ତ ପଟ୍ଟନାୟକ ମହତାବଙ୍କ ସହିତ ପରମର୍ଶ କରି ଫେରି ଆସିବାପରେ ରଜା କେତେ ଭତ୍ତା ଚାହୁଁଛନ୍ତି ତାହା ପ୍ରକାଶ କରନ୍ତୁ । ରଜାଙ୍କୁ ଏହା ଜଣାଇବାରେ ରଜା ଯେତେଟଙ୍କା ଦାବି କଲେ, ତାହା ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ଗ୍ରହଣ କରିପାରିଲେ ନାହିଁ । ଫଳରେ କଥାଟି ଟିକିଏ ଯିମେଇଗଲା ।



# ଗଡଜାତ ମିଶ୍ରଣ ଓ ପ୍ରଜାମଣ୍ଡଳ କଂଗ୍ରେସରେ ଯୋଗଦାନ

ଦେଶର ଏହି ପରିବର୍ତ୍ତିତ ସମୟରେ ରାଜନ୍ୟ ମଣ୍ଡଳୀ ରାଷ୍ଟ୍ରସଂଘ ଗଠନର ଯୋଜନା ପ୍ରସ୍ତୁତ କରି ଭାରତ ସରକାରଙ୍କ ସହିତ ବହୁଆଡମ୍ବର ପୂର୍ଣ୍ଣ କଥାବାର୍ତ୍ତାମାନ ଚଳାଇଥା'ନ୍ତି । ଇଷ୍ଟର୍ଣ୍ଣ ଷ୍ଟେଟ ଏଜେନ୍‌ସିର ସ୍ୱତନ୍ତ୍ର ଦାୟିତ୍ୱରେ ଥିବା ଅଫିସର ଟି. ନାରାୟଣ, ରାଜାମାନଙ୍କ ପକ୍ଷରୁ ଆଲୋଚନା ଚଳାଇଥା'ନ୍ତି । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଓଡ଼ିଶାର ସ୍ୱାର୍ଥ ଦୃଷ୍ଟିରୁ ଓଡ଼ିଶା ସହିତ ଗଡଜାତଗୁଡ଼ିକ ମିଶ୍ରଣ ପାଇଁ ଚେଷ୍ଟା ଚଳାଇଥାନ୍ତି । ଏକ ସମୟରେ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ମିନିଷ୍ଟର ଅଫ୍ ଷ୍ଟେଟ୍‌ସ୍‌ର ସେକ୍ରେଟାରୀ ଏବଂ ଆଡ଼ିସିନାଲ ସେକ୍ରେଟାରୀ ଭି:ପି: କେନନ୍ ଓ ସି.ସି ଦେଶାଇ, ସମ୍ବଲପୁର ଆଞ୍ଚଳିକ କମିଶନର ବି.ଡି.ଏସ୍. ବେଦୀ ଏବଂ ନରେନ୍ଦ୍ର ସିଂହ ପ୍ରମୁଖ ଏକ ବୈଠକରେ ମିଳିତ ହୋଇଥିଲେ । ରାଜାମାନଙ୍କ ସଙ୍ଗେ ଆଇନଗତ ଭାବେ ବୁଝାମଣା କରି ଇନ୍‌ଷ୍ଟ୍ରୁମେଣ୍ଟ୍ ଅଫ୍ ଆକ୍‌ସେସନରେ ରାଜାମହାରାଜାମାନଙ୍କର ସମ୍ମତି ଆଣିବାର ସ୍ଥିର ହେଲା । ଏ କାର୍ଯ୍ୟ ତା ୨୦।୧୧।୪୭ରେ ହୋଇଥିଲା ।

ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ନିଜପକ୍ଷରୁ ନାନାଭାବରେ ଓଡ଼ିଶା ୨୬ଗୋଟି ଗଡଜାତକୁ କୌଣସିମତେ ଓଡ଼ିଶା ପ୍ରଦେଶ ସହିତ ସାମିଲ କରିବାପାଇଁ ଚେଷ୍ଟା ଚଳାଇଥା'ନ୍ତି ଓ ପ୍ରଜାମଣ୍ଡଳମାନଙ୍କ ପକ୍ଷରୁ ତୀବ୍ର ଆନ୍ଦୋଳନ ଚାଲିଥିବାବେଳେ ରାଜାମହାରାଜାମାନେ ତାଙ୍କ କାର୍ଯ୍ୟକ୍ରମମତେ ଆଗେଇ ଚାଲିଥା'ନ୍ତି । ଏହି ପରିପ୍ରେକ୍ଷୀରେ ସମଗ୍ର ବିଷୟର ଚର୍ଚ୍ଚା ପାଇଁ ରୟଗଡ଼ଠାରେ ଅଞ୍ଚଳ କାଉନ୍‌ସିଲର ବୈଠକ ଅନୁଷ୍ଠିତ ହେଲା । ଏହି ବୈଠକରେ ରାଜାମାନେ ଗଡଜାତ ଲୋକମାନଙ୍କର ମତ ନ ନେଇ ଇଷ୍ଟର୍ଣ୍ଣଷ୍ଟେଟ୍ ଏଜେନ୍‌ସିକୁ ନେଇ ଗୋଟିଏ ୟୁନିୟନ ପ୍ରତିଷ୍ଠା କରିବା

ପାଇଁ ଯେଉଁ ହୀନ ଉଦ୍ୟମ ଚଳାଇଛନ୍ତି ତା'ର ତୀବ୍ର ନିନ୍ଦାବାଦ କରିବା ସଙ୍ଗେ ସଙ୍ଗେ ପ୍ରାଣପାତ କରି ୟୁନିୟନ ପ୍ରତିଷ୍ଠା କରାଇନଦେବା ନିମନ୍ତେ ଚରମ ତ୍ୟାଗ ସ୍ୱୀକାର କରିବାକୁ ଗଡ଼ଜାତ ପ୍ରଜାମାନଙ୍କୁ ଆହ୍ୱାନ କରାଯାଇଥିଲା । ଏହି ସମୟରେ ନୀଳଗିରିରେ ପ୍ରବଳ ଜନଆନ୍ଦୋଳନ ଖବର ମିଳିବାରୁ ଅଞ୍ଚଳ କାଉନ୍‌ସିଲର ସଭାପତି ବୈଠକ ସମାପ୍ତ କରି ଶ୍ରୀଧର ଦାଶଙ୍କୁ ସାଙ୍ଗରେ ଧରି ନୀଳଗିରି ଆନ୍ଦୋଳନରେ ଯୋଗ ଦେଇ-ଥିଲେ । ଉକ୍ତ ସଭରେ ନୀଳଗିରି ପ୍ରଜାମଣ୍ଡଳ ପକ୍ଷରୁ ନୀଳଗିରି ପାଇଁ ଏକ ସରକାର ପ୍ରତିଷ୍ଠା କରାଗଲା । ନୟାଗଡ଼ ପକ୍ଷରୁ ନୟାଗଡ଼ର ମନ୍ତ୍ରୀ ଶ୍ରୀଧର ଦାଶ ଉକ୍ତ ସରକାରକୁ ସ୍ୱୀକାର କରି ବକ୍ତବ୍ୟ ଦେଇଥିଲେ । ନୀଳଗିରି ଆନ୍ଦୋଳନ ଫଳରେ ନୀଳଗିରି ରାଜ୍ୟ ରାଜାଙ୍କ ଅବସ୍ଥା କ୍ରମେ ବିପଦମାନ ଅବସ୍ଥାକୁ ଆସିଯିବାରୁ ଓ ଏହାର ପ୍ରଭାବ ପଡ଼ୋଶୀ ଓଡ଼ିଶା ରାଜ୍ୟ ଉପରେ ପଡ଼ିବାରୁ ଓଡ଼ିଶା ସରକାରଙ୍କ ପ୍ରସ୍ତାବମତେ ରାଜସ୍ୱ ମନ୍ତ୍ରୀ ପ୍ରବୀଣ କଂଗ୍ରେସ ନେତା ଶ୍ରୀ ନବକୃଷ୍ଣ ଚୌଧୁରୀ ପୋଲିସ୍ ବାହିନୀ ନେଇ ନୀଳଗିରି ରାଜ୍ୟରେ ପ୍ରବେଶ କରି ନୀଳଗିରି ରାଜ୍ୟ ଶାସନ ନିଜ ହାତକୁ ଜବରଦସ୍ତ ନେଇଯାଇଥିଲେ । ଏହା ସମଗ୍ର ଦେଶକୁ ବାଟ ଦେଖାଇଥିଲା । କ୍ରମେ ଏହା ଅନ୍ୟ ଗଡ଼ଜାତକୁ ସଂକ୍ରମିତ ହେବାର ଜଣାପଡ଼ିବାରୁ ଓଡ଼ିଶାର କେତେଜଣ ରାଜା ଗାନ୍ଧିଜୀଙ୍କୁ ପ୍ରଜାମଣ୍ଡଳ ବିରୁଦ୍ଧରେ ଆପତ୍ତି କଲେ । ମହାତ୍ମାଗାନ୍ଧି ରାଜାମାନଙ୍କୁ ପରାମର୍ଶ ଦେଲେ ସେମାନେ ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇଙ୍କ ସହ ଏ ସମ୍ପର୍କରେ ପରାମର୍ଶ କରନ୍ତୁ । ଏହାଶୁଣି ରାଜାମାନେ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ସହ କଥାବାର୍ତ୍ତା କରି କୌଣସି ମନଲାଖି ସୁଯୋଗ ନ ପାଇବାରୁ ୨ୟଥର ପାଇଁ ପୁଣି ସର୍ଦ୍ଦାର ପଟେଲଙ୍କ ସହ କଥାବାର୍ତ୍ତା କଲେ । ଏହି ଆଲୋଚନା ପ୍ରସଙ୍ଗରେ ସର୍ଦ୍ଦାର ପଟେଲ ରାଜାମାନଙ୍କୁ କହିଲେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ପାଇଁ ଲୋକେ ଗଡ଼ଜାତ-ମାନଙ୍କରେ ଆନ୍ଦୋଳନ କରୁଥିବାରୁ ଏହାକୁ ହିଂସାତ୍ମକ ଆନ୍ଦୋଳନ କରୁଛନ୍ତି ବୋଲି ଯଦି ରାଜାମାନେ ଉପଲବ୍‌ଧି କରୁଛନ୍ତି, ତେବେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା କରିଦେଲେ ରାଜାମାନେ ନିରାପଦରେ ରହିପାରିବେ । ଏହାନକରି ଉକ୍ତ ଆନ୍ଦୋଳନକୁ ଦମନ କରିବାପାଇଁ ଆମର ସାହାଯ୍ୟ ମଗାଗଲେ ନୀତିଦୃଷ୍ଟିରୁ କଂଗ୍ରେସ କିମ୍ବା କଂଗ୍ରେସ ସରକାର ଏ କ୍ଷେତ୍ରରେ ଆପଣଙ୍କୁ ସାହାଯ୍ୟ କରିପାରିବ ନାହିଁ । ପୁଣି ସର୍ଦ୍ଦାର ପଟେଲ କହିଲେ ପଡ଼ୋଶୀ ରାଜ୍ୟର ଶାସନ ହିସାବରେ ନୀତିଦୃଷ୍ଟିରୁ ଯେତିକି ସାହାଯ୍ୟ

କହିବାକଥା, ତା' ଅପେକ୍ଷା ଅଧିକ କିଛି କରିବା ଆମପକ୍ଷେ ସମ୍ଭବ ନୁହଁ । ଆନ୍ଦୋଳନ କରୁଥିବା କଥା ସର୍ଦ୍ଦାର ପଟେଲ ଉପଲବ୍ଧି କରି ରାଜାମାନଙ୍କୁ ପରାମର୍ଶ ଦେଲେ ଯେ ଆପଣଙ୍କ ରାଜ୍ୟରେ ପ୍ରଜାମଣ୍ଡଳ ନେତାଗଣ ଧ୍ୱଂସାତ୍ମକ କାର୍ଯ୍ୟ କରୁଥିବାରୁ ସେଥିରୁ ଆପଣମାନଙ୍କୁ ରକ୍ଷା କରିବାପାଇଁ ଆପଣମାନେ ଭାରତ ସରକାରଙ୍କ ସାହାଯ୍ୟ ଚାହୁଁଛନ୍ତି, ତାହା ହେଲେ ଆପଣମାନେ ଭାରତ ସରକାରଙ୍କୁ ଆପଣଙ୍କ ରାଜ୍ୟକୁ ଶାସକ ହିସାବରେ ଯିବାକୁ ସ୍ୱୀକୃତି ଦିଅନ୍ତୁ । ତାହାହେଲେ ଭାରତ ସରକାର ନିଜର ଶକ୍ତି ପ୍ରୟୋଗ କରି ରାଜ୍ୟ ଭିତରେ ଘଟୁଥିବା ଧ୍ୱଂସାତ୍ମକ କାର୍ଯ୍ୟରୁ ଆପଣଙ୍କୁ ତଥା ଆପଣଙ୍କ ରାଜ୍ୟକୁ ରକ୍ଷାକରିବେ । ଏହା ଆପଣମାନଙ୍କ ମନକୁ ପାଇଲେ ସ୍ୱୀକାର କରନ୍ତୁ । ଏହି ମର୍ମରେ ଗାନ୍ଧିଜୀଙ୍କ ସହିତ ପରାମର୍ଶ କରି ସର୍ଦ୍ଦାର ପଟେଲ ସେହି ପ୍ରସ୍ତାବ ରାଜାମହାରାଜାମାନଙ୍କୁ ଦେଲେ ବହୁ ଚିନ୍ତାକରି ଶେଷରେ ରାଜାମାନେ ଭାରତ ସରକାରଙ୍କୁ କ୍ଷମତା ହସ୍ତାନ୍ତର କରିବାକୁ ରାଜିହେଲେ ଏବଂ ନିଜର କେତେକ ସ୍ୱତନ୍ତ୍ର ସୁବିଧା ସୁଯୋଗ ପାଇବା ପାଇଁ ସର୍ତ୍ତ ରଖିଲେ । ଏ ସମ୍ପର୍କରେ ଆଲୋଚନା କରିବାପାଇଁ ସର୍ଦ୍ଦାର ପଟେଲ ରାଜାମାନଙ୍କୁ ପ୍ରତିଶ୍ରୁତି ଦେଇ ବିଦାୟ ଦେଲେ ।

ରାଜାମାନେ ସର୍ଦ୍ଦାର ପଟେଲଙ୍କ ସହ କଥାବାର୍ତ୍ତା କରି ଫେରିବା ପରେ ପଟେଲଜୀ ଓଡ଼ିଶା ଆସିବା ପାଇଁ ତା ୧୩।୧୨।୪୭ରେ ଗୁପ୍ତ ପ୍ରୋଗ୍ରାମ କଲେ । ଏହିକଥା ଅଞ୍ଚଳ କାଉନ ସିଲର ସଭାପତି ସାରଙ୍ଗଧର ଦାସ କୌଣସି ସୂତ୍ରରୁ ଜାଣିପାରି ଏ ସମ୍ପର୍କରେ ଗଡ଼ଜାତର କେତେକ ନେତାଙ୍କୁ ଉକ୍ତ ବିଷୟ ଜଣାଇଲେ ଏବଂ ଏ ସମ୍ପର୍କରେ ସାବଧାନ ରହିବାକୁ ମଧ୍ୟ ଉପଦେଶ ଦେଲେ । ଭାରତର ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓଡ଼ିଶା ଗଡ଼ଜାତ ଶାସନ ସଙ୍କଟ ସମ୍ପର୍କରେ ନିଷ୍ପତ୍ତି କରିବାପାଇଁ ତା ୧୩।୧୨।୪୭ଦିନ କଟକ ଗସ୍ତରେ ଆସୁଥିବା କଥା ଅତି ଗୁପ୍ତ ରଖା-ଯାଇଥିଲେ ମଧ୍ୟ ଏହା କୌଣସି ସୂତ୍ରରୁ ପ୍ରକାଶିତ ହୋଇଯିବା ପରେ ଓଡ଼ିଶା ଗଡ଼ଜାତ ପ୍ରଜାମଣ୍ଡଳ ନେତାମାନଙ୍କ ମଧ୍ୟରେ ଲୁଚିଛପି ରହିଥିବା ଭିତର ସବୁ କ୍ରମେ ପ୍ରକାଶ ପାଇଲା । ସେମାନଙ୍କ ମଧ୍ୟରୁ ନୟାଗଡ଼, ରଣପୁର, ଢେଙ୍କାନାଳ, ନୀଳଗିରି ପ୍ରଜାମଣ୍ଡଳମାନେ ନିସର୍ତ୍ତ ମିଶ୍ରଣ

ରହୁଥିବା ବେଳେ, କେତେକ ପ୍ରଜାମଣ୍ଡଳ (କୋଲବରେସନ ଅର୍ଥାତ୍ ଗଡ଼ଜାତଗୁଡ଼ିକ ଯେଉଁଳି ଅଛି ସେହିଭଳି ରହି ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ) କେତେଗୁଡ଼ିଏ ପ୍ରଜାମଣ୍ଡଳ ରାଜାମହାରାଜାମାନଙ୍କୁ ସମର୍ଥନ କରି ଗଡ଼ଜାତଗୁଡ଼ିକୁ ୟୁନିୟନ ଗଠନ ପାଇଁ ଦାବି କରୁଥିଲେ । କେହି କେହି ଗଡ଼ଜାତଗୁଡ଼ିକୁ ନେଇ ଏକ ଏକ ସବ୍‌ପ୍ରଭିନ୍‌ସ ପାଇଁ କହୁଥିଲେ ଓ କେତେକ ସର୍ତ୍ତମୂଳକ ମିଶ୍ରଣ ଦାବି କରୁଥିଲେ । ମହତାବ ବାବୁ ୮ଦଫା ସମ୍ବଳିତ ଯେଉଁ ସୂତ୍ର ବାହାର କରିଥିଲେ ତାହା ରାଜାମାନଙ୍କୁ ଜମିଦାରଭଳି ଅଧିକାର ଦେବାର ସୁଯୋଗ ଥିବାରୁ ନୟାଗଡ଼ ପ୍ରଜାମଣ୍ଡଳ ଏଭଳି ବ୍ୟବସ୍ଥାର ଘୋର୍ ବିରୋଧ କରିଥିଲା ଏବଂ ଏହି ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରିବ ବୋଲି ପ୍ରବଳ ଜନରବ ଶୁଣାଯାଉଥାଏ । ଏଭଳି ଏକ ଦୁଃସହ ପରିସ୍ଥିତିରେ ଅଞ୍ଚଳ କାଉନ୍‌ସିଲ ବୈଠକ ଡାକିବା ପାଇଁ ପବିତ୍ରବାବୁ ପ୍ରସ୍ତାବ ଦେଲେ । ମାତ୍ର ଅଞ୍ଚଳ କାଉନ୍‌ସିଲର ସଭାପତି ସାରଙ୍ଗଧର ଦାସ ସମସ୍ତ ପରିସ୍ଥିତି ପବିତ୍ରବାବୁଙ୍କୁ ଜଣାଇଦେଇ ଅଞ୍ଚଳ କାଉନ୍‌ସିଲ ଡାକିଲେନାହିଁ । ପବିତ୍ରବାବୁ ପରିଶେଷରେ ଅଞ୍ଚଳ କାଉନ୍‌ସିଲ ବୈଠକ ଡକାଇଲେ । ପବିତ୍ରବାବୁଙ୍କ ଡାକରାରେ ଅଞ୍ଚଳ କାଉନ୍‌ସିଲ ସଭ୍ୟମାନେ ଅଧିକାଂଶ ବୈଠକରେ ଯୋଗ ଦେଲେନାହିଁ । ତେଣୁ ପବିତ୍ରବାବୁଙ୍କ ଉଦ୍ୟମ ବିଫଳ ହେଲା । ପବିତ୍ରବାବୁଙ୍କର ଏଭଳି କାର୍ଯ୍ୟରେ କ୍ଷୁବ୍‌ଧ ହୋଇ ମହତାବବାବୁ ପବିତ୍ରବାବୁଙ୍କୁ ଭୀଷଣ ଭାବେ ଧମକେଇଲେ । ଫଳରେ ପବିତ୍ରବାବୁ ଅଧିକ ଅଗ୍ରସର ହୋଇପାରିଲେ ନାହିଁ ।

## ସର୍ଦ୍ଦାର ପଟେଲଙ୍କ ଓଡ଼ିଶା ଆଗମନ

ତା: ୧୩।୧୨।୪୭ଦିନ ସର୍ଦ୍ଦାର ପଟେଲ ସଦଳବଳେ ପୂର୍ବ ନିର୍ଦ୍ଧାରିତମତେ କଟକ ଆସିଲେ । ସର୍ଦ୍ଦାର ପଟେଲଙ୍କ ବିମାନ ଭୁବନେଶ୍ୱର ବିମାନଘାଟିରେ ଅବତରଣ କଲାପରେ ଗଡ଼ଜାତ ଅଞ୍ଚଳର ହଜାର ହଜାର ପ୍ରଜାମଣ୍ଡଳ କର୍ମୀ ତାଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜଣାଇଲେ । ସର୍ଦ୍ଦାର ପଟେଲ ପ୍ରଜାମଣ୍ଡଳ କର୍ମୀଙ୍କଦ୍ୱାରା ସମ୍ବର୍ଦ୍ଧିତ ହୋଇ କଟକ ଯାଇ ମହତାବଙ୍କ ବାସଭବନରେ ଅବସ୍ଥାପନ କଲେ । ପରେ ତତ୍‌କାଳୀନ ଓଡ଼ିଶା ଗଭର୍ଣ୍ଣରଙ୍କ ବାସଭବନ ଲାଲବାଗକୋଠିରେ ଓଡ଼ିଶା ସରକାର ଗଡ଼ଜାତ ରାଜାମହାରାଜା ଓ ଭାରତ ସରକାରଙ୍କ ପ୍ରତିନିଧିମାନଙ୍କ ମଧ୍ୟରେ ତ୍ରିପକ୍ଷ

ଆଲୋଚନା ଆରମ୍ଭ ହୋଇଗଲା । ଏଭଳି ଗୁରୁତର ସଙ୍କଟଜନକ ସମୟରେ ଗଡଜାତ ପ୍ରଜାମାନଙ୍କର ପ୍ରତିନିଧିମାନଙ୍କୁ ଏଥିସହିତ ସଂପୃକ୍ତ କରାଗଲା ତେଣୁ ଗଡଜାତ ପ୍ରଜା ପ୍ରତିନିଧିମାନଙ୍କ ମନରେ ଘୋର୍ ସନ୍ଦେହର ଅବକାଶ ରହିଗଲା । ତେଣୁ ସେମାନେ ସର୍ଦ୍ଦାର ପଟେଲଙ୍କ ସହିତ ସାକ୍ଷାତ ଓ ଆଲୋଚନା ପାଇଁ ଜଣାଇଲେ । ତତ୍ ସଙ୍ଗେ ସଙ୍ଗେ ନିଜର ଦାବି ମଧ୍ୟ ଲିଖିତ ଭାବରେ ତାଙ୍କୁ ଜଣାଇଲେ । କିନ୍ତୁ ସର୍ଦ୍ଦାର ପଟେଲ ଏଥିପ୍ରତି କର୍ଣ୍ଣପାତ ନକରି ନିଜ କାର୍ଯ୍ୟରେ ଆଗେଇ ଚାଲିଲେ । ଏଥିପାଇଁ ପ୍ରଜାମଣ୍ଡଳମାନଙ୍କର କର୍ମକର୍ତ୍ତାମାନେ ମହତାବ ଏବଂ ସର୍ଦ୍ଦାର ପଟେଲଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଥା'ନ୍ତି । ସର୍ଦ୍ଦାର ପଟେଲ ରାଜାମାନଙ୍କ ସହ ବହୁ ଆଲୋଚନା ପରେ ଓଡିଶାର ଗଡଜାତଗୁଡିକ ଓଡିଶା ପ୍ରଦେଶ ସହିତ ମିଶ୍ରଣ ପାଇଁ ରାଜାମାନଙ୍କୁ ରାଜିକରାଇ ସେମାନଙ୍କୁ କେତେକ ସୁବିଧାଦେବା ପ୍ରସଙ୍ଗ ସଙ୍ଗେ ନିମ୍ନଲିଖିତମତେ ଏକ ଏଗ୍ରିମେଣ୍ଟ୍‌ରେ ଦସ୍ତଖତ କରାଇ-ନେଲେ । ଆମ ନୟାଗଡର ରାଜା ସେଦିନ ବୈଠକରେ ଯୋଗଦେଇ ପାରିନଥିବାରୁ ପରେ ଉକ୍ତ ଏଗ୍ରିମେଣ୍ଟରେ ଦସ୍ତଖତ କଲେ ।



# ନୟାଗଡ ରାଜା ଦସ୍ତଖତ କରିଥିବା ଏଗ୍ରିମେଣ୍ଟର ନକଲ

ଯେହେତୁ ରାଜ୍ୟର ଓ ରାଜ୍ୟ ଲୋକଙ୍କର ସ୍ୱାର୍ଥଦୃଷ୍ଟିରୁ ନୟାଗଡ ରାଜ୍ୟର ରାଜା ଇଚ୍ଛା କରନ୍ତି ଯେ ରାଜ୍ୟର ଶାସନ ଓଡ଼ିଶା ପ୍ରଦେଶ ଶାସନ ସଙ୍ଗେ ଅବିଳମ୍ବେ ମିଳିତ ହେଉ । ଏହା ସ୍ୱୀକୃତି ହେଉଛି ଯେ –

୧- ନୟାଗଡ ରାଜ୍ୟର ରାଜା ତାଙ୍କ ରାଜ୍ୟ ଶାସନର ସମସ୍ତ ପ୍ରକାର କ୍ଷମତା ୧୯୪୮ ସାଲ ଜାନୁୟାରୀ ୧ ତାରିଖଠାରୁ ଭାରତ ସରକାରଙ୍କୁ ଛାଡ଼ ଦେଇଛନ୍ତି ଓ ସେହି ତାରିଖଠାରୁ ଭାରତ ସରକାର ସମସ୍ତ କ୍ଷମତା ଯେକୌଣସି ମାର୍ଫତରେ ନୟାଗଡ ରାଜ୍ୟରେ ଜାରି କରିପାରିବେ ।

୨- ଉକ୍ତ ତାରିଖଠାରୁ ରାଜ୍ୟ ଆୟରୁ ରାଜା ବାର୍ଷିକ ୬୨ହଜାର ୮ଶହ ଟଙ୍କା ବୃତ୍ତିସ୍ୱରୂପ ସ୍ଥାୟୀଭାବେ ପାଇବେ । ଉକ୍ତ ବୃତ୍ତି ଉପରେ କୌଣସି ଟିକସ ବସାହେବ ନହିବ । ଏହି ବୃତ୍ତିରୁ ରାଜା ତାଙ୍କ ନିଜର, ପରିବାରର, ଘରଚାକରଙ୍କର, ଘର ମରାମତି ପାଇଁ ଓ ବିବାହ ଇତ୍ୟାଦିର ସମସ୍ତ ଖର୍ଚ୍ଚ ତୁଲାଇବେ । ଏ ବୃତ୍ତିର ପରିମାଣ ବଢ଼ିବ ନାହିଁ କିମ୍ବା କମିବ ନାହିଁ । ଏ ବୃତ୍ତି ରାଜା ୩ମାସକୁ ୩ମାସ ଆଗତୁରା ଭାରତ ସରକାରଙ୍କ ନିର୍ଦ୍ଧାରିତ ଖଜଣାଖାନାରୁ ନେଇପିବେ ।

୩- ଆଜି ତାରିଖରେ ରାଜାଙ୍କର ଯେଉଁ ଘରୋଇ ସମ୍ପତ୍ତି ରହିଛି, ସେ ସମ୍ପତ୍ତିରେ ତାଙ୍କର ପୂର୍ଣ୍ଣ ଅଧିକାର ରହିବ । ୧୯୪୮ ଜାନୁୟାରୀ ୧ ତାରିଖ ପୂର୍ବରୁ ସମସ୍ତ ଅଚଳନ୍ତ ସମ୍ପତ୍ତି ଓ ନଗଦ ତହବିଲ୍‌ର ହିସାବ ଭାରତ ସରକାରଙ୍କୁ ଦେବେ । ଭବିଷ୍ୟତରେ କୌଣସି

ସମ୍ପତ୍ତି ରାଜାଙ୍କର ଘରୋଇସମ୍ପତ୍ତି ନୁହେଁ ବୋଲି ଯଦି ବିବାଦ ଉଠେ, ତେବେ ତାହା ବିଚାର ବିଭାଗର ଜଣେ କର୍ମକର୍ତ୍ତାଙ୍କ ବିଚାର ପାଇଁ ଭାରତ ସରକାର ପଠାଇବେ ଓ ତାଙ୍କର ବିଚାରରେ ସେ ବିବାଦ ନିଷ୍ପତ୍ତି ହେବ ।

୪ ରାଜା, ରାଣୀ, ରାଜମାତା, ଯୁବରାଜ ଓ ଯୁବରାଣୀ ୧୯୪୭ ଅଗଷ୍ଟ ୧୫ ତାରିଖ ପୂର୍ବରୁ ଯେଉଁ ବ୍ୟକ୍ତିଗତ ସମ୍ମାନ ଭୋଗକରୁଥିଲେ ତାହା ନିଜ ରାଜ୍ୟରେ ଓ ବାହାରେ ଭୋଗକରିବେ ।

୫- ଭାରତ ସରକାରଙ୍କ ଆଇନ ଓ ପ୍ରଚଳିତ ପ୍ରଥା ଅନୁସାରେ ରାଜାଙ୍କ ଉତ୍ତରାଧିକାରୀ ଉପାଧି ଦାବି ଓ ସମ୍ମାନ ସମସ୍ତ ଭୋଗକରିବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ଭାରତ ସରକାରଙ୍କ ପକ୍ଷରୁ ଶ୍ରୀଭପାଳ ପାନଗୁନି ମେନନ୍ ଭାରତର ଗଭର୍ଣ୍ଣର ଜେନେରାଲଙ୍କ ପକ୍ଷରୁ ସ୍ୱାକ୍ଷର ଦେଇଛନ୍ତି ଓ ନୟାଗଡ ରାଜ୍ୟର ରାଜା ତାଙ୍କ ନିଜର ଓ ଉତ୍ତରାଧିକାରୀମାନଙ୍କ ପକ୍ଷରୁ ସ୍ୱାକ୍ଷର କରୁଛନ୍ତି ।

ଏହି ଚୁକ୍ତିପତ୍ର ସ୍ୱାକ୍ଷରିତ ହେବାପରେ ଭାରତ ସରକାର ଗଡଜାତ-ମାନଙ୍କର ସମସ୍ତ ଶାସନଭାର ଓଡିଶା ସରକାରଙ୍କଠାରେ ନ୍ୟସ୍ତକଲେ । ଏହି ଚୁକ୍ତି ସ୍ୱାକ୍ଷରିତ ହେବାପରେ ତା ୧୪-୧୨ ୪୭ ସନ୍ଧ୍ୟା ସମୟରେ ସର୍ଦ୍ଦାର ପଟେଲ ଏକ ବିରାଟ ଜନସଭାରେ ଉକ୍ତ ବିଷୟ ଘୋଷଣାକରି ସମସ୍ତଙ୍କ ମନରେ ଆନନ୍ଦ ବର୍ଦ୍ଧନ କରିଥିଲେ । ତା'ପରଦିନ ସକାଳ ୧୦ଘଣ୍ଟା ସମୟରେ କଟକ ନାରୀ ସେବା ସଦନରେ ଗଡଜାତ ଅଞ୍ଚଳର କର୍ମୀମାନଙ୍କ ଏକ ବୈଠକରେ ପଟେଲଜୀ ଯୋଗଦେଇ ମନ୍ତ୍ରଣ କାର୍ଯ୍ୟରେ ଗଡଜାତ ଲୋକଙ୍କର ଭୂମିକାକୁ ଭୂୟସୀ ପ୍ରଶଂସା କରି ଅପରାହ୍ନରେ ଓଡିଶାରୁ ବିଦାୟ ନେଲେ । ଓଡିଶାର ୨୬ଟି ଗଡଜାତ ମଧ୍ୟରୁ ମୟୁରଭଞ୍ଜ ମହାରାଜାଙ୍କ ବ୍ୟତୀତ ଅନ୍ୟ ସମସ୍ତ ରାଜା ଉକ୍ତ ଚୁକ୍ତିରେ ସ୍ୱାକ୍ଷରକଲେ । ମୟୁରଭଞ୍ଜର ରାଜା ବର୍ଷକପରେ ଲୋକଙ୍କଚାପରେ ପଡ ବାଧ୍ୟହୋଇ ଚୁକ୍ତିପତ୍ରରେ ସ୍ୱାକ୍ଷରକଲେ ।

ପୂର୍ବ ନିର୍ଦ୍ଧାରିତମତେ ନୟାଗଡ ରାଜ୍ୟ ଆସେମ୍ବ୍ଲି ବୈଠକ ତା ୨୦।୧୨।୪୭ଦିନ ଦରବାର ହଲ୍‌ରେ ଅନୁଷ୍ଠିତ ହୋଇ ନୟାଗଡ

ରାଜ୍ୟ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ଚୁକ୍ତିରେ ନୟାଗଡ଼ ରାଜା ସ୍ୱାକ୍ଷର କରିଥିବାରୁ ଉକ୍ତ ମିଶ୍ରଣ ପ୍ରସ୍ତାବକୁ ସ୍ୱାଗତ ଜଣାଇ ପ୍ରସ୍ତାବ ଗ୍ରହଣ କରିଥିଲେ । ଦୁର୍ଭାଗ୍ୟର କଥା ରାଜା ଶେଷରେ ଖଳବୁଦ୍ଧିର ପରିଚାୟକ ହୋଇ ତା ୨୪।୧୨।୪୭ଦିନ ନୟାଗଡ଼ ରାଜ୍ୟର ମନ୍ତ୍ରୀମଣ୍ଡଳକୁ ବରଖାସ୍ତ କରିଦେଲେ । ଏତଦ୍ୱାରା ଯେଉଁ ଅବାଞ୍ଛିତ ପରିସ୍ଥିତି ଉପୁଜିବାକୁ ଯାଉଥିଲା, ଛାତ୍ରନେତା ଅକ୍ରୁର ମହାପାତ୍ର ଓ ରଘୁନାଥ ମହାପାତ୍ର ପ୍ରମୁଖ ଜାଣିପାରି ରାଜାଙ୍କ କର୍ତ୍ତବ୍ୟ ତାଙ୍କୁ ବୁଝାଇଦେବାରୁ ରାଜା ସେହିଦିନ ରାତିରେ ତାଙ୍କର ପୂର୍ବାଦେଶ ପ୍ରତ୍ୟାହାର କଲେ । ମିଶ୍ରଣ ଚୁକ୍ତି ସମ୍ପାଦନା ପରେ ପ୍ରଜାମଣ୍ଡଳ ପ୍ରତିନିଧିମାନେ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେବାପାଇଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ପରାମର୍ଶ ଲୋଡ଼ିବାରୁ ଆସନ୍ତା ଜାନୁୟାରୀ ପହିଲା ପର୍ଯ୍ୟନ୍ତ ଯେ କୌଣସିମତେ କ୍ଷମତାରେ ରହିବାକୁ ମହତାବ ଶ୍ରୀଧର ଦାଶଙ୍କୁ ଜଣାଇଦେଲେ । ତାଙ୍କ ପରାମର୍ଶକ୍ରମେ ମନ୍ତ୍ରୀମାନେ ତା ୩୧।୧୨।୪୭ ଅପରାହ୍ନ ୬ଘଣ୍ଟା ସମୟରେ ସମସ୍ତ କାର୍ଯ୍ୟ ସମ୍ପାଦନ କରି ପ୍ରଜାମଣ୍ଡଳ ପକ୍ଷର ମନ୍ତ୍ରୀଦ୍ୱୟ ତାଙ୍କର ଇସ୍ତଫା ଦାଖଲ କଲେ ।

ପୂର୍ବ ଚୁକ୍ତିମତେ ଓଡ଼ିଶା ପ୍ରାଦେଶିକ ସରକାର ତା ୧।୧।୪୮ଦିନ ନୟାଗଡ଼ ଶାସନ ଦାୟିତ୍ୱ ଗ୍ରହଣ କରିବାପାଇଁ ଜଣେ ଶାସକ ପଠାଇଲେ । ସେହିଦିନ ନୟାଗଡ଼ର ରାଜା ଓଡ଼ିଶା ସରକାରଙ୍କ ଦ୍ୱାରା ନିଯୁକ୍ତ ଶାସକଙ୍କ ହାତରେ ଶାସନ କ୍ଷମତା ଅର୍ପଣ କରିଥିଲେ । ଏହିଦିନଟି ଓଡ଼ିଆ ଜାତି-ପକ୍ଷେ ଯେଭଳି ଅବିସ୍ମରଣୀୟ ନୟାଗଡ଼ବାସୀଙ୍କ ପକ୍ଷେ ସେହିଭଳି ଚିର ସ୍ମରଣୀୟ ହୋଇ ରହିଲା । ପ୍ରାୟ ୬୦୦ବର୍ଷ ହେଲା ନୟାଗଡ଼ରେ ପ୍ରତିଷ୍ଠିତ ସାମନ୍ତବାଦୀ ଶାସନ ଜନସାଧାରଣଙ୍କ ହିତସାଧନ କରିନପାରିବାରୁ ଜନତାର ଫୁତ୍କାରରେ ଲୀନ ହୋଇଗଲା ଏବଂ ନୟାଗଡ଼ ଏକ ଗଣତନ୍ତ୍ର ରାଜ୍ୟର ଅଂଶବିଶେଷରେ ପରିଣତ ହେଲା । ମହାନ ନେତା ପଣ୍ଡିତ ଗୋପବନ୍ଧୁ ଦାଶ ଏବଂ ଉତ୍କଳ ଗୌରବ ମଧୁସୂଦନଙ୍କ ବୃହତ୍ତର ଉତ୍କଳ ଗଠନର କଳ୍ପନା ବହୁପରିମାଣରେ ପୂର୍ଣ୍ଣ ହେଲା ।

ନୟାଗଡ଼ ପ୍ରଜାମଣ୍ଡଳର ବହୁ ଈପ୍ସିତ ଆଶା 'ଗଡ଼ଜାତଗୁଡ଼ିକର ଓଡ଼ିଶା ପ୍ରଦେଶ ସହିତ ସମ୍ମିଶ୍ରଣ' ସଫଳିକୃତ ହେବାରୁ ୧୯୪୮ ମସିହା ଜାନୁୟାରୀ

ପହିଲାଦିନ ନୟାଗଡ ରାଜ୍ୟର ୨୧ ହଜାର ସ୍ୱେଚ୍ଛାସେବକ, ୬ଶହ ଗ୍ରାମର ପଞ୍ଚାୟତ ସଭ୍ୟବୃନ୍ଦ, ପ୍ରଜାମଣ୍ଡଳ କର୍ମୀମାନଙ୍କର ଏକ ବିରାଟ ସମାବେଶ ନୟାଗଡଠାରେ ଅନୁଷ୍ଠିତ ହେଲା । ଓଡିଶା ମନ୍ତ୍ରୀ ପରିଷଦର ପୂର୍ତ୍ତମନ୍ତ୍ରୀ ରାମକୃଷ୍ଣ ବୋଷ ଓ ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଲୋକନାଥ ମିଶ୍ର ଏହି ସମାବେଶରେ ଉଦ୍‌ବୋଧନ ଦେଇଥିଲେ । ପ୍ରଜାମଣ୍ଡଳର ସଭାପତି ଶ୍ରୀ ଲକ୍ଷ୍ମଣ ମହାରଣା ପ୍ରସ୍ତାବ ଆଗତ କରି କହିଲେ, 'ପଣ୍ଡିତ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ ଗଠିତ ଭାରତ ସରକାର, ସମୟର ସୁବିଧା ନେଇ ଓଡିଶା ଗଡଜାତର ରାଜାମାନଙ୍କଠାରୁ ସାର୍ବଭୌମ କ୍ଷମତା ଛଡାଇନେଇ ନୟାଗଡ ଲୋକଙ୍କୁ ଉକ୍ତ କ୍ଷମତା ଦେବା ସଙ୍ଗେ ସଙ୍ଗେ ନୟାଗଡ ରାଜ୍ୟର ଶାସନ କ୍ଷମତା ଓଡିଶା ପ୍ରଦେଶର ଲୋକତାନ୍ତ୍ରିକ ସରକାର ହାତରେ ଅର୍ପଣ କରି ବୃହତ୍ତର ଉତ୍କଳ ଗଠନର ପରିକଳ୍ପନାକୁ ସାଫଲ୍ୟମଣ୍ଡିତ କରିଥିବାରୁ ପଣ୍ଡିତ ନେହେରୁଙ୍କୁ ତଥା ଭାରତର ଜାତୀୟ ସରକାରଙ୍କୁ ଅଭିନନ୍ଦନ ଜଣାଉଛି । ସେହି ସଙ୍ଗେ ଏହି ମହାନ ବିପ୍ଳବରେ ନୟାଗଡ ଜନସାଧାରଣ ତଥା ଓଡିଶା ଗଡଜାତର ଜନସାଧାରଣ ଯେଉଁ ତ୍ୟାଗପୂତ ସାଧନା କରିଛନ୍ତି ସେଥିପାଇଁ ସେମାନଙ୍କୁ ମଧ୍ୟ ସ୍ୱାଗତ ଅଭିନନ୍ଦନ ଜଣାଉଅଛନ୍ତି । ଭାରତର ନେତା ତଥା ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ସଚିବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଓଡିଶାର ଉପପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ, ଅଖିଳ କାଉନ୍‌ସିଲର ସଭାପତି ସାରଙ୍ଗଧର ଦାସ ପ୍ରମୁଖ ମହାନ ନେତୃବୃନ୍ଦ ଉକ୍ତ କାର୍ଯ୍ୟ ସାଧନ କରିବାପାଇଁ ଜୀବନକୁ ସଂକଟାପନ୍ନ କରି ଯେଉଁଳି ସହାୟତା କରିଛନ୍ତି, ସେଥିପାଇଁ ଉକ୍ତ ସଭା ସେମାନଙ୍କ ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ କରୁଛନ୍ତି ଓ ଓଡିଶା ସହିତ ନୟାଗଡ ମିଶ୍ରଣକୁ ପୂର୍ଣ୍ଣପ୍ରାଣରେ ଅନୁମୋଦନ କରୁଅଛନ୍ତି ।' ଉକ୍ତ ପ୍ରସ୍ତାବକୁ ଶ୍ରୀ ଶ୍ରୀଧର ଦାଶ ସମର୍ଥନ କରି ଭାଷଣ ଦେବାପରେ ଏହି ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଗଲା ।

ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକପରିଷଦ ପ୍ରଜାମଣ୍ଡଳମାନଙ୍କର ଭବିଷ୍ୟତ ସ୍ଥିତି ନିର୍ଦ୍ଧାରଣ ନକଲା ପର୍ଯ୍ୟନ୍ତ ନୟାଗଡ ପ୍ରଜାମଣ୍ଡଳ ପୂର୍ବମତେ କାର୍ଯ୍ୟ କରିବାପାଇଁ ସ୍ଥିରକଲେ । କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ଗ୍ରାମପଞ୍ଚାୟତ ଓ ସ୍ୱେଚ୍ଛାସେବକବାହିନୀର କାର୍ଯ୍ୟ କିପରି ପରିଚାଳିତ ହେବ ଏହା ପ୍ରଜାମଣ୍ଡଳ ପକ୍ଷେ ଏକ ଚିନ୍ତାର ବିଷୟ ହୋଇଗଲା ସତ୍ୟ,

ମାତ୍ର ଏହାକୁ କିଛିଦିନ ପାଇଁ ପୂର୍ବଭଳି ଚଳୁରଖାଯିବାର ସ୍ଥ ରହେଲା । ତା ୩୦।୧।୪୮ ଦିନ ଜାତିରପିତା ମହାତ୍ମାଗାନ୍ଧୀ ଆତତାୟୀର ଗୁଳିରେଣଟରେ ପ୍ରାଣହରାଇଲେ । ଅସ୍ଥନକ ଭବେ ଏଭଳି ଏକ ଦାରୁଣ ବିପତ୍ତି ଦେଶପକ୍ଷେ ଅତ୍ୟନ୍ତ କ୍ଷତିକାରକ ହେଲା । ଏଥିପାଇଁ ନୟାଗଡ଼ରେ ଘୋର୍ ବିଷାଦର ଛାୟା ଖେଳିଯାଇଥିଲା ।

ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଓଡ଼ିଶା ଗଡ଼ଜାତ ପ୍ରଜାମଣ୍ଡଳମାନଙ୍କର ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ତା ୯।୧।୪୮ ଦିନ କଟକରେ ଭେଟିବାକୁ ନିମନ୍ତ୍ରଣ କରି ଗଡ଼ଜାତଗୁଡ଼ିକର ଭବିଷ୍ୟତ ଶାସନ ସମ୍ପର୍କରେ ଆଲୋଚନା କରିଥିଲେ । ଆଲୋଚନା ଶେଷରେ ଶାସନ କାର୍ଯ୍ୟରେ ସହାୟତା କରିବାପାଇଁ ପ୍ରତି ରାଜ୍ୟରେ ଗୋଟିଏ ଲେଖାଏଁ ପରାମର୍ଶଦାତା ସଭ ରହିବ ଓ ସମସ୍ତ ଗଡ଼ଜାତମାନଙ୍କ ପାଇଁ ବର୍ତ୍ତମାନ ଗୋଟିଏ ଓଡ଼ିଶା ଷ୍ଟେଟ୍ ଆସେମ୍ବ୍ଲି ଗଠନ କରଯିବ । ପ୍ରୋକ୍ତ ଷ୍ଟେଟ୍ ଆସେମ୍ବ୍ଲିକୁ ନୟାଗଡ଼ ପ୍ରଜାମଣ୍ଡଳର ପରାମର୍ଶକ୍ରମେ ଓଡ଼ିଶା ସରକାର ନୟାଗଡ଼ ତରଫରୁ ଶ୍ରୀଧର ଦାଶଙ୍କୁ ଷ୍ଟେଟ୍ ଆସେମ୍ବ୍ଲିର ସଭ୍ୟଭବେ ମନୋନୀତ କଲେ ଏବଂ ୯ଜଣ ପ୍ରଜାମଣ୍ଡଳ କର୍ମୀଙ୍କୁ ନେଇ ନୟାଗଡ଼ ପାଇଁ ଆଡ୍ଭାଇଜରି କମିଟି ଗଠନ କଲେ ।

ଅଖିଳ ଭରତ ଦେଶୀୟ ରାଜ୍ୟ ଲୋକପରିଷଦଙ୍କ ପ୍ରସ୍ତାବମତେ ଗଡ଼ଜାତଗୁଡ଼ିକ ନିକଟବର୍ତ୍ତୀ ପ୍ରଦେଶ ସହିତ ମିଶିଯାଇଥିବାରୁ ସଂପୃକ୍ତ ରାଜ୍ୟର ପ୍ରଜାମଣ୍ଡଳଗୁଡ଼ିକ ନିଖିଳ ଭରତ ଜାତୀୟ କଂଗ୍ରେସ ସହିତ ପ୍ରଜାପରିଷଦ ପ୍ରସ୍ତାବ ଗ୍ରହଣକରି ପ୍ରଜାମଣ୍ଡଳଗୁଡ଼ିକ କଂଗ୍ରେସ ସହିତ ମିଶିଯିବାପାଇଁ ଜଣାଇଦେବାରୁ ତା ୧୬।୫।୪୮ ଦିନ ନୟାଗଡ଼ ପ୍ରଜାମଣ୍ଡଳର ଅଧିବେଶନ ଓଡ଼ଗାଁଠାରେ ଅନୁଷ୍ଠିତ ହେଲା । ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଅଧିବେଶନରେ ଯୋଗଦେଇ ଉଦ୍ବୋଧନ ଦେଇଥିଲେ । ଏହି ଅଧିବେଶନରେ ନୟାଗଡ଼ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ପ୍ରସ୍ତାବମତେ ପ୍ରଜାମଣ୍ଡଳ ସଭପତି ଶ୍ରୀ ଲକ୍ଷ୍ମଣ ମହାରଣା ଏକ ପ୍ରସ୍ତାବ ଆଗତ କରିଥିଲେ । ତାହାହେଲା – ନିଖିଳ ଭରତ ଦେଶୀୟ ରାଜ୍ୟ ପ୍ରଜାପରିଷଦଙ୍କ ନିର୍ଦ୍ଦେଶକ୍ରମେ ନୟାଗଡ଼ ପ୍ରଜାମଣ୍ଡଳ ପ୍ରସ୍ତାବ କରନ୍ତି ଯେ ନୟାଗଡ଼ରୁ ତଥା ଗଡ଼ଜାତମାନଙ୍କରୁ ରଜାରାଜୁଡ଼ା ଶାସନ ଲୁପ୍ତହେବା

ପରେ ଗଡଜାତଗୁଡିକ ଭରତବର୍ଷର ଅଙ୍ଗ ହୋଇଯାଇଅଛି । ଏହି ପରିସ୍ଥିତିରେ ନୟାଗଡରେ ପ୍ରଜାମଣ୍ଡଳର ସ୍ୱତନ୍ତ୍ର ଅସ୍ତିତ୍ୱର ଆବଶ୍ୟକତା ବର୍ତ୍ତମାନ ଉପଲବ୍ଧି କରଯାଉନାହିଁ । ଏଣୁ ନୟାଗଡ ପ୍ରଜାମଣ୍ଡଳ ନିଖିଳ ଭରତ ଜାତୀୟ କଂଗ୍ରେସ ସହିତ ସାମିଲ ହୋଇଯାଉ । ଏହି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେବାପରେ ଆବଶ୍ୟକ ବ୍ୟବସ୍ଥା ଅବଲମ୍ବନ କରିବାପାଇଁ ନିଖିଳ ଭରତ ଜାତୀୟ କଂଗ୍ରେସ ସଭପତିଙ୍କ ନିକଟକୁ ମଞ୍ଜୁରୀ ପାଇଁ ପଠାଇ ଦିଆଯାଇଥିଲା । ୨ୟ ପ୍ରସ୍ତାବ ପ୍ରଜାମଣ୍ଡଳ ଅନୁଷ୍ଠାନ କଂଗ୍ରେସ ସହିତ ସାମିଲ ହେବା ପୂର୍ବରୁ ପ୍ରଜାମଣ୍ଡଳର ସମସ୍ତ କାର୍ଯ୍ୟ ଶେଷକରିଦେବା ପାଇଁ କାର୍ଯ୍ୟକାରୀ କମିଟିକୁ ଅଧିବେଶନ ପୂର୍ଣ୍ଣ କ୍ଷମତା ଦେଇଥିଲେ । ୩ୟ ପ୍ରସ୍ତାବରେ ପ୍ରଜାମଣ୍ଡଳର ସମସ୍ତ ଅଧସ୍ତନ କମିଟି, ନିର୍ବାଚିତ ପ୍ରତିନିଧି ଓ କର୍ମୀମାନେ ଆଜିଠାରୁ ଭରତ ଜାତୀୟ କଂଗ୍ରେସର ନିର୍ଦ୍ଦେଶମତେ ପରିଚାଳିତ ହେବାପାଇଁ ପ୍ରସ୍ତାବ ଗ୍ରହଣ କଲେ ଏବଂ ପରିବର୍ତ୍ତିତ ପରିସ୍ଥିତି ଦୃଷ୍ଟିରୁ ପ୍ରଜାମଣ୍ଡଳ ଦ୍ୱାରା ଗଠିତ ସମାନ୍ତରାଳ ସରକାର ବା ଗ୍ରାମପଞ୍ଚାୟତ ଓ ଯୁବ ସ୍ୱେଚ୍ଛାସେବକବାହିନୀର କାର୍ଯ୍ୟକୁ ଭୂରି ଭୂରି ପ୍ରଶଂସା କରି ଉକ୍ତ କାର୍ଯ୍ୟକ୍ରମ ବନ୍ଦ କରିବାପାଇଁ ପ୍ରସ୍ତାବ ଗ୍ରହଣ କଲେ । ପ୍ରଜାମଣ୍ଡଳ ଦୀର୍ଘ ୧୧ବର୍ଷକାଳ ନିରବଚ୍ଛିନ୍ନ ସଂଗ୍ରାମକରି ନୟାଗଡରୁ ସାମନ୍ତବାଦୀ ଶାସନ ଲୋପକରି ଗଣତନ୍ତ୍ର ଶାସନର ସୁଯୋଗ ଲୋକଙ୍କୁ ଦେଇ ସବୁଦିନ ପାଇଁ ଭରତ ଜାତୀୟ କଂଗ୍ରେସ ପରି ମହାନ ଅନୁଷ୍ଠାନରେ ନିଜକୁ ସାମିଲ କରିଦେଲେ ।



## ପ୍ରଜାମଣ୍ଡଳର ସଭାପତି ବୃନ୍ଦ

୧- ଶ୍ରୀଯୁକ୍ତ ବାଞ୍ଛାନିଧି ସେନାପତି
୨- ,, ଶ୍ରୀଧର ଦାଶ
୩ ,, ଲକ୍ଷ୍ମଣ ମହାରଣା
୪- ,, ନାରାୟଣ ନନ୍ଦ (ଅସ୍ଥାୟୀ)
୫- ,, ଅରକ୍ଷିତ ସାହୁ (ଅସ୍ଥାୟୀ)

## ନୟାଗଡ଼ ପ୍ରଜାମଣ୍ଡଳ ସହିଦ

୧- କଣ୍ଟି ଡାକୁଆ, କୁଶବିତା
୨- କସ୍ତୁରି ପରିଡ଼ା, ଥୁଆବାରି
୩ ବୁଦ୍ଧି ପରିଡ଼ା, ଥୁଆବାରି
୪- ଦୟା ବେହେରା, ଥୁଆବାରି
୫- ସଦାଶିବ ଷଡ଼ଙ୍ଗୀ, ଗୋଟବଣ
୬- ଖତି ସାହୁ, ଥୁଆବାରି (ନିରୁଦ୍ଦିଷ୍ଟ)

## ବିଭିନ୍ନ ସମୟରେ ନୟାଗଡ଼ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ସଭ୍ୟ

୧— ଶ୍ରୀ ଭରତ ନାୟକ
୨— ,, ନାରାୟଣ ନନ୍ଦ
୩— ,, କୁବେର ସାହୁ
୪— ,, ସୁଦର୍ଶନ ପୃଷ୍ଟି
୫— ,, ଜନାର୍ଦ୍ଦନ ସୁବୁଦ୍ଧି
୬— ,, ହରିବନ୍ଧୁ ଆଚାର୍ଯ୍ୟ
୭— ,, ଈଶ୍ୱର ପାଟଶାଣୀ
୮— ,, ଲକ୍ଷ୍ମଣ ସାହୁ
୯— ,, କାଶୀନାଥ ପଣ୍ଡା
୧୦— ,, ଶୁକ୍ର ବେହେରା
୧୧— ,, ପଦ୍ମନାଭ ବେହେରା
୧୨— ,, ଅରକ୍ଷିତ ସାହୁ
୧୩— ,, ଶାରଙ୍ଗଧର ଆଚାର୍ଯ୍ୟ
୧୪— ,, ଭରତ ସାହୁ
୧୫— ,, ସୁଦାମ ବାରିକ
୧୬— ,, ଭିକାରିଚରଣ ପଣ୍ଡା
୧୭— ,, ବ୍ରଜବନ୍ଧୁ ଶତପଥୀ
୧୮— ,, ଗୋଦାବରୀଶ ମିଶ୍ର
୧୯— ସଦାଶିବ ଷଡ଼ଙ୍ଗୀ
୨୦— ଶ୍ରୀ ମଦନମୋହନ ଜେନା
୨୧— ,, ତ୍ରିଲୋଚନ ଦାଶ
୨୨— ,, ଲଡୁ ବେହେରା
୨୩— ,, ଉଦୟନାଥ ପୃଷ୍ଟି
୨୪— ,, କୁଷିଆ ପ୍ରଧାନ
୨୫— ,, ପୁନିଆ ମଳିକ
୨୬— ,, ନରୋତ୍ତମ ମଳିକ
୨୭— ,, ମୁନସି ସାହେବ ଖାଁ
୨୮— ,, ଆନନ୍ଦଚନ୍ଦ୍ର ସ୍ୱାଇଁ
୨୯— ,, ରଘୁନାଥ ଜାନି
୩୦— ,, ଦାମୋଦର ବେହେରା
୩୧— ,, ରାମକୃଷ୍ଣ ଅଧିକାରୀ
୩୨— ,, ଭୁବନେଶ୍ୱର ରାଜଗୁରୁ
୩୩— ,, ସୁଦର୍ଶନ ପୃଷ୍ଟି
୩୪— ,, ନରସିଂହ ନନ୍ଦ
୩୫— ,, ଭାଗବତ ଜାନି
୩୬— ,, ମହାଦେବ ନନ୍ଦ

-o-o-